# ଅନ୍ୱେଷାର ଆକାଶ

## ରବି ରାୟ

ଜଣେ ସମାଜବାଦୀ ସୈନିକର ଜୀବନ ରୁ
କେତୋଟି ସକାଳ,ମଧ୍ୟାହ୍ନ ଓ ସାୟାହ୍ନର ସ୍ମୃତିଚିତ୍ର

- ଉଦାରୀକରଣ ଦ୍ୱାରା ଦେଶ ଧ୍ୱଂସ ହେବାକୁ ଯାଉଛି । ....ଉଦାରୀକରଣକୁ ଆମ ସରକାର ମାନିନେବା ଫଳରେ ଆମେ ଆଜି ସମ୍ପୂର୍ଣ୍ଣଭାବେ ଆମେରିକା ନେତୃତ୍ୱରେ ଚାଳିତ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ଦ୍ୱାରା ଆର୍ଥିକ ଦୃଷ୍ଟିରୁ ଗୋଲାମ ହୋଇ ସାରିଲେଣି । ଏ ଉଦାରୀକରଣ ଗୋଲାମୀ ଅର୍ଥନୀତି ୧୦୦ କୋଟି ଲୋକଙ୍କ ଦାନାରେ ଧୂଳି ଦେଲାଣି ।

- ବାସ୍ତବିକ ସମାଜବାଦୀ କ୍ଷମତାବାଦୀ ନୁହେଁ ବରଂ ଧର୍ମ ନିରପେକ୍ଷବାଦୀ ଓ ଜାତି ବ୍ୟବସ୍ଥାର ବିରୋଧୀ ହେବା ଉଚିତ୍ ।

- ମୋର ସ୍ପଷ୍ଟ ମତ ଯେ ଗାନ୍ଧୀ, ଲୋହିଆ ଜୟପ୍ରକାଶଙ୍କୁ ଅନୁସରଣ କରିବାର ବିକଳ୍ପ ଆଉ କିଛି ନାହିଁ ।
....ଏହାହିଁ ଏ ମୁହୂର୍ତ୍ତର ଆହ୍ୱାନ ।

- ରବି ରାୟ

(ସମ୍ବାଦପତ୍ରମାନଙ୍କରେ ପ୍ରଦତ୍ତ ସାକ୍ଷାତ୍କାରରୁ)

**ରବିରାୟଙ୍କ କୃତି:**
*Parliamentary Diplomacy,*
S.Chand & Co,
N.Delhi, 1991

# ଅନ୍ୱେଷାର ଆକାଶ

*(ଜୀବନ ସ୍ମୃତି)*


| | |
|---|---|
| ଲେଖକ | ରବି ରାୟ |
| ପ୍ରକାଶକ | ଲୋହିଆ ଏକାଡେମୀ ଟ୍ରଷ୍ଟ |
| | ପ୍ଲଟ୍ ନଂ - ଏ.୩, ୟୁନିଟ୍ - ୯, ଭୁବନେଶ୍ୱର |
| ପ୍ରାପ୍ତିସ୍ଥାନ | 'ନିହାର୍ଦ୍ଦ', କଲ୍ୟାଣୀ ନଗର, କଟକ - ୧୩ |
| | 'ଅଗ୍ରଦୂତ', ବାଙ୍କାବଜାର, କଟକ - ୨ |
| ଡିଟିପି ଓ ମୁଦ୍ରଣ : | ଆକୃତି ଗ୍ରାଫିକ୍ସ, ଦାସ ସାହି, କଟକ - ୧୨ |
| ପ୍ରଚ୍ଛଦ | ଶଶୀକାନ୍ତ ରାଉତ, ସୁଏର୍ଲିକା ଗ୍ରାଫିକ୍ସ, କଟକ - ୮ |
| ପ୍ରଥମପ୍ରକାଶ | ୨୦୦୫ |
| ପୃଷ୍ଠା | (୧୩୨ + ଫଟୋ ୪) ୧୩୬ |
| ମୂଲ୍ୟ | ଟ. ୬୫/- |


# *ANNWESHĀRA ĀKĀSH*

*(a memoir)*


| | |
|---|---|
| Author | **RABI RAY** |
| Publisher | **Lohia Akademy Trust** |
| | Plot No. A-3, Unit -9, Bhubaneswar (India) |
| Printer | **Akruti Ggraphics** |
| | Dasa Sahi, Sankarpur, Cuttack - 753 012 |
| Language | **Oriya** |
| 1st edition | **2005** |
| Price | **Rs.65/-** |

# ଉତ୍ସର୍ଗ

ମୋ ଦେଶର, ବିଶେଷ କରି ମୋ
ଓଡ଼ିଶାର ଯେଉଁ ଅଗଣିତ କର୍ମୀ ଓ
ଚିନ୍ତକ କୌଣସି ବାଧାବିଘ୍ନକୁ ଭ୍ରୂକ୍ଷେପ
ନକରି ଗାନ୍ଧିଜୀ, ଡକ୍ଟର ଲୋହିଆ ଓ
ଲୋକନାୟକ ଜୟପ୍ରକାଶ ନାରାୟଣଙ୍କ
ଆଦର୍ଶରେ ଅଟଳ ରହିଛନ୍ତି ଓ ସେ
ଆଦର୍ଶକୁ ରୂପାୟିତ କରିବା ଦିଗରେ
ଏବେ ବି ସଂଗ୍ରାମରତ ସେହିମାନଙ୍କୁ . .

# କୃତଜ୍ଞତା ଜ୍ଞାପନ

ଆତ୍ମଜୀବନୀ ଲେଖିବା ପାଇଁ ମୋର ଧୈର୍ଯ୍ୟ ନାହିଁ କି ଆଗ୍ରହ ନାହିଁ । ଶ୍ରଦ୍ଧେୟ ରବି (ରବି ସାହୁ) ଓ ସମୀର (ଅଧ୍ୟାପକ ସମୀର ରାଉତ)ଙ୍କର ବାରମ୍ବାର ଅନୁରୋଧ ଓ ପରିଶ୍ରମର ଫଳଶ୍ରୁତି ଏହି ସ୍ମୃତି ଚିତ୍ର । ମୁଁ ଯେତେବେଳେ କଟକ ଆସେ ସମୀର ଧୈର୍ଯ୍ୟର ସହିତ ମୋର ବକ୍ତବ୍ୟକୁ ଟେପ୍ ରେକର୍ଡ଼ିଂ କରିନିଏ ଏବଂ ତାକୁ ଉତାରି ଦିଏ । ରବି ଓ ସେ ବସି ତାକୁ ପୁନର୍ଲିଖନ କରିଛନ୍ତି । ଆଗ ପଛ କରି ମୁଁ କହିଯାଇଥିବା ଘଟଣା ଗୁଡ଼ିକୁ ଯଥା ସମ୍ଭବ ଐତିହାସିକ କ୍ରମରେ ସଜାଡ଼ି ଦେଇଛନ୍ତି । ଏହାଛଡ଼ା ପାଣ୍ଡୁଲିପିରୁ ପୁସ୍ତକ ରୂପ ନେବାଯାଏଁ ପ୍ରତି ସ୍ତରରେ ତଦାରଖ କରିଛନ୍ତି । ସମୀର ସୂଚୀପତ୍ରଟି ପ୍ରସ୍ତୁତ କରିଛି ।

ପାଣ୍ଡୁଲିପିଟି ପ୍ରସ୍ତୁତ କରିବା ସମୟରେ କେତେକ ତଥ୍ୟଗତ ବିଷୟକୁ ନେଇ ସେମାନଙ୍କ ମନରେ ଉପୁଜିଥିବା ସନ୍ଦେହ ସେମାନେ ମୋର ପୁରାତନ ସମାଜବାଦୀ ସାଥୀ ଶାରଦା (ଶାରଦା ଚରଣ ମହାନ୍ତି)ଙ୍କ ଠାରୁ ସମାଧାନ କରାଇ ନେଇ ।

ଏହି ପୁସ୍ତକରେ ମୋର ଯେତିକି ସ୍ମୃତି ଚିତ୍ର ଲିପିବଦ୍ଧ ହୋଇପାରିଛି ତାହା ସିନ୍ଧୁରୁ ମାତ୍ର କେତୋଟି ବିନ୍ଦୁ । ତଥାପି ଏସବୁ ସ୍ମୃତି କେବଳ ଅନ୍ତରଙ୍ଗ ସ୍ୱଗତୋକ୍ତି ହୋଇ ରହିଯାଇଥାଆନ୍ତା । ଏ ତିନିହିଁଙ୍କ ପ୍ରଚେଷ୍ଟାରେ ଏହା ଆଜି ହରଫରେ ଲିପିବଦ୍ଧ ହୋଇପାରିଲା । ଏଣୁ ମୁଁ ସେ ତିନିଜଣଙ୍କ ପାଖରେ କୃତଜ୍ଞ ।

ମୁଁ ଯେଉଁମାନଙ୍କ ସଂପର୍କରେ ଏଠାରେ ସ୍ମୃତିଚାରଣ କରିଛି ସେମାନଙ୍କ ନିକଟରେ ମୁଁ କୃତଜ୍ଞ । କିନ୍ତୁ ଏମାନଙ୍କ ବାହାରେ ଆହୁରି ଅନେକ ଆତ୍ମୀୟ, ବନ୍ଧୁ, ସଂଗ୍ରାମୀ ସାଥୀ ଓ ରାଜନୈତିକ ବ୍ୟକ୍ତିତ୍ୱ ରହିଛନ୍ତି ଯେଉଁମାନେ ବହୁଭାବରେ ମୋ ଜୀବନକୁ ପ୍ରଭାବିତ କରିଛନ୍ତି । ସେ ସମସ୍ତଙ୍କୁ ଏହି ଅବସରରେ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

କଟକ
୨୬.୧୨.୨୦୦୪
(ଖ୍ରୀଷ୍ଟମାସ୍)

- ରବି ରାୟ

# ସ୍ମୃତି ଦର୍ପଣ

## ସକାଳ ❖ ପୃ ୭ - ୨୪



## ମଧ୍ୟାହ୍ନ ❖ ପୃ ୨୫ - ୮୭

'ସୁଜରାଣ୍ଟି' ପାଳା-୩୨, ଏସିଆନ୍ ରିଲେସନ୍‌ସିପ୍ କନ୍‌ଫରେନ୍‌ସ-୩୩, ରାକ୍ଷସର 'ଶିଶୁହତ୍ୟା'-୩୩, ଜବାହରଙ୍କ ଶିକ୍ଷାରେ ଜୟପ୍ରକାଶଙ୍କ ବିବୃତି-୩୪, ଜବାହାର ତମେ ଠକିଗଲ !-୩୪, ଭାରତ ଗୁରୁ- ତିବତ ଶିଷ୍ୟ-୩୪, 'ହିମାଳୟ ବଞ୍ଚାଅ' ଆନ୍ଦୋଳନ-୩୫, ରାଜେନ୍ଦ୍ରପ୍ରସାଦଙ୍କ ମହାନୁଭବତା-୩୫, ଗ୍ୟାଙ୍ଗଟକ୍ ଯାତ୍ରା-୩୬, 'ଜାତୀୟ ଲଜ୍ଜାର ସରକାର'-୩୬, ପାର୍ଲାମେଣ୍ଟ ପାଇଁ ନିର୍ବାଚନ ଲଢ଼ିଲି-୩୭, ଲୋହିଆଙ୍କ ଉପନିର୍ବାଚନ ବିଜୟ-୩୭, ନେହେରୁଙ୍କ ବିରୋଧରେ ଅନାସ୍ଥାପ୍ରସ୍ତାବ-୩୭, ''ତିନିଅଣା ବନାମ ପନ୍ଦର ଅଣା''-୩୮, ମଣିପୁର ଓ ରିଶାଂ କିସାଙ୍ଗ-୩୯, କଂଗ୍ରେସ ହଟାଓ, ଦେଶ୍ ବଞ୍ଚାଓ-୪୦, ଲୋହିଆଙ୍କ ଚା' କପ୍‌ରେ ବର୍ଣ୍ଣ ବୈଷମ୍ୟର ଝଡ଼-୪୧, ଓଡ଼ିଶାରେ କଂଗ୍ରେସ ହଟାଓର ହାୱା-୪୨, ନବବାବୁଙ୍କ ଲୁଗାସଫା-୪୨, ରାଜସାକ୍ଷୀ ନବକୃଷ୍ଣ-୪୩, ପୁରୀରୁ ନିର୍ବାଚନ ଜିତିଲି-୪୩, ''ରବିବାବୁ, ଖାଇବାକୁ ଦିଅନ୍ତୁ ।''-୪୩, ଋଷ ପାର୍ଲାମେଣ୍ଟରେ ଭାଷା ଅନୁବାଦ-୪୩, ''ଆପଣ ଭୋଦ୍‌କା ନିଅନ୍ତୁ ନା''-୪୪, ତାସ୍‌କେଣ୍ଟ ସ୍ୱାଭିମାନିନୀ-୪୫, ଭୁଟାନ୍‌ର ମିଷ୍ଟର ଇଣ୍ଡିଆ-୪୫, 'ମେଁ ଆପ୍‌କୋ ବୋଲ୍‌ନେ ନହିଁ ଦୁଙ୍ଗା'-୪୬, ପଦାର୍ଥ ବିଜ୍ଞାନୀ ସତ୍ୟେନ୍ ବୋଷ୍-୪୭, ଗୀତା ମେହେଟାଙ୍କ ଓଡ଼ିଆ ଶିକ୍ଷା-୪୮, ଭଁଅରାଗଡ଼ରେ ମଧୁଲିମାୟେ-୪୯, ସାଇନ୍‌ବୋର୍ଡରେ କଳାବୋଳିଲୁ-୪୯, ମାମା ବେଳେଶ୍ୱର ଦୟାଳ-୫୦, ଜେଲ୍‌ରେ କିଶାନ୍- ଜିତିଲେ ନିର୍ବାଚନ-୫୧, ମୋ ନିର୍ବାଚନ ପ୍ରତିଶ୍ରୁତି ମୁଁ ରଖିଲି-୫୨, ପ୍ରଥମ ଓଡ଼ିଆ 'ମେଡେନ୍ ସ୍ପିଚ୍'-୫୨, ରବିରାୟ ଜୀ ! ଆପ୍ କାହାଁକେ ହୋ ?-୫୩, ''ସବୁ ତାଳିଯାକ ମୁଁ ନେଇଗଲି''-୫୪, ସଂଯୁକ୍ତ ସୋସାଲିଷ୍ଟ ଦଳର ନେତା ବନିଲି-୫୫, ଓଡ଼ିଶାର ଲୋକେ କ'ଣ ନିଆଁରେ ମୁତିଛନ୍ତି ?-୫୬, ନେପାଳୀ ବାବାଙ୍କୁ ଚାପୁଡ଼ା ମାଡ଼-୫୬, ପହିଲି ଦେଖାରେ ବିଜୁ ପଟ୍ଟନାୟକ-୫୭, ''ଏଥର ମୁଁ ସେ କାମ କରିବି''-୫୭, ସମାଜବାଦୀ ବୈଠକରେ ବିଜୁବାବୁଙ୍କ ଯୋଗଦାନ ଓ ଇନ୍ଦିରା ବିରୋଧୀ ଫୋରମ୍‌ର ପରିକଳ୍ପନା-୫୮, ଓଡ଼ିଶାରେ ପ୍ରଗତି ଦଳ ଗଠନ-୫୮, ବିଜୁ ବାବୁଙ୍କ ଘର ଉପରେ ଚଢଉ-୫୯, ''ଓହୋ, ଆସ, ଏଇଠି କହିବି''-୫୯, ଇନ୍ଦିରା ଭୋଜିର ପରିଣାମ-୬୦, ଜରୁରୀ ପରିସ୍ଥିତିରେ ରାଷ୍ଟ୍ରପତି ଭେଟ-୬୧, ମୁଁ ଆରେଷ୍ଟ ହୋଇଗଲି-୬୧, ଅମ୍ବାଲା ଜେଲ୍‌ରେ ବନ୍ଦୀ ଜୀବନ-୬୨, ଘରେ ନ ପଶୁଣୁ ଚାଳ ବାଜିଲା, କ୍ଷମତା କନ୍ଦଳ ଯୋଗୁଁ ସରକାର ଭାଙ୍ଗିଲା-୬୩, ଓଡ଼ିଶାରୁ ଏକାଥରେ ଦୁଇ କେନ୍ଦ୍ରମନ୍ତ୍ରୀ-୬୪, ଚରଣ ସିଂ ଇସ୍ତଫା ଫେରାଇ ନେଲେ-୬୫, ମୁଖ୍ୟମନ୍ତ୍ରୀ ପାଇଁ ମୁଁ ଲାଳାୟିତ ନୁହେଁ-୬୬, କୃପାଳିନୀଙ୍କ ଅସୁସ୍ଥତା-୬୭,

ୟୁନାନୀ ଡାକ୍ତରଖାନା ପ୍ରତିଷ୍ଠା ହେଲା-୬୭, ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ଭ୍ୟାନ-୬୮, ମନୋବାଞ୍ଛା ପୂରଣ ହେଲା-୬୯, ଶାସକ ଦଳର ସାଧାରଣ ସମ୍ପାଦକ-୭୦,ସେ କାମ ହାତକୁ ନେଲାବେଳେ ଆପଣଙ୍କୁ ମନେ ପକାଇବି-୭୧, ମୋରାରଜୀ ଭାଇ କଥା ରକ୍ଷା କଲେ-୭୧, ଜନସ୍ୱାସ୍ଥ୍ୟ ରକ୍ଷକ ସ୍କିମ୍-୭୧, ତୁମେ କ'ଣ ସତରେ ଇସ୍ତଫା ଦେଇ ଦେଉଛ ?-୭୨, ସରଳା ଗ୍ରେୱାଲ୍-୭୨, ଡଃ. ଚାଓଲାଙ୍କ ଭାବପ୍ରବଣତା-୭୩, ବିଜୁବାବୁଙ୍କ ସହ ମତଭେଦ-୭୩, ବିଜୁବାବୁ: ଶେଷ ସାକ୍ଷାତରେ -୭୪, ରାଜୀବଙ୍କ ସହ ପ୍ରଥମ ଭେଟ-୭୫, ବାଚସ୍ପତି ମୁଁ ହେଲି କେମିତି ?-୭୬, ଓଡ଼ିଶା ଭବନରେ ସମ୍ବର୍ଦ୍ଧନା-୭୭, ରାମସ୍ୱାମୀ ଭର୍ତ୍ସନା ପ୍ରସଙ୍ଗ-୭୭, ସ୍ପିକର ଇଜ୍ ଅଲ୍‌ଉଏଜ୍ ସ୍ପିକର-୭୯, ଦଳବଦଳ ଆଇନରେ ଛଅମନ୍ତ୍ରୀ ବରଖାସ୍ତ-୮୦, ମୋ' ନାଁ ତାଲିକାରୁ ବାଦ୍ ଦେବେ କି ?-୮୦, ଗ୍ଲାସ୍‌ନୋସ୍ତ- ପେରେସ୍ତୋଇକା-୮୧, ମନ୍ତ୍ରୀ ପଦେ ପୁଣି ହେଲେଣି ଉଭା-୮୧, ଆପଣଙ୍କ ଠାରୁ ମୁଁ ଏୟା ଆଶା କରୁଥିଲି-୮୧, ସୁବ୍ରମନ୍ୟମଙ୍କ ମୁହଁ ହୁଡ଼ା ପରିଣାମ-୮୨, ମାୟାବତୀଙ୍କ ମାୟା-୮୩, ନେତା ନିର୍ବାଚନ ନାଟକର ଅନ୍ତିମ ଦୃଶ୍ୟ-୮୫, ଲୋକ ଚିହ୍ନିବାର ଯାଦୁ-୮୫, ସ୍ମୃତି ପୁଣି ଭୁଲିବାର ନୁହେଁ-୮୬, ପ୍ରଫୁଲ୍ଲ ବାବୁଙ୍କ ଅତିଥି ସେବା-୮୭ ।

## ସାୟାହ୍ନ ❖ ପୃ ୮୭ - ୧୩୨

ତେହେଲ୍‌କା ନାଗରା-୮୭, ଲୋକଶକ୍ତି ଅଭିଯାନ ମଞ୍ଚ-୮୮, ଆମକୁ ବଞ୍ଚାନ୍ତୁ !-୮୮, ମନଗଢ଼ା ସମ୍ବାଦ-୮୯, ଆସୋସିଏଟିଭ୍ ମେମୋରୀ-୯୦, ନାୟାରଙ୍କୁ କୃତଜ୍ଞତା-୯୧, ସୁହାସଙ୍କ ସହୃଦୟତା-୯୧, ଦ୍ୱିତୀୟ ଓଡ଼ିଶା ଭବନ-୯୨, ଆପଣଙ୍କ ସ୍ୱାସ୍ଥ୍ୟ ହଜାର ଗୁଣ ଭଲ-୯୨, ସମୁଦ୍ର ଦେଖି ନାହାନ୍ତି ?-୯୩, ସ୍ୱମୂତ୍ର ଚିକିତ୍ସା-୯୩, 'ହରିଜନ'-ମଧୁସୂଦନ-୯୩, 'ବେଲାଟୋନା'-୯୪, 'ସତ୍ୟର ଆଲୋକ'-୯୬, ବନବାସର ସରକାର-୯୬, ଚିକିତ୍ସକ ନୟନ ମହାନ୍ତି-୯୭, 'ମାଇଁ ଫେୟାର ଲେଡି' ଦେଖିଲି-୯୭, ଗଛ ଉପରେ ରାତି କଟିଲା-୯୮, ସାର୍ ଅସୁସ୍ଥ ହୋଇଗଲେ-୯୮, ଶଙ୍କରାଚାର୍ଯ୍ୟ ଭେଟ-୯୯, ଆଡ୍‌ମିଶନ୍ ଫିଜ୍-୧୦୦, କ୍ୟାପିଟେସନ ଫିଜ୍-୧୦୧, ଘଟଣାର ପରଦୃଶ୍ୟ-୧୦୧, ଆଉ ଏକ ପରିବାର-୧୦୨, ସୋସାଲିଷ୍ଟ ବନାମ ଆର.ଏସ୍. ଏସ୍.-୧୦୩, ରାଧାକ୍ରିଷ୍ଣନ୍‌ଙ୍କ ସାନ୍ନିଧ-୧୦୩, ମୋ ବିଚାରରେ କେତେ ରାଷ୍ଟ୍ରପତି-୧୦୩,



ଲୋକସଭା ବାଚସ୍ପତି ଦପ୍ତରରେ ପ୍ରଥମ ଦିନ



ଅର୍ଦ୍ଧାଙ୍ଗିନୀ - ସହଧର୍ମିଣୀ ସରସ୍ୱତୀଙ୍କ ସହ




ଶ୍ରୀ ଚରଣ ସିଂହଙ୍କ ମନ୍ତ୍ରୀମଣ୍ଡଳରେ ସ୍ୱାସ୍ଥ୍ୟମନ୍ତ୍ରୀ



ପ୍ରଧାନମନ୍ତ୍ରୀ ବନ୍ଧୁ ଚନ୍ଦ୍ରଶେଖରଙ୍କ ସହିତ



ନବକୃଷ୍ଣ ଚୌଧୁରୀ ଜନ୍ମ ଶତବାର୍ଷିକୀ ଉଦ୍‌ଯାପନ ସମାରୋହ
ବାମରୁ: ଆଡଭୋକେଟ୍ ଜେନେରାଲ ଶ୍ରୀ ବିଜୟକୃଷ୍ଣ ମହାନ୍ତି, ଶ୍ରୀ କୁଲ୍‌ଦୀପ୍
ନାୟାର, ଶ୍ରୀ ରବି ରାୟ, ନବଜୀବନ ମଣ୍ଡଳ ସଭାପତି ଶ୍ରୀ ଗୁରୁ ମହାନ୍ତି



ବନ୍ଧୁ ଶ୍ରୀ ମଧୁ ଲିମାୟେଙ୍କ ସହିତ



ମହାମାନ୍ୟ ଶ୍ରୀ ଦଲେଇ ଲାମାଙ୍କ ଠାରୁ 'Light of Truth' ପୁରସ୍କାର ଗ୍ରହଣ
ବାମରୁ: International Campaign for Tibet ର ସଭାପତି ହଲିଉଡ୍ ଅଭିନେତା ଶ୍ରୀ ରିଚାର୍ଡ ଗେରେ, ପୂର୍ବତନ ରାଷ୍ଟ୍ରପତି ଶ୍ରୀ ଆର୍ ଭେଙ୍କଟ ରମଣ, ଶ୍ରୀ ରବି ରାୟ ଏବଂ ପୂଜ୍ୟ ଶ୍ରୀ ଦଲେଇ ଲାମା



ପରିବାର ସହ

## ସକାଳ

୧୯୬୮ରୁ ଏ ଯାବତ୍ ବହୁବାର ମୁଁ ବିଦେଶଯାତ୍ରା କରିଛି । ବାହାରେ ଥିଲା ବେଳେ କାହିଁକି କେଜାଣି, ରାତି ପାହି ସକାଳ ହେଲେ,ପ୍ରଥମେ ମୋ ଗାଁ କଥା ମନେପଡ଼େ । ମନେପଡ଼ିଯାଏ ଭଅଁରା ଜଙ୍ଗଲ ଆଉ କୁଶଭଦ୍ରା ନଈ । ମୋ ପିଲାବେଳର ଭଅଁରା ଜଙ୍ଗଲ ଏବେ ଲଣ୍ଡା, କୁଶଭଦ୍ରା ପୋତି ହେଇ ଆସିଲାଣି ।

ଆମ ପିଲାବେଳେ ଭଅଁରା ଜଙ୍ଗଲରେ ବାଘ ମାଡୁଥିଲେ । ମୋର ମନେ ଅଛି କେମିତି ମାଧିଆ ଅଜାଙ୍କ ସ୍ତ୍ରୀ ଗୋଟାଏ କଲରାପତ୍ରିଆ ବାଘ ମୁହଁରୁ ତା ବାଛୁରୀକୁ ଛଡ଼େଇ ଆଣିଥିଲା । ଏପରି ବୀରାଙ୍ଗନା ବି ସେତେବେଳେ ଥିଲେ !

ମୋ ଜେଜିମାଆ - ବୁଢ଼ିବୋଉ କଥା ମନେପଡ଼େ । ଜେଜେବାପା କାଲ ଥିଲେ । ଏଣୁ ପଦୁଆଁ ଧାଇର ସାହାଯ୍ୟନେଇ ବୁଢ଼ିବୋଉ ହିଁ ସମ୍ପତ୍ତି ଦେଖାଶୁଣା କରୁଥିଲା । ଘର ଚଳାଉ ଥିଲା । ଘର ବୋଇଲେ ଆମ ବାପା, ଦାଦା ପାଞ୍ଚ ଭାଇ । ମୋ ବାପାଙ୍କର ଆ ମ ଦୁଇ ଭାଇ ଓ ପାଞ୍ଚ ଭଉଣୀ । ମାତ୍ର ଆମ ବୃହତର ଏକାନ୍ନବର୍ତ୍ତୀ ପରିବାରରେ ଆ ମ ସମସ୍ତେ ମିଶି ଛଅ ଭାଇ ଓ ଦଶ ଭଉଣୀ । ବୁଢ଼ୀବୋଉ କି ବର୍ଷା, କି ଶୀତ, ରାତି ଚାରିଟାରୁ ଉଠି ଘରବାରି ଲିପା ପୋଛା କରିବ, ତାପରେ ଗାଧୋଇ ଯିବ । ପୁରା ଘର ଦାୟିତ୍ୱ ସେ ମୁଣ୍ଡାଇ ଥାଏ । ହେଲେ, ଘରେ ଖାଏ ନାହିଁ । ଖାଏ ନୃସିଂହନାଥ ଠାକୁରଙ୍କ ପ୍ରସାଦ । କହେ, "ହାତଗୋଡ଼ ଚଳୁଥିବା ଯାଏ ମୁଁ କାହାରି ହାତ ଟେକା ଖାଇବି ନାହିଁ ।" କି ଆତ୍ମ-ସମ୍ମାନବୋଧ !

ଜୀବନରେ ତ୍ୟାଗ ଭାବନା ଶିଖିଥିଲି ଏଇ ଏକାନ୍ନବର୍ତ୍ତୀ ପରିବାରରୁ । ବିଶେଷକରି, ବୁଢ଼ିବୋଉ ଆଉ ବାପାଙ୍କ ଠାରୁ । ପୁନିଅ ପରବକୁ ଶାଢ଼ୀ ଆସିବ । ବାପା ନିୟମ କରି ଦେଇଥାଆନ୍ତି ଯେ ତାଙ୍କର ଭାଇବୋହୂ ମାନଙ୍କ ପାଇଁ ଅଥବା ସେମାନଙ୍କ ଝିଅମାନଙ୍କ ପାଇଁ ଯେଉଁ ଶାଢ଼ୀ ଆସିଥିବ ସେମାନଙ୍କର ପସନ୍ଦ ନହେଲେ ସିଏ ବଦଳାହେବ । ହେଲେ, ମୋ ବୋଉ ବା ଭଉଣୀ ତାଙ୍କ ପାଇଁ ଆସିଥିବା ଶାଢ଼ୀ ନୀରବରେ ପିନ୍ଧିବେ । ତାଙ୍କ ଓଜର ଆପତ୍ତି ଶୁଣାଯିବ ନାହିଁ । ବାପା ପ୍ରାଣପଣେ ଚେଷ୍ଟା କରନ୍ତି ତାଙ୍କ ଭାଇ, ଭଉଣୀ ଓ ସେମାନଙ୍କ ପିଲାଙ୍କୁ ଅଧିକ ଖୁସି କରିବାକୁ ।ସବୁ କଥାରେ ସେମାନଙ୍କୁ ଅଗ୍ରାଧିକାର ଦିଆଯାଉଥିଲା । ବାପା ସମସ୍ତଙ୍କୁ ଏକ୍ କରି ରଖିବା ପାଇଁ ଏପରି ବ୍ୟାକୁଳତା ପ୍ରକାଶ କରୁଥିଲେ ଯେ ସେ ଘୋଷଣା କରି ଦେଇଥିଲେ: ଯିଏ ଭିନେ ହେବା କଥା ଉଠାଇବ, ତା' କୁଳ ବୁଡ଼ିଯିବ ।

ପିଲାବେଳର ଆଉ ଗୋଟାଏ କଥା ମନେପଡ଼ି ଯାଉଛି । ମୋର ଜଣେ କକାପୁଅ ଭାଇ । ତାଙ୍କ ନାଁ ନରେନ୍ଦ୍ର ନାଥ ରାୟ । ତାଙ୍କୁ ଆମେ 'ଭାଲୁ ଭାଇ' ବୋଲି ଡାକୁ । ଆମ ଗାଁ ନଈ ଆରପଟେ ବେଲେଶ୍ୱର ମହାଦେବଙ୍କ ମନ୍ଦିର । ପ୍ରତ୍ୟକ୍ଷ ଦେବତା ବୋଲି ଆମ ଅଞ୍ଚଳରେ ତାଙ୍କୁ ଲୋକେ ଭାରି ମାନନ୍ତି । ତାଙ୍କ ଛଡ଼ା ବେଲପତ୍ର ପାଇଦେଲେ କେଡ଼େ କେଡ଼େ ଅସାଧ ରୋଗ ଭଲ ହୋଇ ଯାଇପାରେ ବୋଲି ଆମ ଅଞ୍ଚଳରେ ଲୋକଙ୍କର ବିଶ୍ୱାସ । ଭାଲୁ ଭାଇ ଦିନେ ସେଠି ଭୋଗରାଗ କରିବାକୁ ବାହାରିଲେ । ମୋତେ ସାଥିରେ ନେଇଗଲେ । ବାପାଙ୍କ ଦେହ ଭଲ ନଥାଏ । ଖାଇଲାବେଳେ ସେ ମୋତେ ଖୋଜିଲେ, ସାଥିରେ ଖାଇବା ପାଇଁ । ଦେଖିଲେ ମୁଁ ନାହିଁ । କୁଆଡ଼େ ଯାଇଛି ବୋଲି ବୋଉକୁ ପଚାରିଲେ । ବୋଉ ସେତେବେଳକୁ ଡରିଗଲାଣି । ତାଙ୍କୁ ନକହି କୁଆଡ଼େ ଯାଇଛି, ସେଥିରେ ପୁଣି ନଈ ଆରପଟକୁ - ଏକଥା ତାଙ୍କ କାନରେ ପଡ଼ିଲେ ସେ ନିଆଁବାଣ ହୋଇଯିବେ । ଏଣୁ କେହି ସାହସ କରି ତାଙ୍କୁ ସତକଥା କହୁ ନାହାନ୍ତି । କେମିତି କେଜାଣି ସତକଥାଟି ତାଙ୍କ କାନରେ ପଡ଼ିଗଲା । ବାପା ସମସ୍ତଙ୍କ ଉପରେ ଖୁବ୍ ବିରକ୍ତ ହେଲେ । ଭାଲୁ ଭାଇ କେଉଁ ବିବେକରେ କାହାକୁ କିଛି ନ କହି ମୋତେ ସାଥିରେ ସେ ପାରି ନେଇଗଲେ - ଏକଥା ବାରମ୍ବାର କହି ସେ ବିରକ୍ତ ହେଉଥାଆନ୍ତି । ଯୋଗକୁ ମୋ ବଡ଼ଭାଇଙ୍କ କଲେଜ ଛୁଟି ହୋଇଥାଏ । ସେ ଘରକୁ ଆସିଥାଆନ୍ତି । କାଳେ ନଈକୂଳରୁ ଆମ ଘରକୁ ପଡ଼ିଥିବା ବାଟରେ ଗଲେ ବାପା ମୋତେ ବାଡ଼େଇ ପାରନ୍ତି ଏଣୁ ଭାଇ ମୋତେ ଅନ୍ୟବାଟ ଦେଇ ଘରକୁ ପଠାଇଦେଲେ । ତା'ପରେ ମୁଁ ଯାଇ ଆମ ସାନବୋଉଙ୍କ (ଖୁଡ଼ୀ) ଘରେ ବସିଲି । କାରଣ ମୁଁ ଜାଣିଥାଏ ଯେ ବାପା ସେଠାକୁ ଯାଇ ପାରିବେ ନାହିଁ । ତା'ପରେ ବୋଉଠୁ ଶୁଣିଲି ଯେ ବାପାଙ୍କ ରାଗ କମିଗଲାଣି । ସେ ତାଙ୍କ ସାଥିରେ ଖାଇବା ପାଇଁ ମୋତେ ଭଲରେ ଖୋଜୁଛନ୍ତି । ମୁଁ ସନ୍ତର୍ପଣରେ ତାଙ୍କ ପାଖକୁ ଆସିଲି । ସେତେବେଳକୁ ତାଙ୍କ ରାଗ କମିଗଲାଣି । ପାଠପଢ଼ା ଛାଡ଼ି କୁଆଡ଼େ ଚାଲିଯାଇଥିଲି ବୋଲି ପଚାରିଲେ । ଏ କଥାଟି ଲେଖିବାର କାରଣ ବାପା ଆମ ପାଠପଢ଼ା ପାଇଁ ଖୁବ୍ ବ୍ୟସ୍ତ ଓ ବ୍ୟାକୁଳ ହେଉଥିଲେ । ସେଥିରେ ଅବହେଳା କଲେ ସେ ଖୁବ୍ ବିରକ୍ତ ହେଉଥିଲେ । ଏଣୁ ପିଲାଟି ବେଳୁ ଆମେ ନିୟମିତ ପଢ଼ିବାକୁ ଓ ଭଲ ପଢ଼ିବାକୁ ଚେଷ୍ଟିତ ହୋଇଥିଲୁ ।

ବାପା ଶ୍ରୀ ଘନଶ୍ୟାମ ରାୟ ଥିଲେ ଜୁରର୍ । ସେତେବେଳେ ନ୍ୟାୟ ନିଶାପ କରିବା ପାଇଁ ଇଂରେଜ ସରକାର ଗାଁମାନଙ୍କରେ ଜଣେ ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ "ଜୁରର୍" ରଖୁଥିଲେ । ବାପା ଘରକୁ ଏକ୍ କରି ରଖିବା ପାଇଁ ଯେପରି ବ୍ୟାକୁଳ ଥିଲେ ଗାଁକୁ ମଧ ସେହିପରି ଏକ୍ କରି ରଖିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରୁଥିଲେ । ମୋର ମନେ ଅଛି, ବାପା ବଞ୍ଚିଥିବା ଯାଏ ଆମ ଗାଁକୁ କେବେ ପୋଲିସ ଆସି ନାହିଁ ।

ମୁଁ ଗୋପ୍ ମାଇନର ସ୍କୁଲରେ ପାଠ ପଢୁଥାଏ । ଘର ଠାରୁ ୧୫ କିଲୋମିଟର । ହଷ୍ଟେଲରେ ରହି ପଢୁଥାଏ । ସ୍କୁଲକୁ ଚାଲି ଚାଲି ଯିବାକୁ ହୁଏ ଓ ଫେରିବାକୁ ହୁଏ । ଅବଶ୍ୟ କାଳେ ଏତେ ବାଟ ଚାଲି ନପାରିବି, ଏଣୁ ଭୋଇ ଜାତିର ଜଣେ ଦି'ଜଣ ମୋ

ସହିତ ରହି ଥାଆନ୍ତି ମୋତେ କାନ୍ଦେଇ ନେବା ପାଇଁ । ସେମାନଙ୍କ ଭିତରୁ ଜଣେ – ନଟିଆ – ଏବେ ବି ବଞ୍ଚିଛନ୍ତି । ମୋ ବଡ ଭାଇ ପାଠ ପଢ଼ିଲାବେଳେ ଯେଉଁ ବାସନ ଓ ପେଟରା ନେଇ ହଷ୍ଟେଲ ଯାଇଥିଲେ ବୋଉ ମୋ ପାଇଁ ସେଇ ବାସନ ଓ ପେଟରା ସାଇତି ରଖିଥିଲା । ମୁଁ ପାଠ ପଢ଼ିଲା ବେଳେ ମଧ ସେଇଆକୁ ନେଇ କରି ଗଲି ।

ଭଅଁରାଗଡ଼ କୁଶଭଦ୍ରା ନଈ କୂଳରେ । ନଈକୂଳିଆ ଗାଁ ବୋଲି ଆମ ଗାଁରେ ପ୍ରାୟ ସବୁ ପିଲା ପହଁରା ଶିଖି ଥାଆନ୍ତି । କିନ୍ତୁ ମୁଁ ଶିଖି ନଥାଏ । ମୁଁ ମୋ ଦୁଇ ଭଉଣୀଙ୍କ ସାଥିରେ ଦିନେ ନଈକୁ ଗାଧୋଇ ଯାଇଥିଲି । ନଈ ବଢ଼ି ନଗଦ ଛାଡ଼ି ଥାଏ । ଲୋକେ ମାଛ ମାରିବାକୁ ଯାଉଥାନ୍ତି । ମାଛ ମାରିବା ଏମିତି ନିଶା ହୋଇଯାଏ ଯେ ତେଲ କଦ୍ଵେଇ ଚୁଲିରେ ବସିଥିବ । ଲୋକେ ଯାଇ ଦି'ଟା ମାଛ ମାରି ଆଣିବେ । ଦି ଭଉଣୀ ମୋତେ ଗାଧୋଇ ଦେଇ ସାରି ପୋଛିପାଛି ଦେଇ ବାଲି ଉପରେ ଠିଆ କରିଦେଲେ । ତ'ପରେ ନିଜେ ଯାଇ ମାଛ ମରା ଦେଖିଲେ । ମୁଁ ୧୦/୧୫ ମିନିଟ୍ କୂଳରେ ଠିଆ ହେବା ପରେ 'କଈ ଅପା' 'କଈ ଅପା' ଡାକି ଡାକି ପାଣିରେ ପଶିଗଲି । ସେମାନେ କିନ୍ତୁ ସେଠି ମାଛ ଧରିବାରେ ବ୍ୟସ୍ତ । ବଢ଼ି ଛାଡ଼ିଗଲା ପରେ ଠାଏ ଠାଏ ପାଣି ଥାଏ । ଠାଏ ଠାଏ ଗଣ୍ଡ ଥାଏ । ମୁଁ ସେମିତିଆ ଗୋଟାଏ ଗଣ୍ଡରେ ପଡ଼ିଗଲି । ସେଠି ଉବେଇ ଟୁବେଇ ହୋଇ ପାଣି ପିଇଗଲିଣି । ଆମ ଗାଁର କପିଳ କକା କୂଳରେ ଛିଡ଼ା ହୋଇଥିଲେ । ସେ ହଠାତ୍ ଦେଖିପକେଇ ପାଣିକୁ ଡେଇଁ ପଡ଼ିଲେ । ପାଣିରୁ ଝାମ୍ପି କୂଳକୁ ନେଇ ଆସିଲେ । ସେତେବେଳକୁ ମୋ ଦୁଇ ଭଉଣୀ କାନ୍ଦି ବୋବେଇ ନାକେଦମ୍ । ସେମାନେ ମୋତେ ବାଟରେ ଶିଖେଇ ଶିଖେଇ ଆସୁଥାଆନ୍ତି, "ରବିରେ, ବୁଡ଼ିଯାଉଥିଲୁ ବୋଲି ଜମା ଘରେ କହିବୁ ନାହିଁ ।" ହେଲେ, ସେତେବେଳକୁ ଏ ଦୁର୍ଘଟଣା କଥା ଗାଁ ଯାକ ପ୍ରଘଟ ହୋଇ ଗଲାଣି । ଯେଉଁ କପିଳ କକା ମୋତେ ଉଦ୍ଧାର କଲେ ଗାଁ ଯାକ ତାଙ୍କୁ ସମସ୍ତେ ବୋକା ଓ ନିରୀହ ବୋଲି ଭାବନ୍ତି । ସେଦିନ ସେ ଉପସ୍ଥିତ ବୁଦ୍ଧି ଖଟାଇ ସାହସ ଦେଖାଇ ଯେପରି ମୋତେ ଉଦ୍ଧାର କଲେ ଲୋକଙ୍କ ଆଖିରେ ତାଙ୍କ ଭାଉ ବଢ଼ିଗଲା । ଇଆଡ଼େ ଘରେ ବାପା ଦୁଇ ଭଉଣୀଙ୍କ ଉପରେ ପ୍ରବଳ ରାଗିଲେ । ଭଉଣୀମାନଙ୍କୁ ବାପା କେବେ ମାରିବା ମୁଁ ଦେଖି ନଥିଲି । ସେଦିନ ଦେଖିଲି ବାପା କଈ ଅପାକୁ ଗୋଟାଏ ସରୁ ଚଟକଣୀ ପକାଇଲେ । ଆମର ବଡ଼ ଠାକୁର ନୃସିଂହ ନାଥ । ଏତେ ବଡ ବିପତ୍ତିରୁ ଠାକୁରେ ଉଦ୍ଧାର କରିଥିବାରୁ ବାପା ମୋତେ ଠାକୁରଙ୍କ ପାଖରେ ସେଦିନ ବିକି ଦେଲେ ।

ମୋ ବୋଉ ଖୁବ୍ ଧର୍ମ ପରାୟଣା ଥିଲା । ତା'ର ପ୍ରିୟ ପୁସ୍ତକ ଥିଲା ନୃସିଂହ ପୁରାଣ । ମୋ ବୋଉ ନିକଟରେ ମୁଁ ବିଶେଷ ଭାବେ ଋଣୀ । ଗୁରୁଜନଙ୍କୁ ଭକ୍ତି ପ୍ରଦର୍ଶନ ଓ ନମ୍ରତା ଶିକ୍ଷା ହୋଇଥିଲା ଜୀବନର ସେହି ଆଦ୍ୟ ଉଷାରେ । ବୋଉ ମାଧମରେ । ଯେଉଁ ଦିନ ମୁଁ ଛୁଟିରେ ସ୍କୁଲରୁ ଘରକୁ ଫେରିବି, ଘରେ ପାଦ ଦେଉ ନଦେଉଣୁ ବୋଉର ଆଦେଶ ହେବ ପ୍ରଥମେ ଗାଁର ମୁରବୀମାନଙ୍କୁ ପ୍ରଣାମ କରି ଆସିବାକୁ । ଏପରିକି ରାତି ହୋଇଯାଇଥିଲେ ଲଣ୍ଠଣ ଦେଇ ପଠାଇବ । ଫେରିଲାପରେ ପଚାରିବ,

"ସମସ୍ତଙ୍କୁ ପ୍ରଣାମ କଲୁଟ ?" ଯଦି କାହାରିକୁ ଛାଡ଼ି ଯାଇ ଥିବି ତେବେ ତା' ପରଦିନ ସକାଳ ହେବା ସଙ୍ଗେ ସଙ୍ଗେ ଯାଇ ତାଙ୍କୁ ପ୍ରଣାମ କରି ଆସିବି । ବୋଉର ଇଚ୍ଛା, କେହି ନକହୁ ଯେ ମୋ ପିଲାଏ ଗର୍ବୀ । ସେ ଚାହେଁ ତା' ପିଲାଏ ସମସ୍ତଙ୍କର ସ୍ନେହ, ଆଦର ଓ ପ୍ରଶଂସା ପାଆନ୍ତୁ । ଏଇଠି କହିଲେ ବୋଧେ ଅପ୍ରାସଙ୍ଗିକ ହେବ ନାହିଁ ଯେ ଆମ ଗାଁ ଭଅଁରାଗଡ଼ ଏକ ବିଚିତ୍ର ଗାଁ । ସମଗ୍ର ଗାଁ ଗୋଟିଏ ଜାତିର ଲୋକ । ଖଣ୍ଡାୟତ । ଏହା ପୂର୍ବରୁ ଏକ ଦୁର୍ଗ ଥିଲା । ଆମ ଘର ସାଆନ୍ତଘର । ଆଉ ସମସ୍ତେ ପାତ୍ର । ଆମେ ଦୁଇ ଭାଇ ବୋଉ କଥା ମାନି ଗାଁ ଯାକ ବୁଲି ସମସ୍ତ ଗୁରୁଜନଙ୍କୁ ପ୍ରଣାମ କରୁ । ହେଲେ ଅନ୍ୟ ଭାଇମାନେ କୁଣ୍ଠାବୋଧ କରନ୍ତି । ପ୍ରତିବାଦ କରନ୍ତି । କହନ୍ତି, "ସେମାନେ ଆମ ପାତ୍ର । ଆମେ କାହିଁକି ସେମାନଙ୍କୁ ନମସ୍କାର କରିବୁ ?"

ଆମ ଗାଁକୁ ଲାଗି ଅନ୍ୟ ହାଟୁଆ ଜାତି ମାନଙ୍କର ଗାଁ । ମୋ ଅବଚେତନ ମନରେ ପିଲାବେଳୁ ଜାତି ପ୍ରଥା ବିରୁଦ୍ଧରେ ଓ ସାମାଜିକ ଅସମତା ବିରୁଦ୍ଧରେ ବିଦ୍ରୋହର ବୀଜ ବୁଣିଥିଲେ ଆମ ପାଖ ଗାଁର ବାଉରୀ ଓ ଗଉଡ଼ । ଏମାନଙ୍କ ପାଇଁ ଆମେ ମଣିଷ । ବାଉରୀ ନଥିଲେ ଆମ ହଳ ବିଲକୁ ଯାଆନ୍ତା ନାହିଁ । ଗଉଡ ନଥିଲେ ଗାଈ ଗୁହାଳରୁ ବାହାରି ପାରନ୍ତେ ନାହିଁ କି ସବାରୀ, ଦୋଳ ବିମାନ ଆଦି ଖୋଜେ ଯାଇ ପାରନ୍ତେ ନାହିଁ । ଅଥଚ ଏମାନଙ୍କୁ ବହୁଭାବେ ଶୋଷଣ ଓ ଅତ୍ୟାଚାର କରାଯାଏ । ସାଆନ୍ତ ଓ ପାତ୍ରମାନଙ୍କର ଆତ୍ମ-ବଡିମା ଥାଏ ଯେ ଆମେ ବଡୁଆ । କଥା କଥାକେ ଏହି ସେବାକାରୀମାନଙ୍କୁ ମାଡ଼ ବସିବାର ମୁଁ ପିଲାବେଳେ ଦେଖିଛି । ଦଶହରାକୁ ଗଉଡ ମାଗଣା ଘିଅ ଭେଟି ଦେବେ । ଥରେ ଜଣକର ଘିଅ ଖାଣ୍ଟି ନଥିବାର ସନ୍ଦେହ ହେବାରୁ ତାକୁ ନିସ୍ତୁକ ପିଟା ଯାଇଥିଲା । ଏହି ସବୁ ଦୃଶ୍ୟ ପିଲାବେଳେ ଦେଖି ଦେଖି ମୋ ଭିତରେ ସାମନ୍ତବାଦ ବିରୁଦ୍ଧରେ ବିଦ୍ରୋହଭାବ ସୃଷ୍ଟି ହୋଇଥିଲା । ଏହି ସାମନ୍ତବାଦୀ "ବଡୁଆ" ଭାବ ମୁଁ ରାଜନୀତି କଲାବେଳେ ମଧ କିଛି ନେତାଙ୍କ ଭିତରେ ଦେଖିଛି । ମୋ ଗାଁ ଠାରୁ ଆରମ୍ଭ କରି ମୋ ଦଳ ଭିତରେ ମୁଁ ଏହି "ବଡୁଆ" ମାନସିକତା ବିରୁଦ୍ଧରେ ଆଜୀବନ ସଂଗ୍ରାମ କରି ଆସିଛି ।

ଏହି କୈଶୋର ଅବସ୍ଥାରେ ମଧ ମୁଁ ଜାତୀୟବାଦୀ ଭାବଧାରାରେ ଉଦ୍‌ବୁଦ୍ଧ ହୋଇଥିଲି । ମୁଁ ଗୋପ ସ୍କୁଲରୁ ମାଇନର୍ ପାଶ୍ କରିସାରି ହାଇସ୍କୁଲରେ ପଢ଼ିବା ପାଇଁ ଭିଙ୍ଗାରପୁର ଗଲି । ୧୯୪୨ ମସିହା କଥା । ମୁଁ ସେତେବେଳେ ଭିଙ୍ଗାରପୁର ହାଇସ୍କୁଲରେ ନବମ ଶ୍ରେଣୀର ଛାତ୍ର । ଗାନ୍ଧିଜୀଙ୍କ ଡାକରାରେ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହୋଇ ଯାଇଥାଏ । ଦେଶ ପଡୁଥାଏ ଉଠୁଥାଏ । ଏକାଦଶ ଶ୍ରେଣୀର ଛାତ୍ରମାନେ ମାଟ୍ରିକ୍ ପରୀକ୍ଷା ପାଇଁ ପ୍ରସ୍ତୁତ ହେବାରେ ବ୍ୟସ୍ତ ଥାନ୍ତି । ଦଶମ ଶ୍ରେଣୀର ଛାତ୍ରମାନେ ହଲିଲା ପାଣିରେ ଗୋଡ଼ ଦେବାକୁ ପ୍ରସ୍ତୁତ ନୁହନ୍ତି । ଆମେ ନବମ ଶ୍ରେଣୀର କେତେଜଣ ଛାତ୍ର ସାହାସ ବାନ୍ଧି ବାହାରିଲୁ । ଆମର ସ୍ଥିର ହେଲା ଯେ ୧୦ଟା ବେଳେ ଶ୍ରେଣୀ ଶିକ୍ଷକ ଯେମିତି ଉପସ୍ଥାନ ନେବାକୁ ଆରମ୍ଭ କରିବେ, ଆମେ 'ମହାତ୍ମା ଗାନ୍ଧିକୀ

ଜୟ' ସ୍ଲୋଗାନ୍ ଦେଇ ଶ୍ରେଣୀ ବର୍ଜନ କରିବୁ । ଆମ କ୍ଲାସ ଟିଚର୍ ଥାଆନ୍ତି ଶ୍ରୀ ବୃନ୍ଦାବନ ଆଚାର୍ଯ୍ୟ । ସେଦିନ ସେ ଯେମିତି ଉପସ୍ଥାନ ନେଇ ସାରିଛନ୍ତି ଆମେ ପୂର୍ବ ନିର୍ଦ୍ଧାରିତ ଯୋଜନାମତେ ସ୍ଲୋଗାନ୍ ଦେବା ଆରମ୍ଭ କରିଦେଲୁ : 'ମହାତ୍ମା ଗାନ୍ଧି କୀ ଜୟ' 'ଇନ୍‌କିଲାବ୍ ଜିନ୍ଦାବାଦ ।' ତାପରେ ବୃନ୍ଦାବନ ସାର୍‌ଙ୍କୁ ଇସ୍ତଫା ଦେବା ପାଇଁ କହିଲୁ ଆଉ ଘୋଷଣା କଲୁ ଯେ ଆମେ ଆଉ ପାଠ ପଢ଼ିବୁ ନାହିଁ । କାରଣ ଗାନ୍ଧିଜୀଙ୍କୁ ଗିରଫ କରି ନିଆଗଲାଣି ଓ 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ହୋଇ ଗଲାଣି । ଏହା ପୂର୍ବରୁ ଜଣେ କଂଗ୍ରେସ କର୍ମୀ ଆମକୁ ସବୁକଥା ବୁଝାଇ ଦେଇ ଯାଇଥିଲେ ଓ ପ୍ରଚାରପତ୍ର ମଧ ଦେଇ ଯାଇଥିଲେ । ଆମେ କ୍ଲାସରେ ବହିପତ୍ର ଛାଡ଼ି ଚାଲି ଆସିଲୁ ଆଉ ଶୋଭାଯାତ୍ରା ବାହାର କଲୁ ।

ଏହି ପ୍ରସଙ୍ଗରେ ମୋର ସହପାଠୀ ଓ ଘନିଷ୍ଠ ବନ୍ଧୁ ନିମାଇଁ ବିଶ୍ୱାଳ କଥା ମନେ ପଡୁଛି । ନିମାଇଁ ବହୁତ ମେଧାବୀ ଛାତ୍ର ଥିଲା । ୧୯୪୪ରେ ଆମେ ମାଟ୍ରିକ୍ ପାଶକଲୁ । ପୂର୍ବରୁ ଓଡ଼ିଶାର ମାଟ୍ରିକ୍ ଓ କଲେଜ ପରୀକ୍ଷା ପାଟନା ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା । ଆମରି ବ୍ୟାଚ୍‌ରୁ ମାଟ୍ରିକ୍ ପରୀକ୍ଷା ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳନା କଲା । ଆମ ସ୍କୁଲରୁ କେହି ଫେଲ୍ ହୋଇ ନଥିଲେ । ମାତ୍ର କେବଳ ନିମାଇଁ ପ୍ରଥମ ଶ୍ରେଣୀରେ ପାଶ୍ କରିଥିଲା । "ଭାରତ ଛାଡ଼" ଆନ୍ଦୋଳନର ସିଏ ମଧାହ୍ନ ସମୟ । ହଠାତ୍ ଦିନେ ରାତିରେ ନିମାଇଁ କାହାକୁ କିଛି ନ ଜଣାଇ, ଏପରିକି ମୁଁ ତା'ର ଅତି ଘନିଷ୍ଠ ବନ୍ଧୁ ହୋଇଥିଲେ ମଧ ମୋତେ କିଛି ସୁରାକ୍ ନଦେଇ ଭିଙ୍ଗାରପୁରରୁ ଭୁବନେଶ୍ୱର ପ୍ରାୟ ୧୦/୧୫ କିଲୋମିଟର ବାଟ ଚାଲି ଚାଲି ଆସିଲା । ଗାନ୍ଧିଜୀଙ୍କର ଆହ୍ୱାନ ଥାଏ 'କର ବା ମର' । ସେତେବେଳେ ଯିଏ ଯେଉଁ ଉପାୟରେ ହେଉ ସରକାରକୁ ଅଚଳ କରିବା ଥିଲା ମୁଖ୍ୟ କଥା । ତାକୁ ନିମାଇଁ ତା' ଉପାୟରେ ବୁଝି ଭୁବନେଶ୍ୱରରେ ବିଦ୍ୟୁତ୍ ତାର କାଟି ଦେଇ ପୁଣି ରାତାରାତି ଭିଙ୍ଗାରପୁର ଫେରିଗଲା । କେମିତି କେଜାଣି ସରକାର ଏହାର ସୁରାକ୍ ପାଇଗଲେ ଏବଂ ଦ୍ୱିତୀୟ ଦିନ ପୁରୀ ଜିଲ୍ଲା ଏସ୍.ପି.- ମୋର ମନେ ଅଛି, ଜଣେ ଗୋରା ଲୋକ, ହାଫ୍ ପ୍ୟାଣ୍ଟ୍ ପିନ୍ଧି - ଆସି ପହଁଞ୍ଚିଗଲେ ପ୍ରଧାନ ଶିକ୍ଷକଙ୍କ ପାଖରେ । ସେତେବେଳେ ଆମର ପ୍ରଧାନ ଶିକ୍ଷକ ଥାଆନ୍ତି ସ୍ୱନାମଧନ୍ୟ ଶିଶୁ ସାହିତ୍ୟିକ ସ୍ୱର୍ଗୀୟ ଶ୍ରୀ ରାମକୃଷ୍ଣ ନନ୍ଦ । ସେ ଜାତୀୟବାଦୀ ଥିଲେ । ସେ ଆମ୍ଭମାନଙ୍କୁ କିଛି ପ୍ରଶ୍ନ କଲେ ନାହିଁ । ଏସ୍.ପିଙ୍କୁ କହିଦେଲେ "ମୋ ସ୍କୁଲର କୌଣସି ପିଲା ଏ କାମ କରିନାହିଁ ।" ସେ ମଧ ନିମାଇଁ ଏକାଣ୍ଡ ଭିଆଇ ଥିବା କଥା ପ୍ରକୃତରେ ଜାଣି ନଥିଲେ । ତେବେ ନିମାଇଁ ନିଜେ ନିଜେ ଏହା ସ୍ୱୀକାର କରିଗଲା । ନିମାଇଁ ଆଉ କଲେଜରେ ପଢ଼ି ପାରିଲା ନାହିଁ । ଗରିବ ଥିବାରୁ ଚାକିରୀ କଲା । ପରେ କମ୍ୟୁନିଷ୍ଟ ହେଲା । ସେ ଏବେ ଇହଧାମରେ ନାହିଁ ।

ପିଲାବେଳର ଆଉ ଗୋଟିଏ ଦୁଇଟି ଅନୁଭୂତି ଯାହା ମୋ ବ୍ୟକ୍ତିତ୍ୱ ଗଠନରେ

ସାହାଯ୍ୟ କରିଥିଲା ମନେପଡେ । ୧୯୭୯ ସାଲର ଗୋଟିଏ କୌତୁହଳପ୍ରଦ ଘଟଣା ଘଟିବାବେଳେ ପିଲାବେଳର ଏଇ ଅନୁଭୂତିଟି ସ୍ମୃତିପଟରେ ଭାସି ଉଠିଥିଲା ।

୧୯୭୯ ସାଲରେ ମୁଁ କେନ୍ଦ୍ର ସରକାରଙ୍କର ସ୍ୱାସ୍ଥ୍ୟମନ୍ତ୍ରୀ ଥାଏ । ମୋରାରଜୀ ଦେଶାଇଙ୍କ ମନ୍ତ୍ରୀମଣ୍ଡଳରେ । ଜେନିଭାରେ ବିଶ୍ୱ ସ୍ୱାସ୍ଥ୍ୟ ସଂଘ (WHO) ର ବାର୍ଷିକ ସମ୍ମିଳନୀ ହେଉଥାଏ । ନିୟମତଃ, ମୁଁ ପ୍ରତିନିଧି ମଣ୍ଡଳୀର ନେତୃତ୍ୱ ନେଇ ସେ ସମ୍ମିଳନୀରେ ଯୋଗ ଦେଇଥାଏ । ସେଠି ଉପସ୍ଥିତ ଥିବା ଆମେରିକାର ସ୍ୱାସ୍ଥ୍ୟମନ୍ତ୍ରୀ ସେ ରହୁଥିବା ହୋଟେଲରେ ଏକ ବନ୍ଧୁ ମିଳନରେ ଯୋଗ ଦେବା ପାଇଁ ମୋତେ ନିମନ୍ତ୍ରଣ କଲେ । ସେଠି ପହଞ୍ଚି ଦେଖିଲି ଯେ ସେ ଚାହା ଭୋଜିରେ ଆମେରିକାର ରାଷ୍ଟ୍ରପତି ଜିମି କାର୍ଟର୍‌ଙ୍କ ପତ୍ନୀ ଉପସ୍ଥିତ ଅଛନ୍ତି । ଅସଲ କଥା ହେଲା ଆମେରିକାର ସ୍ୱାସ୍ଥ୍ୟ ସଂପର୍କୀୟ କାର୍ଯ୍ୟକ୍ରମ ସଂପର୍କରେ ମିସେସ୍ କାର୍ଟର ପୂର୍ବୋକ୍ତ ସମ୍ମିଳନୀକୁ ଆସିଥିବା ପ୍ରତିନିଧି ଦଳର ମୁଖ୍ୟମାନଙ୍କୁ ଅବଗତ କରାଇବା ଚାହୁଁ ଥିଲେ । ମାତ୍ର ଉକ୍ତ ସମ୍ମିଳନୀରେ ତାଙ୍କର ଯୋଗ ଦେବାର ସୁଯୋଗ ନଥିଲା । ଏଣୁ ସେ ପାଖ ହୋଟେଲ୍‌ରେ ଏ ଭଳି ଏକ ଚାହା ଭୋଜିର ବ୍ୟବସ୍ଥା କରି ଆମ୍ଭମାନଙ୍କୁ ଆମନ୍ତ୍ରଣ କରିଥାଆନ୍ତି । ମୁଁ ପହଞ୍ଚିବା ସଙ୍ଗେ ସଙ୍ଗେ ଆମେରିକାର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀମତୀ କାର୍ଟରଙ୍କ ସହିତ ମୋତେ ପରିଚୟ କରାଇ ଦେଲେ । ସେ ଆସି ମୋ ପାଖରେ ବସି ପଡ଼ିଲେ ଓ ବିଭିନ୍ନ କଥା ପଡ଼ିଲା । ଆମେରିକା ସରକାର ଧୂମପାନ ନିଷେଧ କରିବା ଦିଗରେ କି ପଦକ୍ଷେପ ନେଉଛନ୍ତି – ସେ ବିଷୟ ମଧ ପ୍ରସଙ୍ଗକ୍ରମେ ଆସିଲା । ମାର୍କିନ୍ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଠାରୁ ଶୁଣିବାକୁ ପାଇଲି ଯେ ସେତେବେଳେ ଅନେକ ଆମେରିକୀୟ ମହିଳା ସୁଦ୍ଧା ଧୂମପାନରେ ଆସକ୍ତ ହୋଇପଡ଼ିଥିଲେ । ଏପରିକି 'ଲେବର୍ ରୁମ୍'ରୁ ଆସନ୍ନ ପ୍ରସବା ନାରୀ ବାହାରକୁ ଆସି ସିଗାରେଟ ଖଣ୍ଡେ ଟାଣିସାରି ପୁଣି ଭିତରକୁ ପ୍ରବେଶ କରୁଥିଲା । ମିସେସ୍ କାର୍ଟର୍ କହିଲେ ଯେ ସେ ରାଷ୍ଟ୍ରବ୍ୟାପୀ ଧୂମପାନ ବିରୁଦ୍ଧରେ ଏକ ଆନ୍ଦୋଳନ ଆରମ୍ଭ କରିଛନ୍ତି ।

ମୁଁ ପରିହାସ ଛଳରେ ତାଙ୍କ ମନ୍ତ୍ରୀଙ୍କୁ ପଚାରିଲି, "। ଅପଣ ସିଗାରେଟ ପିଅନ୍ତି ନା ନାହିଁ ?" ମିସେସ୍ କାର୍ଟର ହସି ହସି ମୋତେ ସମର୍ଥନ କଲେ ଓ ତାଙ୍କୁ ଲକ୍ଷ୍ୟ କରି କହିଲେ "Yes, you have to answer." ସେଇଠୁ ସେ କହିଲେ "ମୁଁ ମନ୍ତ୍ରୀ ହେବା ପୂର୍ବରୁ ସିଗାରେଟ ଟାଣୁଥିଲି । ଏବେ ଯେତେବେଳେ ଧୂମପାନ ନିଷେଧ କରିବାକୁ ମୁଁ ନିର୍ଦ୍ଦେଶ ଦେଉଛି, ମୁଁ ଆଉ ନିଜେ କିପରି ସିଗାରେଟ ଖାଇବି ?" ତା'ପରେ ସେ ମୋତେ ଓଲଟି ପଚାରିଲେ, "ଆପଣ ପିଅନ୍ତି କି ?" ମୁଁ କହିଲି, "ମୁଁ ଜୀବନରେ ଥରଟିଏ ମଧ ସିଗାରେଟ କି ପଦାର୍ଥ ଚାଖି ନାହିଁ ।" ଉଭୟ ମାର୍କିନ୍ ସ୍ୱାସ୍ଥ୍ୟମନ୍ତ୍ରୀ ଓ ମିସେସ୍ କାର୍ଟର୍ ଆଶ୍ଚର୍ଯ୍ୟ ହୋଇଗଲେ । ଉଭୟ ପଚାରିଲେ 'କେମିତି ?' ତା'ପରେ ମୁଁ ମୋର କୈଶୋରର ଗୋଟିଏ ଅନୁଭୂତି ପ୍ରକାଶ କଲି । ମୁଁ କହିଲି, ''ପୃଥିବୀ ପ୍ରସିଦ୍ଧ କୋଣାର୍କ ମନ୍ଦିର ପାଖରେ ଥିବା ଏକ ସ୍କୁଲରେ ମୁଁ ପଢୁଥିଲି । ସେ ସ୍କୁଲର ନାମ ଗୋପ ମାଇନର୍ ସ୍କୁଲ । ମୋର ସେତେବେଳେ ଚତୁର୍ଥ ଶ୍ରେଣୀ । ଜଗମୋହନ ପଟ୍ଟନାୟକ ନାମରେ ଆମର ଜଣେ ପ୍ରଧାନ ଶିକ୍ଷକ ଥାଆନ୍ତି ।

ସେତେବେଳେ ଭାରତରେ ଆମେ ଚତୁର୍ଥ ଶ୍ରେଣୀରେ ଇଂରାଜୀ ହସ୍ତାକ୍ଷର ଲେଖୁଥିଲୁ । ହସ୍ତାକ୍ଷର ଖାତାରେ ଟିପି ନେବା ପାଇଁ ପ୍ରଧାନ ଶିକ୍ଷକ ଗୋଟିଏ ବାକ୍ୟ କଳାପଟାରେ ଲେଖିଦେଲେ : 'Smoking is an unstudentlike act' । ମୋର ମନେ ଅଛି, ମୁଁ ଛିଡ଼ାହୋଇ ପଚାରିଲି, "ସାର୍ ଏହାର ଅର୍ଥ କ'ଣ ?" ସେ ଅନୁବାଦ କରିଦେଲେ 'ଧୂମପାନ ଛାତ୍ରୋଚିତ କାର୍ଯ୍ୟ ନୁହେଁ ।' ସେଦିନ କଳାପଟାରେ ଲେଖାଥିବା ସେ ବାକ୍ୟ ଓ ପ୍ରଧାନଶିକ୍ଷକଙ୍କ କଥା ମୋ ମନରେ ଗଭୀର ରେଖାପାତ କଲା । ପରବର୍ତ୍ତୀ କାଳରେ ସେ ଇଂରାଜୀ ବିକୃତ ଇଂରାଜୀ ବୋଲି ବୁଝି ପାରିଥିଲି । ମାତ୍ର ସେ ବାକ୍ୟଟି ଭିତରେ ରହିଥିବା ସାଧୁ ଉପଦେଶ ମୁଁ ଏଯାଏ ମାନିଚାଲିଛି । ଏଣୁ ମୁଁ ଜୀବନରେ କେବେବି ଧୂମପାନ କରିନାହିଁ ।'' ସେଇଠୁ ମାର୍କିନ ମନ୍ତ୍ରୀ କହିଲେ "ମୁଁ ୱାସିଂଟନ୍ ଫେରିଲା ପରେ ଆପଣଙ୍କୁ ଚିଠି ଲେଖି ପଚାରିବି ଯେ ଆମେରିକା ସରକାର ଧୂମପାନ ନିଷେଧ କରିବା ପାଇଁ କି ପଦକ୍ଷେପ ନେବା ଉଚିତ । ଆପଣ ଉତ୍ତର ଦେଲାବେଳେ ଦୟାକରି ଆପଣଙ୍କର ଏହି ବ୍ୟକ୍ତିଗତ ଅନୁଭୂତିଟି ଲେଖିବେ । ମୁଁ ଆମେରିକାରେ ତା'ର ପ୍ରଚାର କରି ଲୋକଙ୍କୁ ଜଣାଇବି ଯେ ଭାରତର ସ୍ୱାସ୍ଥ୍ୟମନ୍ତ୍ରୀ ଜୀବନରେ କେବେବି ସିଗାରେଟ୍ ଚାଖି ନାହାନ୍ତି ।" ସତକୁ ସତ ମୁଁ ଭାରତରେ ପହଞ୍ଚି ତାଙ୍କ ଚିଠି ପାଇଲି । ମୁଁ ତାଙ୍କ କହିବା ଅନୁଯାୟୀ ଉତ୍ତର ଦେଇଥିଲି । ମୁଁ ଏହି ଅନୁଭୂତିଟି ଏଠେ ବିସ୍ତୃତ କରି ବର୍ଣ୍ଣନା କରିବା କାରଣ ଶୈଶବର ଅଭ୍ୟାସ ମୋତେ ଜୀବନରେ ବହୁତ ସାହାଯ୍ୟ କରିଛି । ମୁଁ ପାର୍ଲାମେଣ୍ଟ ସଭ୍ୟ ହେବା ପରେ ମଧ୍ୟ ଜଗମୋହନ ସାର୍‌ଙ୍କ ସହିତ ସମ୍ପର୍କ ରଖିଥିଲି । ସେ ପିଲାବେଳେ ଆମକୁ ଦେଇଥିବା ଉପଦେଶ କିପରି ଆମେରିକାର ପ୍ରଥମ ମହିଳା ତଥା ତାଙ୍କ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ଚମତ୍କୃତ କରିଥିଲା ସେ କଥା ସାର୍‌ଙ୍କୁ ଜଣାଇ ମୁଁ ତାଙ୍କର ଏହି ଉପଦେଶ ପାଇଁ ତାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରିଛି ।

( ପୂର୍ବରୁ କହିଛି ସ୍କୁଲ ଛାତ୍ର ଥିବାବେଳୁ ଗାନ୍ଧୀଜୀ ଓ ତାଙ୍କ ପ୍ରବର୍ତ୍ତିତ ଆନ୍ଦୋଳନ ପ୍ରତି ମୁଁ ଆକୃଷ୍ଟ ହୋଇ ସାରିଥିଲି । ମାଟ୍ରିକ୍ ପାଶ୍ କରି ମୁଁ ରେଭେନ୍ସା କଲେଜରେ ଆଇ.ଏ. ପଢ଼ିଲି । ବ୍ରିଟିଶ ସରକାର କହୁଥିଲେ ଯେ ୧୯୪୨ ରେ ହୋଇଥିବା 'ଭାରତ ଛାଡ଼' ଆନ୍ଦୋଳନ ଏକ 'ଛାତ୍ର ଆନ୍ଦୋଳନ' । ସେତେବେଳେ ସିନ୍ଧ୍ ପ୍ରଦେଶର ଜଣେ ଛାତ୍ର ହେମୁ କଲ୍ୟାଣୀ ଶହୀଦ୍ ହୋଇଥାଆନ୍ତି । ଓଡ଼ିଶା ଜାତୀୟ କଂଗ୍ରେସର ନେତାମାନେ ଜେଲ୍‌ରେ ଥିଲେ । ସେମାନେ ୧୯୪୫ ରେ ଜେଲ୍‌ରୁ ଖଲାସ ହୁଅନ୍ତେ ଏଠି ଛାତ୍ର ଆନ୍ଦୋଳନ ଆରମ୍ଭ ହୋଇଗଲା । ଅଖିଳ ଭାରତୀୟ ଛାତ୍ର କଂଗ୍ରେସ ପ୍ରତିଷ୍ଠିତ ହେଲା । ଇଏଥିଲା ଜାତୀୟତାବାଦୀ-ରାଷ୍ଟ୍ରବାଦୀ ଛାତ୍ର ସଂଗଠନ । ଏହାର ପ୍ରତିଦ୍ୱନ୍ଦୀ ଛାତ୍ର ସଂଗଠନ ଥିଲା ଛାତ୍ର ଫେଡେରେସନ୍ – କମ୍ୟୁନିଷ୍ଟମାନଙ୍କର ଛାତ୍ର ଶାଖା । ଏହି ସାମ୍ୟବାଦୀମାନେ ୧୯୪୨ ଆନ୍ଦୋଳନକୁ ବିରୋଧ କରୁଥାଆନ୍ତି । ଯେହେତୁ ସୋଭିଏତ୍ ରୁଷିଆ ଦ୍ୱିତୀୟ ମହାଯୁଦ୍ଧରେ ବ୍ରିଟେନ୍‌କୁ ସମର୍ଥନ କରୁଥାଏ ଏଣୁ ଏଠି ମଧ୍ୟ ସାମ୍ୟବାଦୀମାନେ ବ୍ରିଟିଶ

ସରକାରଙ୍କୁ ସହଯୋଗ କରୁଥାଆନ୍ତି । ଏଥିପାଇଁ ସେମାନଙ୍କ ଲୋକପ୍ରିୟତା ଅନେକାଂଶରେ ଲୋପ ପାଇଯାଇଥିଲା ।

ଆମର ଛାତ୍ର କଂଗ୍ରେସ ବଣ ନିଆଁପରି ଗାଁ ଗହଳିର ସ୍କୁଲ କଲେଜକୁ ବ୍ୟାପିଗଲା । ଏପରିକି କଂଗ୍ରେସ ନେତାମାନେ କହିବାକୁ ଲାଗିଲେ ଯେ ଛାତ୍ର କଂଗ୍ରେସ ଆମକୁ ଟପିଗଲା । ପରବର୍ତ୍ତୀ କାଳରେ ଓଡ଼ିଶାରେ ଜନତା ସରକାରର ଶିକ୍ଷା ଓ ସ୍ୱାସ୍ଥ୍ୟମନ୍ତ୍ରୀ ହୋଇଥିବା ଶ୍ରୀ ପ୍ରଦୀପ୍ତ କିଶୋର ଦାସ ଓଡ଼ିଶା ଛାତ୍ରକଂଗ୍ରେସର ପ୍ରଥମ ସଭାପତି ଥିଲେ । ମୁଁ କଟକ ଜିଲ୍ଲା ଛାତ୍ରକଂଗ୍ରେସର ସଂପାଦକ ଥିଲି । ୧୯୪୬ରେ ଯେଉଁ ଛାତ୍ର ନିର୍ବାଚନ ହେଲା ପ୍ରଦୀପ୍ତ କିଶୋର ଦାସ ଛାତ୍ର ଫେଡେରେସନ୍ ନେତା, ପରବର୍ତ୍ତୀସମୟର ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ମନମୋହନ ମିଶ୍ରଙ୍କୁ ବହୁ ଭୋଟରେ ହରାଇଥିଲେ । ଆମେ ରେଭେନ୍ସା ଛାତ୍ର ୟୁନିୟନ ର ସବୁ ପଦ ପାଇଁ ଜିତିଲୁ । କେବଳ ଏସ୍.ଏସ୍.ଜି. ସଂପାଦକ ପଦ ପାଇଁ ଛିଡ଼ା ହୋଇଥିବା କୁଳମଣି (ବିଶିଷ୍ଟ ନୃତତ୍ତ୍ୱବିତ୍ ଓ ସମାଜବାଦୀସର୍ବୋଦୟ ନେତା ସ୍ୱର୍ଗତ ଡଃ. କୁଳମଣି ମହାପାତ୍ର) ସ୍ୱାଧୀନପ୍ରାର୍ଥୀ ଏ.ଏନ୍. ତିୱାରୀ (ପରବର୍ତ୍ତୀ ଜୀବନରେ ଆଇ.ଏ.ଏସ୍.) ଙ୍କ ଠାରୁ ହାରିଥିଲେ ।

ଏହି ରେଭେନ୍ସା କଲେଜରେ ପଢୁଥିବା ବେଳେ ଆମେ ଗୋଟାଏ କାଣ୍ଡ କରି ବସିଲୁ ଯାହା ଥିଲା ଅଭୂତପୂର୍ବ ଓ ଯାହା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବା ଭଳି ଗୋଟାଏ ଘଟଣା । ଇଏ ୧୯୪୬-୪୭ ବେଳର ଏକ ଘଟଣା । ରେଭେନ୍ସା କଲେଜର ବାର୍ଷିକ କ୍ରୀଡ଼ା ପ୍ରତିଯୋଗୀତା ହେଉଥାଏ । ସେତେବେଳେ ରେଭେନ୍ସାର ବାର୍ଷିକ କ୍ରୀଡ଼ା ପ୍ରତିଯୋଗୀତା ଏତେ ଜନପ୍ରିୟତା ହାସଲ କରିଥାଏ ଯେ କାହିଁ କାହିଁ ଦୂରରୁ ଲୋକେ ତାହା ଦେଖିବାକୁ ଆସନ୍ତି । ରେଭେନ୍ସାର ଅଧକ୍ଷ ଥାଆନ୍ତି ଏସ୍. ରାୟ । ଖେଳ ସ୍ଥାନରେ ବ୍ରିଟିଶ ଇଉନିୟନ୍ ଜ୍ୟାକ୍ ପତାକା ଉଡ଼ା ହେଉଥାଏ । କେତେ ଛାତ୍ରନେତା ସ୍ଥିରକଲେ ଯେ ଇଉନିୟନଜ୍ୟାକ୍ ଖସାଇ ଦେଇ ତା'ସ୍ଥାନରେ ଆମର ତ୍ରିରଙ୍ଗୀ ପତାକା ଉଡ଼ାଇବୁ । ତାହା ହିଁ ହେଲା । ସେତେବେଳେ ଅଖିଳ ଭାରତ କଂଗ୍ରେସର ପତାକା ହିଁ ଜାତୀୟ ପତାକା ରୂପେ ପରିଗଣିତ ହେଉଥିଲା । ମୁଁ ଇତିହାସ ଅନର୍ସର ଛାତ୍ର ଥିଲି । ପ୍ରିନ୍ସିପାଲ୍ ଏସ୍. ରାୟ ଆମକୁ ରାଜନୈତିକ ଇତିହାସ ପଢ଼ାଉଥିଲେ । ସେହି ହିସାବରେ ସେ ଆମକୁ ଭଲଭାବେ ଚିହ୍ନିଥିଲେ । ଏହି କାଣ୍ଡ ଭିଆଇଥିବା ଛାତ୍ରଙ୍କୁ ରଷ୍ଟିକେଟ୍ କରିବାର ମସୁଧା ହେଉଛି ଜାଣି ଆମେ ଛାତ୍ର କ୍ରିୟାନୁଷ୍ଠାନ କମିଟି ଗଢ଼ିଲୁ । ଏହି ସମିତି ଦୁଇଟି ପ୍ରସ୍ତାବ ପାଶ୍ କଲା । ଯେଉଁ ଛାତ୍ରମାନେ ଜାତୀୟ ପତାକା କଲେଜରେ ଉଡ଼ାଇଥିଲେ ସେମାନଙ୍କୁ ବଧେଇ ଜଣାଗଲା ଓ ସେମାନଙ୍କୁ ରଷ୍ଟିକେଟ୍ କଲେ ପରିଣାମ ଭୟାବହ ହେବ ବୋଲି କର୍ତ୍ତୃପକ୍ଷଙ୍କୁ ଚେତାବନୀ ଦିଆଗଲା । ଦ୍ୱିତୀୟ ଦାବୀ ଥିଲା ଯେ ପ୍ରାଥମିକ ସ୍ତରରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଓଡ଼ିଶାର ସମସ୍ତ ଶିକ୍ଷାନୁଷ୍ଠାନରେଏବେଠାରୁ ଇଉନିୟନ୍ ଜ୍ୟାକ୍ ପରିବର୍ତ୍ତେ ଜାତୀୟ ପତାକା ଉଡ଼ାଯିବ । ସେତେବେଳେ ବ୍ରିଟିଶ୍ ସରକାର ଥାଏ । ମାଉଣ୍ଟ୍ ବ୍ୟାଟେନ୍ ଭାଇସ୍‌ରାୟ ଓ ଅକିନେଲେକ୍ ପ୍ରଧାନ ସେନାପତି । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ

ଥାଆନ୍ତି ଓଡ଼ିଶାର ପ୍ରଧାନମନ୍ତ୍ରୀ । (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।) ଏଠି ପ୍ରକାଶ ଥାଉକି ଏହି ଅକିନେଲେକଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଦୀକ୍ଷାନ୍ତ ଭାଷଣ ଦେବାପାଇଁ ନିମନ୍ତ୍ରଣ କରାଯାଇଥିଲା । ଛାତ୍ରମାନେ ଏହାର ପ୍ରବଳ ବିରୋଧ କରିବାରୁ ଅକିନେଲେ ଆଉ ଆସି ନଥିଲେ । ଏବେ ଏ ଦୁଇଟି ପ୍ରସ୍ତାବକୁ ନେଇ ଆନ୍ଦୋଳନ ଚାଲିଲା । କ୍ରିୟାନୁଷ୍ଠାନ କମିଟିର ସଭାପତି ରହିଲେ ପ୍ରଦୀପ୍ତ କିଶୋର ଦାସ । କମିଟି ସରକାରଙ୍କୁ ଚରମ ପତ୍ର ଦେଲେଯେ ଯେପର୍ଯ୍ୟନ୍ତ ଏ ଦୁଇଟି ଦାବୀ ପୂରଣ ନ ହୋଇଛି ସେ ପର୍ଯ୍ୟନ୍ତ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସ ଆମ ହାତରେ ।

ଗୋଟିଏ ଅଭିନବ ପରୀକ୍ଷା କରାଗଲା । ଆନ୍ଦୋଳନକୁ ବୈପ୍ଳବିକ ରୂପ ଦିଆଯିବ । ଅଥଚ ଏହା ସଂପୂର୍ଣ୍ଣଭାବେ ଅହିଂସକ ହେବ । ଆମେ ପଶ୍ଚିମ ଛାତ୍ରାବାସକୁ ଦଖଲ କରିନେଲୁ ଏବଂ ସୁପରିଟେଣ୍ଡେଣ୍ଟଙ୍କୁ ଛାତ୍ରାବାସରେ ତିଆରି କରାଯାଇଥିବା 'ଜେଲ୍' ଭିତରେ ସସମ୍ମାନେ ବନ୍ଦୀ କରିଦେଲୁ । ସେତେବେଳେ ଆମର ସୁପରିଟେଣ୍ଡେଣ୍ଟ ଥାଆନ୍ତି ଖ୍ୟାତନାମା ଦର୍ଶନ ଅଧ୍ୟାପକ (ଯେ କି ପରବର୍ତ୍ତୀ କାଳରେ କେତୋଟି ବିଶ୍ୱବିଦ୍ୟାଳୟର କୁଳପତି ହେଲେ) ଶ୍ରୀଯୁକ୍ତ ଶ୍ରୀନିବାସ ସାହୁ । ମୋର ମନେ ଅଛି ଆମେ ସେହି ଜେଲ୍‌ରେ ତାଙ୍କୁ ଦେଖା କରିବାକୁ ଯାଇ ପଚାରିଲୁ, "ସାର୍, ଆପଣ କିପରି ଅଛନ୍ତି ?" ସେ ହସି ହସି କହିଲେ, "ଖୁବ୍ ଭଲରେ ଅଛି ।" ପଶ୍ଚିମ ଛାତ୍ରାବାସକୁ ଆମେ ସ୍ୱାଧୀନ ସାଧାରଣତନ୍ତ୍ର ଘୋଷଣା କରିଦେଲୁ । ଅଧ୍ୟକ୍ଷ ଏସ୍. ରାୟ ପଶ୍ଚିମ ଛାତ୍ରାବାସକୁ ଯିବା ପାଇଁ ଆମ 'ଅନୁମତି' ମାଗିଲେ । କ୍ରିୟାନୁଷ୍ଠାନ କମିଟି ତାଙ୍କୁ ଅନୁମତି ଦେଲା ନାହିଁ । ମୋତେ ଚିହ୍ନିଥିବାରୁ କହିଲେ "କିରେ ରବି! ମୁଁ ଯିବି ?" ମୁଁ ମନା କରିଦେଲି । ମୁଁ କହିଲି, "ସାର୍ ଆପଣଙ୍କ ପ୍ରତି ଆମର ଶ୍ରଦ୍ଧା ରହିଛି । ମାତ୍ର ଇଏ ହେଉଛି ଆମର ସର୍ବସମ୍ମତିକ୍ରମେ ନିଆଯାଇଥିବା ଫଏସଲା । ମୁଁ ନାଚାର ।"

ସେତେବେଳେ ପଶ୍ଚିମ ଛାତ୍ରବାସର ହଷ୍ଟେଲରେ ଜଣେ ଅନ୍ତେବାସୀ ଥାଆନ୍ତି (ପରବର୍ତ୍ତୀ କାଳରେ ଓଡ଼ିଶା ମୁଖ୍ୟମନ୍ତ୍ରୀ ହୋଇଥିବା କଂଗ୍ରେସ ନେତା) ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ସେତେବେଳେ ସଂସ୍କୃତ ଅନର୍ସର ଜଣେ କୃତୀ ଛାତ୍ର ଭାବରେ ତାଙ୍କର ସୁନାମ ଥାଏ । ଆମେ ତାଙ୍କୁ ସଭାପତି ରୂପେ ବାଛିଲୁ ।

ଛାତ୍ରମାନଙ୍କ ଦାବୀ ସପକ୍ଷରେ ଆମେ ଯେଉଁ ଶୋଭାଯାତ୍ରା ସେତେବେଳେ ବାହାର କରିଥିଲୁ ତାହା କଟକ ସହର ପାଇଁ ଥିଲା ଅଭୂତପୂର୍ବ । ମୁଁ ଏଭଳି ଛାତ୍ର ଶୋଭାଯାତ୍ରା କେବେ ଦେଖିନାହିଁ । ଝିଅମାନେ ପୁରାପୁରି ଆଗରେ ଥାଆନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ ନାଁ ମୋର ଏବେ ମଧ୍ୟ ମନେ ଅଛି । ଜଣେ ହେଲେ ନିରୁପମା ରଥ ଓ ଅନ୍ୟଜଣକ ଯୋଗମାୟା ପଟ୍ଟନାୟକ । (ଉଭୟ ପରବର୍ତ୍ତୀ ଜୀବନରେ ଡାକ୍ତର ହେଲେ )। ହଁ, ଶ୍ୟାମଳୀ ଲାହିଡ଼ି (ଯେ ପରେ କୁଳମଣି ମହାପାତ୍ରଙ୍କୁ ବିବାହ କଲେ) ମଧ୍ୟ ଆଗଧାଡ଼ିରେ ଥିଲେ । ଶୋଭାଯାତ୍ରା ରେଭେନ୍ସା କଲେଜରୁ ବାହାରି ବକ୍ସିବଜାର ଦେଇ ଗୌରୀଶଙ୍କର ପାର୍କ ନିକଟରେ ପହଞ୍ଚିଲା । ସେତେବେଳେ ରାମନାଥନ୍ ଥାଆନ୍ତି ଜିଲ୍ଲା ମାଜିଷ୍ଟ୍ରେଟ୍ । ଲୋକେ ଆମକୁ ଏପରି ସମର୍ଥନ ଦେବା ଆରମ୍ଭ କଲେ ଯେ ଆମେ ପାର୍କ ନିକଟରେ ପହଞ୍ଚିଲା ବେଳକୁ ପିଲାଏ ଖାଇବେ

ବୋଲି ବାଲୁବଜାରରୁ ଭରଣ ଭରଣ ମୁଢ଼ି ଓ ପାଣି ଆଣି ଲୋକେ ସଭାସ୍ଥଳରେ ପହଞ୍ଚାଇ ଥିଲେ । ଆମ ପଛରେ ସୃଷ୍ଟି ହୋଇଥିବା ଜନସମର୍ଥନକୁ ଲକ୍ଷ୍ୟ କରି ରାମନାଥନ୍ ସଭାସ୍ଥଳରେ ଯେଉଁ ୧୪୪ ଧାରା ଜାରି କରିଥିଲେ ତାକୁ ଉଠାଇ ନେଲେ । ଶ୍ୟାମଳୀ ଲାହିଡ଼ିଙ୍କୁ ଗିରଫ କରିବା ପାଇଁ ସର୍ଜେଣ୍ଟ ମାର୍କଣ୍ଡ ରାଉତରାୟ ଆସିଲେ । ମୁଁ କହିଲି ସ୍ତ୍ରୀ ପୋଲିସ୍ ନ ଆଣିଲେ ଆପଣ ତାଙ୍କୁ ଛୁଇଁ ପାରିବେ ନାହିଁ । ସେ ତାପରେ ଶ୍ୟାମଳୀଙ୍କୁ ଛାଡ଼ି ମୋତେ ଗିରଫ କଲେ । ମୁଁ ସେଦିନ ଜୀବନରେ ପ୍ରଥମ ଥର ପାଇଁ ଗିରଫ ହେଲି । ଏ ଦିନଟି ମୋ ଜୀବନରେ ଏକ ଅଭୁଲା ସ୍ମୃତି ହୋଇ ରହିଛି ।

ଆମେ ଯେଉଁମାନେ କାରାବରଣ କଲୁ ଘୋଷଣା କରିଲୁ ଯେ ଯେଉଁଦିନ ସରକାର ଆମର ଦାବୀ ମାନିନେବେ ସେଇଦିନ ଆମେ ଜେଲ୍‌ରୁ ଆସିବୁ । ଛାତ୍ର ଓ ସରକାରଙ୍କ ଠାରେ ମଧ୍ୟସ୍ଥତା କରିବାକୁ ଦାୟିତ୍ୱ ନେଇଥାନ୍ତି ପରବର୍ତ୍ତୀ କାଳରେ ବିଚାରପତି ହୋଇଥିବା ଶ୍ରୀଯୁକ୍ତ ହରିହର ମହାପାତ୍ର । ଶେଷରେ ଆମର ଦାବୀ ପୂରଣ ହେଲା । ଆମେ ଜେଲ୍‌ରୁ ଖଲାସ ହୋଇ ଟାଉନ୍‌ହଲ୍ ପଡ଼ିଆରେ ସଭାକଲୁ ଓ ବୀରଦର୍ପରେ କଲେଜକୁ ଫେରିଲୁ । ଇଂରେଜ ରାଜତ୍ୱ ଭିତରେ ଗୋଟାଏ ରାଜ୍ୟର ଶିକ୍ଷାନୁଷ୍ଠାନରେ ଜାତୀୟ ପତାକା ଉଡ଼ିବା ସାରା ଭାରତରେ ଏହା ପ୍ରଥମ ଘଟଣା ଥିଲା ଓ ଏହା ସାରା ଭାରତରେ ସେ ସମୟରେ ଚହଳ ପକାଇ ଦେଇଥିଲା ।

ମତାଦର୍ଶ ନେଇ ଜଣକ ସହିତ ବେସାଲିସ୍ ସଂଗ୍ରାମ କରାଯାଉଥିବାବେଳେ ବ୍ୟକ୍ତିଗତ ଜୀବନରେ ଯେ ତା' ସହିତ ସୌହାର୍ଦ୍ଦ୍ୟପୂର୍ଣ୍ଣ ସଂପର୍କ ରଖାଯାଇପାରେ ଗଣତାନ୍ତ୍ରିକ ଜୀବନଚର୍ଯ୍ୟାର ଏହି ପ୍ରଥମ ପାଠ ମୁଁ ପଢ଼ିବାର ସୁଯୋଗ ପାଇଥିଲି ମୋ ନିଜ ଘରୁ । ଆମ ବାପା ପାଞ୍ଚ ଭାଇ । ସବା ସାନ ଭାଇ ଥିଲେ କୃଷ୍ଣଚନ୍ଦ୍ର ରାୟ । ସେ ପ୍ରଥମେ କଲିକତାରେ ପଢ଼ିଥିଲେ । ପରେ ଆସି ଘରେ ରହିଲେ । ତାଙ୍କ ସହିତ ମୋର ଆଦର୍ଶଗତ ପାର୍ଥକ୍ୟ ଥିଲା । ସେ ସତ୍ୟବାଦୀ ବନ ବିଦ୍ୟାଳୟରେ ପାଠ ପଢ଼ିଥିଲେ ଓ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଛାତ୍ର ଥିଲେ । ପରବର୍ତ୍ତୀ ଜୀବନରେ ଗୋଦାବରୀଶ ବାବୁ ଗାନ୍ଧୀ ଆନ୍ଦୋଳନକୁ ବିରୋଧ କରିଥିଲେ ଓ ପାରଳାଖେମୁଣ୍ଡି ମହାରାଜା ୧୯୪୩ ମସିହାରେ ଯେଉଁ ମନ୍ତ୍ରୀମଣ୍ଡଳ ଗଢ଼ିଥିଲେ ସେଥିରେ ଯୋଗ ଦେଇଥିଲେ । ମୋ ଦାଦା ନିଜ ପୂର୍ବତନ ଗୁରୁଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରି ଗାନ୍ଧୀ ଆନ୍ଦୋଳନକୁ ବିରୋଧ କରୁଥିଲେ । ସେ ୧୯୪୨ ଆନ୍ଦୋଳନରେ ଯୋଗ ଦେଇନଥିବାରୁ ମୋ ମନରେ କ୍ଷୋଭ ଜାତ ହୋଇଥିଲା । କଂଗ୍ରେସ ବିରୁଦ୍ଧରେ ସେ ବେଳେବେଳେ ଉଦ୍ଭଟ କଥା ପ୍ରଚାର କରୁଥିଲେ । ମୋର ମନେ ଅଛି ଖଦଡ଼ ପିନ୍ଧିଲେ ମ୍ୟାଲେରିଆ ଜର ହୁଏ ବୋଲି ସେତେବେଳେ ତାଙ୍କ ସହକର୍ମୀମାନେ ଭାଷଣରେ ଲୋକଙ୍କୁ ବୁଝାଉଥିଲେ । ତେବେ ସେତେବେଳେ ଗାନ୍ଧିଜୀ ଓ କଂଗ୍ରେସ ସପକ୍ଷରେ ବହୁଥାଏ ପ୍ରବଳ ହାଓ୍ୱା । ଫଳରେ କଂଗ୍ରେସ ବିରୋଧୀମାନଙ୍କୁ ଲୋକେ ସନ୍ଦେହ ଦୃଷ୍ଟିରେ ଦେଖୁଥାଆନ୍ତି । ମୋର ମନେ ଅଛି, ଆମ ଅଞ୍ଚଳର ସବୁଠାରୁ ବଡ଼ ବ୍ୟବସାୟ ପେଣ୍ଠ ବନମାଳୀପୁର ହାଟରେ ଥରେ କଂଗ୍ରେସ କର୍ମୀମାନେ ପ୍ରଚାର କରୁଥିବାବେଳେ କୃଷ୍ଣକକାଙ୍କ ସମର୍ଥକମାନେ କଂଗ୍ରେସ

କର୍ମୀଙ୍କୁ ପ୍ରବଳ ମାଡ଼ ମାରିଥିଲେ । ଅବଶ୍ୟ ତାଙ୍କ ବିରୁଦ୍ଧରେ ଏପ୍ରକାର ଅଣଗାନ୍ଧୀବାଦୀ ପଦକ୍ଷେପକୁ ମୁଁ ସମର୍ଥନ କରିପାରି ନଥିଲି ।

ଆମର ମୁରବୀ ସେଇ ଦାଦା । ସେ ମୋର ପଢ଼ାପଢ଼ିର ମଧ ଦାୟିତ୍ୱ ନେଇଥାନ୍ତି । ବନମାଳିପୁର ହାଟରେ ଗୋଟିଏ ପାଠାଗାର ଥିଲା । କକା ସେଠି ଗୋଟିଏ କଣ୍ଟ୍ରୋଲ ଦୋକାନ ଖୋଲାଇ ଦେଲେ । ମୁଁ ଏହାର ବିରୋଧ କରି ବନମାଳିପୁର ହାଟରେ ଗୋଟିଏ ସଭାକଲି । ସାଧାରଣ ସଭାରେ ଭାଷଣ ଦେବା ସେଇ ଥିଲା ମୋ ଜୀବନରେ ପ୍ରଥମ । ମୋତେ ଏତେ ପରିମାଣରେ ଜନ ସମର୍ଥନ ମିଳିଲାଯେ କକା ବାଧହୋଇ ସେଠାରୁ କଣ୍ଟ୍ରୋଲ ଦୋକାନ ଉଠାଇନେଲେ ଏବଂ ଆମେ ପିଲାମାନେ ପୁନର୍ବାର ପାଠାଗାର ଚାଲୁକଲୁ । ତେବେ ବ୍ୟକ୍ତିଗତ ଜୀବନରେ କକାଙ୍କ ପ୍ରତି ମୋର ସମ୍ମାନବୋଧ ପୂର୍ବପରି ଅତୁଟ ରହିଥିଲା । ମୋ ଦ୍ୱାରା ସେ ଏହିଭଳି ଅପଦସ୍ତ ହୋଇଥିଲେ ମଧ ବ୍ୟକ୍ତିଗତ ଜୀବନରେ ମୋ ପ୍ରତି ତାଙ୍କ ମନରେ କୌଣସି ତିକ୍ତତା ସୃଷ୍ଟି ହୋଇନଥିଲା । ମୁଁ କଲେଜରେ ପାଠ ପଢ଼ିଲାବେଳେ ସେ ଟଙ୍କା ଯୋଗାଉଥିଲେ ଓ ଅଧିକ ପଢ଼ିବା ପାଇଁ ସେ ଟଙ୍କା ଦେବେ ବୋଲି ମଧ ଭାଇଙ୍କୁ କହିଲେ । ମୋତେ ଲାଗୁଛି ମାସେ ଖଣ୍ଡ ସେ ଟଙ୍କା ବନ୍ଦ କରି ଦେଇଥିଲେ । ମାତ୍ର ମୋ ବଡ଼ ଭାଇ ମର୍ଦ୍ଦରାଜ ରାୟ ପିତାମ୍ବର ମହାପାତ୍ର କକାଙ୍କୁ ଚିଠି ଲେଖିଲେ । କକା ପୁଣି ପୂର୍ବ ପରି ଟଙ୍କା ପଠାଇଲେ । ଏହିଭଳି ବ୍ୟକ୍ତିଗତ ସଂପର୍କ ଓ ଆଦର୍ଶଗତ ସଂପର୍କକୁ ପୃଥକ୍ କରି ରଖିପାରିବାର ଗଣତାନ୍ତ୍ରିକ କଳା ମୁଁ ସେହି ଯୁବାବସ୍ଥାରୁ ନିଜ ଘରୁ ଶିଖିଥିଲି । ମୋର ସେହି ପ୍ରଥମ ବିଜୟପରେ କିଛି ଭଲ କାମ କରିବି ଓ ଲୋକଙ୍କ ସମସ୍ୟା ସହିତ ପ୍ରତ୍ୟକ୍ଷଭାବେ ଜଡ଼ିତ ହେବି - ଏ ସଂକଳ୍ପ ଅଧିକ ଦୃଢ଼ ହେଲା ।

ଏହା ମୋ କଟକରେ ଥିବା ବେଳର ଏକ ଘଟଣା । ବଡ଼ଭାଇ ମର୍ଦ୍ଦରାଜ ରାୟଙ୍କ ଠାରୁ ହଠାତ୍ ଖବର ପାଇଲି ଯେ ବୋଉ ଦେହ ଭୀଷଣ ଖରାପ । ସେତେବେଳକୁ ବୋଉର ଡାଏବେଟିସ୍ ବଢ଼ିଯିବା ସହିତ ତାର ଗୋଟିଏ ଆଙ୍ଗୁଠି ପାଚି ନଷ୍ଟ ହୋଇଯାଇଥାଏ । ଘରେ ପରିସ୍ଥିତି ଖୁବ୍ ଖରାପ ଆଡ଼କୁ ଗତି କଲାରୁ ସେମାନେ ମୋ ପାଖକୁ ଫୋନ୍ କଲେ ଏବଂ ମୁଁ ମଧ କାଳବିଳମ୍ବ ନ କରି ଗାଁରେ ପହଞ୍ଚିଗଲି । ସେଠାରେ ବୋଉର ଅବସ୍ଥା ଦେଖି ମୋର ଯାହା ମନେ ହେଲା ଯଦି ବୋଉକୁ ସେହି ଅବସ୍ଥାରେ ତୁରନ୍ତ କଟକ ବଡ଼ ଡାକ୍ତରଖାନା ଅଣା ନ ଯାଏ ତାହେଲେ ବୋଉ ହୁଏତ ବଞ୍ଚିବ ନାହିଁ । ଏଥିନେଇ ବଡ଼ଭାଇଙ୍କ ସହିତ ପରାମର୍ଶ କଲି । ସେତେବେଳେ ପୁଣି କଟକ ଆସିବା ଲାଗି ଗାଡ଼ିମଟର ଆଦୌ ସୁବିଧା ନଥିଲା । ବଡ଼ଭାଇ ତେଣୁ ଗୋଟିଏ ସବାରି ଠିକ୍ କଲେ । ସେହି ସବାରିରେ ବୋଉକୁ ଭୁବନେଶ୍ୱର ରେଳଷ୍ଟେସନ ପର୍ଯ୍ୟନ୍ତ (ପ୍ରାୟ ଆମଘରଠୁ ଏହା ୨୦ କି.ମି. ଦୂର) ଅଣାଗଲା । ଏବେ ମଧ ମୋର ସ୍ପଷ୍ଟ ମନେ ଅଛି ମୁଁ ଏବଂ ମୋର ବଡ଼ଭାଇ ସବାରୀର ଦୁଇପାଖରେ ଚାଲି ଚାଲି ରେଳଷ୍ଟେସନ ପର୍ଯ୍ୟନ୍ତ ଆସିଥିଲୁ ଏବଂ ସେଠାରୁ ଟ୍ରେନ୍ ଚଢ଼ି କଟକ ବଡ଼ ଡାକ୍ତରଖାନାରେ ପହଞ୍ଚିଥିଲୁ । ସେତେବେଳେ ମେଡ଼ିକାଲର ସୁପରିଟେଣ୍ଡେଣ୍ଟ ଥାଆନ୍ତି ଡଃ. କାଶୀନାଥ ମିଶ୍ର । ସେ ଜଣେ ଭଲ ଡାକ୍ତର ମଧ । ସେ ବୋଉକୁ ଦେଖି କହିଲେ ବୋଉର

ଯଦି ଆଙ୍ଗୁଳି କଟା ନଯାଏ ତାହେଲେ ସେ ହୁଏତ ବଞ୍ଚିବା ଅସମ୍ଭବ ହୋଇପଡ଼ିବ । ଅଗତ୍ୟା ଡାକ୍ତରଙ୍କ ପରାମର୍ଶ ଅନୁସାରେ ବୋଉର ଆଙ୍ଗୁଳି କଟାଗଲା ଏବଂ ସେ ବଞ୍ଚିଲା ।

ପୂର୍ବରୁ ରେଭେନ୍ସା କଲେଜର ଯେଉଁ ଛାତ୍ର ଆନ୍ଦୋଳନ କଥା ବର୍ଣ୍ଣନା କରିଛି ସେଇ ଛାତ୍ର ଆନ୍ଦୋଳନରୁ ମୋର ରାଜନୈତିକ ଜୀବନର ମୂଳଦୁଆ ପଡିଲା । ଛାତ୍ର ଆନ୍ଦୋଳନରେ ମୁଁ ସେବେଠାରୁ ଖୁବ୍ ସକ୍ରିୟ ହୋଇ ପଡ଼ିଲି । ଏଠି ଉଲ୍ଲେଖଯୋଗ୍ୟ ଯେ ମୋ ବଡ଼ ଭାଇ ଏ ଦିଗରେ ମୋତେ ସାହାଯ୍ୟ କରୁଥିଲେ ।

ଅଗଷ୍ଟ ୯, ୧୯୪୨ରେ ଗାନ୍ଧିଜୀ ଗିରଫ ହୋଇଯିବାପରେ ଯେଉଁମାନେ ଆନ୍ଦୋଳନକୁ ଚଳାଇ ରଖିଲେ ସେମାନଙ୍କ ଭିତରୁ ମୁଁ ତିନିଜଣଙ୍କ ନାଁ ଉଲ୍ଲେଖ କରିବି । ଏମାନେ ୧୯୪୨ ଭାରତ ଛାଡ଼ ଆନ୍ଦୋଳନକୁ ଚଳାଇ ରଖିଥିଲେ । ଏ ତ୍ରିମୂର୍ତ୍ତୀ ହେଲେ ଜୟପ୍ରକାଶ ନାରାୟଣ, ରାମମନୋହର ଲୋହିଆ ଏବଂ ଅରୁଣା ଆସଫ୍ ଅଲ୍ଲୀ । ଗାନ୍ଧିଜୀ ଗିରଫ ହୋଇଯିବାପରେ ଏ ତିନି ନେତା ଭାରତର ପ୍ରଗତିଶୀଳ ଯୁବସମାଜ ନିକଟରେ ପ୍ରେରଣାର ଉତ୍ସ ହୋଇଯାଇଥିଲେ । ୧୯୪୨ ଆନ୍ଦୋଳନରେ ଏମାନେ ଯେଉଁ ସାହସ, ତ୍ୟାଗ ଏବଂ ନିଷ୍ଠା ପ୍ରଦର୍ଶନ କଲେ ତାହା ଦେଶଭକ୍ତ ଯୁବ ସମାଜର ହୃଦୟତନ୍ତ୍ରୀକୁ ସ୍ପର୍ଶ କଲା ।

ଆମର ସୌଭାଗ୍ୟକୁ ଜୟପ୍ରକାଶଜୀ ଏବଂ ଡ: ଲୋହିଆ ଉଭୟ ଆଗପଛ ହୋଇ ଓଡ଼ିଶାଗସ୍ତରେ ଆସିଲେ । ଜୟପ୍ରକାଶଙ୍କ ଗସ୍ତକୁ କମ୍ୟୁନିଷ୍ଟ ପାର୍ଟି ବିରୋଧ କରୁଥାଏ । ଆମେ କିନ୍ତୁ ତାଙ୍କୁ ବୀରର ସମ୍ମାନ ଦେଇଥିଲୁ । ତାପରେ ୧୯୪୮ ସାଲରେ ଲୋହିଆ (ଯେକି ସୋସାଲିଷ୍ଟପାର୍ଟିର କେନ୍ଦ୍ରୀୟ କାର୍ଯ୍ୟାଳୟ ତରଫରୁ ଓଡ଼ିଶା ଦାୟିତ୍ୱରେ ଥିଲେ) ଓଡ଼ିଶାଗସ୍ତରେ ଆସିଲେ । ସେ ଆସି ବାଲେଶ୍ୱରରେ ପହଁଞ୍ଚିଲେ । ସେତେବେଳେ ସମାଜବାଦୀମାନଙ୍କର ଗୋଟାଏ ପକ୍ଷରେ କମ୍ୟୁନିଷ୍ଟମାନଙ୍କ ସହିତ ଓ ଅପର ପକ୍ଷରେ ରକ୍ଷଣଶୀଳ କଂଗ୍ରେସ ନେତାମାନଙ୍କ ସହିତ ଆଦର୍ଶଗତ ସଂଘର୍ଷ ଚାଲିଥାଏ । ୧୯୪୬ରେ ସୋସାଲିଷ୍ଟମାନେ କଂଗ୍ରେସ ଛାଡ଼ିଦେଲେ । ତତ୍କାଳୀନ କଂଗ୍ରେସ ସଂପାଦକ ଶଙ୍କର ରାଓ ଦେଓ ଲୋହିଆଙ୍କୁ ବାଛନ୍ଦ କରିବା ପାଇଁ କଂଗ୍ରେସ ବାଲାଙ୍କୁ ଆନୁଷ୍ଠାନିକ ଭାବେ ସର୍କୁଲାର୍ ପଠାଇଥାଆନ୍ତି । ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥାଆନ୍ତି ଡ: ମହତାବ । କଂଗ୍ରେସ ତରଫରୁ ଡ: ଲୋହିଆଙ୍କୁ ଆତିଥ୍ୟ ଦିଆଗଲା ନାହିଁ ଓ ବାଛନ୍ଦ କରାଗଲା । ସମାଜବାଦୀ ନେତା ରବୀନ୍ଦ୍ରମୋହନ ଦାସ ଡ: ଲୋହିଆଙ୍କୁ ସ୍ୱାଗତ କରି ଟ୍ରକ୍‌ରେ ନେଇଯାଇଥିଲେ ।

ଆମେ ପ୍ରାୟ ଶହେଜଣ ଛାତ୍ର ଡ: ଲୋହିଆଙ୍କୁ ଭେଟିବାକୁ ବାଲେଶ୍ୱର ଗଲୁ । ସେଇ ପ୍ରଥମ ଭେଟରୁ ହିଁ ମୁଁ ଧରିନେଲି ସେ ମୋ ଭବିଷ୍ୟତ ଜୀବନର ନେତା । ମୋର ଯେଉଁ ଜୀବନ ଦର୍ଶନ ଗଢ଼ି ଆସୁଥିଲା ସେ ତାଙ୍କ ଭାଷାରେ ସତେକି ସେଇ ସବୁର ପ୍ରଖ୍ୟାପନ କଲେ । ସେଇଦିନରୁ ସେ ମୋ ନେତା ରହିଲେ । ଆମେ ଯେତେବେଳେ ତାଙ୍କ ନିକଟକୁ ଗଲୁ ସେ ଆମକୁ ଗୋଟିଏ ପ୍ରଶ୍ନ କଲେ, "ତୁମେ ରିକ୍ସାବାଲାକୁ କ'ଣ ବୋଲି ସମ୍ବୋଧନ କର ?" ଭାରି ମାମୁଲି ପ୍ରଶ୍ନଟିଏ ଭଳି ଲାଗୁଥିଲେ ମଧ ଏହାର ଗଭୀର ତାତ୍ପର୍ଯ୍ୟ ରହିଥିଲା ।

ଆମେ ତାଙ୍କ ପ୍ରଶ୍ନର ଉତ୍ତର ଦେଲୁ, "ଆମେ 'ତୁ' ବୋଲି ସମ୍ବୋଧନ କରୁ ।" ସେଥିରୁ ସେ କହିଲେ, "ଗାନ୍ଧିବିନା ସମାଜବାଦ ସମ୍ଭବ ନୁହେଁ । ତମଠାରୁ ଯିଏ ତଳେ ଅଛି, ଯିଏ ଫୁଲ୍‌ପ୍ୟାଣ୍ଟ୍ ପିନ୍ଧେ ନାହିଁ, ଧୋବଧାବଳିଆ ନୁହେଁ ସେମାନଙ୍କୁ 'ତୁ' ବୋଲି ସମ୍ବୋଧନ କରିବ ଆଉ ଧନୀ, କୋଟିପତିଙ୍କୁ 'ଆପଣ' ବୋଲି ସମ୍ବୋଧନ କରିବ । ଏଥିରେ ଗୋଟିଏ ସାଆନ୍ତିଆ ମାନସିକତା ପ୍ରତିଫଳିତ ହେଉଛି । ଏ ମାନସିକତା ନ ବଦଳାଇଲେ ସମାଜବାଦ ହୋଇ ପାରିବ ନାହିଁ । ଏଣିକି ଦରିଦ୍ର ଲୋକଙ୍କୁ 'ଆପଣ' ସମ୍ବୋଧନ କରିବାକୁ ପଡ଼ିବ ।"

୧୯୪୫ରେ ଜୟପ୍ରକାଶ ନାରାୟଣ ଓଡ଼ିଶା ଆସିବାର ଦୁଇମାସ ପୂର୍ବରୁ ତାଙ୍କୁ ଗୋଟିଏ ଥଳି ଭେଟି ଦିଆଯିବା ସ୍ଥିର ହୋଇଥିଲା । ସେ ଆସିବାପରେ ତାଙ୍କୁ କୋଡ଼ିଏ ହଜାର ଟଙ୍କାର ଗୋଟିଏ ଥଳି ଭେଟି ଦିଆଗଲା । ଏଥିପାଇଁ ଯେଉଁ ଉପାୟରେ ଚାନ୍ଦା ଆଦାୟ ହୋଇ ଥିଲା ସେଇଟା ଏଠି ଉଲ୍ଲେଖ ଯୋଗ୍ୟ । ତରୁଣ ସମାଜବାଦୀ ସଂଘ ତରଫରୁ ଆମେ ଠିକ୍ କଲୁ ଯେ ଆମେ କଟକ ସହରର ଗଳିକନ୍ଦି ଖୋଳ କରତାଳ ଧରି ବୁଲିବୁ । ଗୀତ ଗାଇ ଚାନ୍ଦା ଆଦାୟ କରିବୁ । ସେୟାକଲୁ । ସେତେବେଳେ ଆମେ ଯେଉଁ ସବୁ ଗୀତ ଗାଉଥିଲୁ ସେଥିରୁ ଗୋଟିକର ଗୋଟିଏ ପଦ ମନେ ପଡୁଛି :

"ଉଠରେ ଜନତା ହସି ଜୟପ୍ରକାଶର ରଣଦୁନ୍ଦୁଭି ବାଜିଲାଣି କାନେ ଆସି ।"

ଆମେ ପୁଅଝିଅ ଏକାଠି ମିଶି ଏ ଚାନ୍ଦା ଆଦାୟ ଅଭିଯାନରେ ଯାଉଥିଲୁ । ଝିଅମାନଙ୍କ ଭିତରେ ଥିଲେ ଶ୍ୟାମଳୀ ଲାହିଡ଼ି (ଯେ କି ପରବର୍ତ୍ତୀ ଜୀବନରେ ଡ: କୁଳମଣି ମହାପାତ୍ରଙ୍କୁ ବିବାହ କରି ଶ୍ୟାମଳୀ ମହାପାତ୍ର ହେଲେ) । ଶ୍ୟାମଳୀ ମହିଳା କଲେଜର ଛାତ୍ରୀ ଥିବାବେଳେ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇ କଟକ ପୌରସଭାକୁ ନିର୍ବାଚିତ ହୋଇଥିଲେ । ମୋର ଇତିହାସ ଅଧାପକ ପ୍ରଫେସର ଘନଶ୍ୟାମ ଦାଶଙ୍କ ଝିଅ ଇଲା ଦାଶ (ପରେ ଶିଳ୍ପପତି ବଂଶୀଧର ପଣ୍ଡାଙ୍କୁ ବିବାହ କରି ଇଲା ପଣ୍ଡା ହେଲେ) ଜୟପ୍ରକାଶଙ୍କ ପାଇଁ ଚାନ୍ଦା ଆଦାୟ କରିବା ଅଭିଯାନରେ ଯୋଗ ଦେଇଥିଲେ । ସେତେବେଳେ ସେ ୯ମ କି ୧୦ମ ଶ୍ରେଣୀର ଛାତ୍ରୀ । ମୁଁ ନିଜେ ତାଙ୍କ ଘରକୁ ଯାଇ ସାର୍‌ଙ୍କୁ କହିଲି "ସାର. ଜୟପ୍ରକାଶଜୀଙ୍କୁ ଥଳି ଭେଟି ଦେବା ପାଇଁ ଆମେ ଚାନ୍ଦା ଆଦାୟ କରୁଛୁ । ଇଲାକୁ ପଠାନ୍ତୁ । ଆମ ସାଙ୍ଗରେ ଚାନ୍ଦା ଆଦାୟ କରିବାକୁ ଯିବ ।" ପ୍ରଫେସର ଦାଶ ଇଲାକୁ ଡାକି କହିଲେ, "ତୁ ସେମାନଙ୍କ ସାଙ୍ଗରେ ଜୟପ୍ରକାଶ ପାଣ୍ଠି ପାଇଁ ଚାନ୍ଦା ଆଦାୟ କରିବାକୁ ଯା ।" ସେତେବେଳେ ଝିଅପିଲାଙ୍କ ଅଭିଭାବକମାନଙ୍କର ଆମ ଉପରେ ଏତିକି ବିଶ୍ୱାସ ଥିଲା ! ମନେ ପଡୁଛି: ସେହି ଚାନ୍ଦା ଆଦାୟ କାର୍ଯ୍ୟରେ ଆମ ସହିତ ଥିଲେ ସ୍ୱର୍ଗତ ମିହିର ସେନ୍ ଯିଏକି ପରବର୍ତ୍ତୀ କାଳରେ ବାରିଷ୍ଟର ହେଲେ ଓ ଇଂଲିଶ୍ ଚାନେଲ୍ ସନ୍ତରଣ କରି ପୃଥିବୀ ପ୍ରସିଦ୍ଧ ହୋଇଗଲେ । ଥିଲେ ଆଜିର ପ୍ରସିଦ୍ଧ କଳାକାର ଶାରଦାଚରଣ ନାୟକ । ଆମେ ତରୁଣ ସମାଜବାଦୀ ସଂଘ ତରଫରୁ ଦୁଇ ହଜାର ଟଙ୍କା ଜୟପ୍ରକାଶ ପାଣ୍ଠିକୁ ଦେଇପାରିଥିଲୁ ।

ସେତେବେଳେ ନେତାଜୀ ସୁଭାଷ ବୋଷଙ୍କ ଆଜାଦ୍ ହିନ୍ଦ୍ ଫୌଜର ତିନିଜଣ ସେନାପତି – ସେହଗଲ୍, ଧାଲୋନ୍ ଓ ସାହାନୱାଜ୍ ଖାଁଙ୍କର ବିଚାର ଇଂରେଜ ସରକାର

କରୁଥାଆନ୍ତି ଦିଲ୍ଲୀ ଲାଲକିଲ୍ଲାରେ । ସେ ତିନିଜଣଙ୍କୁ ଖଲାସ କରିବା ପାଇଁ କଟକରେ ବେଶ୍ ଗୋଟାଏ ଆନ୍ଦୋଳନ ହୋଇଥିଲା । କଟକ ନେତାଜୀଙ୍କ ଜନ୍ମସ୍ଥାନ ହୋଇଥିବାରୁ ଏ ଆନ୍ଦୋଳନ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେତେବେଳେ ନେତାଜୀଙ୍କ ପ୍ରତି କଟକବାସୀଙ୍କର ଯେପରି ଶ୍ରଦ୍ଧା ଓ ଭକ୍ତି ଭାବ ଥିଲା ତାହା ଏବେ ମନେ ପଡ଼ିଲେ ଶିହରଣ ଜାତ ହେଉଛି ।

ଏଇ ଛାତ୍ର ଜୀବନର ଆଉ ଏକ ଅବିସ୍ମରଣୀୟ ସ୍ମୃତି ହେଲା ମୋର ଦୁଇଥର ଗାନ୍ଧୀ ଦର୍ଶନ । ପ୍ରଥମ ଥର ମୁଁ ଗାନ୍ଧିଜୀଙ୍କୁ ଦେଖିଥିଲି ଖ୍ରୀ: ୧୯୩୭ରେ, ଯେତେବେଳେ ଗୋପରେ ଚତୁର୍ଥ ଶ୍ରେଣୀରେ ପଢୁଥିଲି । ସେତେବେଳେ ଡେଲାଙ୍ଗର ବେରବୋଇ ଗାଁରେ ଗାନ୍ଧିଜୀ ପ୍ରାୟ ଏକ ସପ୍ତାହ ରହିଲେ । କାହିଁ ଦୂରଦୂରାନ୍ତରୁ ଲୋକେ ଛୁଟି ଆଥାନ୍ତି ଗାନ୍ଧିଜୀଙ୍କ ଦର୍ଶନ ପାଇଁ । ତାଛଡ଼ା ସେଠି ଗୋଟିଏ ସୁନ୍ଦର କୁଟୀର ଉଦ୍ୟୋଗ ପ୍ରଦର୍ଶନୀ ମଧ ହେଉଥାଏ । ଆମଘରୁ ମୋ ବୋଉ ଓ ଆମେ ଭାଇ, ଭଉଣୀ ଶଗଡ଼ ଗାଡ଼ି କରି ସେଠି ପହଁଞ୍ଚିଲୁ । ସେଠି ଗାନ୍ଧିଜୀଙ୍କ ବକ୍ତୃତା ଶୁଣିଲୁ ଓ ପ୍ରଦର୍ଶନୀ ଦେଖି ଫେରିଲୁ ।

ତେବେ ମୋ ପାଇଁ ଅଧିକ ରୋମାଞ୍ଚକର ସ୍ମୃତି ହେଲା ମୋର କଲେଜ ଜୀବନରେ ଗାନ୍ଧିଦର୍ଶନ । ମୁଁ ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥାଏ । ରେଭେନ୍ସା କଲେଜର ପୂର୍ବ ଛାତ୍ରାବାସରେ ରହୁଥାଏ । ଗାନ୍ଧିଜୀ ୧୯୪୨ ଆନ୍ଦୋଳନ ପରେ ସଦ୍ୟ ଖଲାସ ହୋଇ ଥାଆନ୍ତି । ମେଦିନାପୁରରେ ଇଂରେଜ ସରକାରଙ୍କ ତରଫରୁ ଆନ୍ଦୋଳନକାରୀଙ୍କ ଉପରେ ଯେଉଁ ଅତ୍ୟାଚାର ହୋଇଥାଏ ତାକୁ ତଦାରଖ କରିବାକୁ ସେ ଆସି ଥାଆନ୍ତି । ଆମେ ଶୁଣିବାକୁ ପାଇଲୁ ଯେ ଗାନ୍ଧିଜୀ ସେଠାରୁ ମାଡ୍ରାସ୍ ମେଲ୍‌ରେ ବ୍ରହ୍ମପୁର ଯିବେ । କଟକ ଷ୍ଟେସନରେ ତାଙ୍କୁ ଦର୍ଶନ କରିବୁ - ଏହି ଅଭିଳାଷ ନେଇ ଅର୍ଦ୍ଧ ରାତ୍ରରେ କଟକ ଷ୍ଟେସନରେ ପହଁଞ୍ଚିଗଲୁ । କିନ୍ତୁ ଶୁଣିଲୁ ତାଙ୍କ ଟ୍ରେନ୍ କଟକ ଷ୍ଟେସନରେ ଅଟକିବାର ନାହିଁ । ମାତ୍ର ସେତେବେଳକୁ କଟକ ରେଳ ଷ୍ଟେସନ ଲୋକାରଣ୍ୟ । ଲୋକେ ନଛୋଡ଼ବନ୍ଧା । ଗାଡ଼ି ଅଟକାଇବା ପାଇଁ ଲୋକେ ରେଳଧାରଣା ଉପରେ ଶୋଇଗଲେ । ଗାଡ଼ି କଟକରେ ପହଞ୍ଚିଲା ରାତି ପ୍ରାୟ ଦୁଇଟା କି ସାଢ଼େ ଦୁଇଟା ବେଳେ । ଲୋକଙ୍କୁ ଧାରଣା ଉପରେ ଦେଖି ଗାଡ଼ି ସ୍ୱାଭାବିକ ଭାବେ ଅଟକିଗଲା । ଗାନ୍ଧିଜୀ ତ ସବୁବେଳେ ୩ୟ ଶ୍ରେଣୀରେ ଯାତାୟତ କରୁଥିଲେ । ଲୋକେ ତାଙ୍କ ଡବା ସମ୍ମୁଖରେ ଗଦା ହୋଇଗଲେ । ଗାନ୍ଧିଜୀ ନିଦରୁ ଉଠି ଅଗତ୍ୟା ଡବା ଦୁଆରମୁହଁକୁ ଆସିଲେ । ମୁଁ ରୋମାଞ୍ଚିତ ହେଲି । କାରଣ ମୁଁ ଠିକ୍ ଗାନ୍ଧିଜୀଙ୍କ ପାଖରେ ଛିଡ଼ା ହୋଇଥାଏ । ପ୍ରଥମେ ଗାନ୍ଧିଜୀ କଟକବାସୀଙ୍କୁ ମୃଦୁ ଭର୍ତ୍ସନା କଲେ । ସେତେବେଳେ କଟକ ଓଡ଼ିଶାର ରାଜଧାନୀ ଥାଏ । ସେ ଭଦ୍ରଖବାସୀଙ୍କ ସହିତ କଟକବାସୀଙ୍କୁ ତୁଳନା କରି ଭଦ୍ରଖବାସୀ କିପରି ତାଙ୍କୁ ଭଦ୍ର ଓ ଶୃଙ୍ଖଳିତ ବ୍ୟବହାର କଲେ ତା'ର ବର୍ଣ୍ଣନା ଦେଲେ । ମୃଦୁ ଭର୍ତ୍ସନା ପରେ ସେ ହସ୍ତ ପ୍ରସାରଣ କଲେ ହରିଜନ ପାଣ୍ଠିକୁ ସାହାଯ୍ୟ କରିବା ପାଇଁ । ମନେ ଅଛି, ହଜାର ହଜାର ଲୋକ, ଯାହା ପାଖରେ ଯାହା ଥିଲା,ଦାନ କରିଦେଲେ । ମୁଁ ଦୁଇ ପକେଟ୍‌ରେ ହାତ ଭର୍ତ୍ତି କରି ଯାହା ପାଇଲି ତାକୁ ଗାନ୍ଧିଜୀଙ୍କ ହାତକୁ ବଢ଼ାଇ ଦେଲି ।

ସେଦିନ ମୁଁ ନିଜକୁ ଆହୁରି ଭାଗ୍ୟବାନ ମଣିଲି । କାରଣ ସେହି ଜନସମୁଦ୍ର ଭିତରେ ଗାନ୍ଧିଜୀଙ୍କ ହାତ ସ୍ପର୍ଶ କରିବାର ଦୁର୍ଲଭ ସୌଭାଗ୍ୟ ମୋତେ ଜୁଟିଥିଲା । ୧୯୪୮ରେ ଗାନ୍ଧିଜୀଙ୍କୁ ହତ୍ୟା କରାଗଲାବେଳେ ମୁଁ ବି.ଏ. ପରୀକ୍ଷା ଦେଉଥିଲି ।

ଜାତିର ପିତା ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ ଦିବସଟି ମୋ ପାଇଁ ଏକ ଅଭୁଲା ସ୍ମୃତି ହୋଇରହିଛି । ସେତେବେଳକୁ ମୁଁ ବି.ଏ. ପରୀକ୍ଷା ଦେବା ପାଇଁ ନିଜକୁ ପ୍ରସ୍ତୁତ କରୁଥାଏ ଏବଂ ରେଭେନ୍ସା କଲେଜ ପଶ୍ଚିମ ଛାତ୍ରାବାସରେ ରହୁଥାଏ । ମୁଁ ଇତିହାସ ଅନର୍ସର ଛାତ୍ରଥିଲି । ପରୀକ୍ଷା ଯୋଗୁଁ ମୁଁ ଓ ମୋର ସହପାଠୀମାନେ ଖୁବ୍ ଜୋର୍ ସୋର୍‌ରେ ପାଠପଢ଼ାପଢ଼ିରେ ଲାଗି ଯାଇଥାଉ, ବୁଲାବୁଲି ପ୍ରାୟତଃ ନଥାଏ । ସଂଧ୍ୟା ସମୟରେ ଚା' ଜଳଖିଆ ଖାଇବା ପାଇଁ ଯାହା ଆମେ ବାହାରକୁ ଆସୁଥିଲୁ । ସେଦିନ ଥିଲା ଜାନୁଆରୀ ୩୦ ତାରିଖ, ୧୯୪୮ ମସିହା । ପ୍ରତିଦିନ ପରି ମୁଁ କଲେଜଛକରେ ଥିବା ମାରୱାଡ଼ି ଦୋକାନରେ ଜଳଖିଆ ଖାଉଛି, ହଠାତ୍ ଲକ୍ଷ୍ୟ କଲି ଲୋକମାନେ ଅସ୍ତବ୍ୟସ୍ତ ହୋଇ ଏଣେତେଣେ ଦୌଡ଼ାଦୌଡ଼ି କରୁଛନ୍ତି ଏବଂ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ କଥା 'ମହାତ୍ମାଗାନ୍ଧୀ ମରିଗଲେ ! ' ସେମାନଙ୍କ କଥାକୁ ମୁଁ ହଠାତ୍ ବିଶ୍ୱାସ କରିପାରିଲି ନାହିଁ । ଅଧାଖାଇଥିବା ଜଳଖିଆକୁ ଫୋପାଡ଼ି ଦୌଡ଼ିଲି ହଷ୍ଟେଲ୍‌କୁ । ସେଠାରେ ପହଞ୍ଚିବା ବେଳକୁ ଅବସ୍ଥା ତଦ୍ରୂପ । ସମସ୍ତେ ଶୋକ ଗଦ୍‌ଗଦ୍ ହୋଇ କହୁଛନ୍ତି 'ଗାନ୍ଧୀ ମରିଗଲେ !' ସେତେବେଳକୁ ଛାତ୍ରବାସ କମନ୍‌ରୁମ୍ ଭିତରେ ପ୍ରାୟ ୪୦୦/୫୦୦ ପିଲା ରୁଣ୍ଡ ହୋଇଯାଇଥାନ୍ତି । ସମଗ୍ର ବାତାବରଣ ଏକାବେଳକେ ଶୋକାକୁଳ, ସମସ୍ତେ ଭେଁ ଭେଁ ହୋଇ କାନ୍ଦୁଥାନ୍ତି । ରେଡ଼ିଓରୁ ବାରମ୍ବାର ଗାନ୍ଧୀ ମୃତ୍ୟୁ ଖବର ପ୍ରଚାରିତ ହେବାରେ ଲାଗିଥାଏ । ଆମର ପ୍ରିୟତମ ଅଧ୍ୟାପକ ଡ଼ଃ. ସତ୍ୟବାଦୀ ମିଶ୍ର (ଯିଏ କି ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ଭକ୍ତ ଥିଲେ ଏବଂ ଜଣେ ସମାଜବାଦୀ) ସେତେବେଳକୁ ଗାନ୍ଧିଜୀଙ୍କ ଗୁଣାବଳୀ ସବୁ ପିଲାମାନଙ୍କୁ କହିଚାଲିଥାନ୍ତି । କହିବା ସମୟରେ ସେ ନିଜେ କାନ୍ଦୁଥାଆନ୍ତି ଏବଂ ତାଙ୍କ ସହିତ ପିଲାମାନେ ମଧ କାନ୍ଦୁଥାଆନ୍ତି । ସମଗ୍ର ଛାତ୍ରାବାସଟିରେ ମୁଁ ଏଭଳି ସ୍ଥିତି ଦେଖି ହତବାକ୍ ହୋଇଥିଲି । ଭାବିଲି ଗାନ୍ଧୀ କେଉଁଠି, ପିଲାମାନେ କେଉଁଠି, ତଥାପି ସେମାନଙ୍କ ମଧରେ ଏତେ ବ୍ୟାକୁଳତା ! ଏତେ ଅନ୍ତରଙ୍ଗତା ! କାହିଁକି ? କାହିଁକି ? ନିଜର ଜଣେ ପରିବାରର ଲୋକଟିଏ ଚାଲିଗଲାପରି ବୋଧ ହେଉଥିଲା ସେଦିନ ଆମ ସମସ୍ତଙ୍କ ପାଇଁ , ସମଗ୍ର ଛାତ୍ରାବାସରେ । ସେଦିନର ସେହି ଶୋକାକୁଳ ମୁହୂର୍ତ୍ତ ଏବଂ ଭାବ ବିହ୍ୱଳ ପରିବେଶକୁ ଆଜି ସୁଦ୍ଧା ମୁଁ ଅନ୍ତରଭିତରେ ସାଇତି ରଖିଛି ।

ମୋ ପରୀକ୍ଷା ଫର୍ମ ପୂରଣବେଳେ ଏକ କୌତୂହଳପ୍ରଦ ଘଟଣା ଘଟିଲା । ଦେଖିଲି ଫର୍ମରେ ଜାତୀୟତା (nationality) ଓ ଜାତି (caste) ଉଲ୍ଲେଖ କରିବାକୁ ନିର୍ଦ୍ଦେଶ ଅଛି । ମୁଁ 'ଜାତୀୟତା' ସ୍ଥାନରେ 'ଭାରତୀୟ' ବୋଲି ଲେଖିଲି । କିନ୍ତୁ 'ଜାତି' ସ୍ଥାନରେ ଛକି (X) ପକାଇ ଦେଲି । ସେ ଫର୍ମ ଚାଲିଗଲା ଅଧକ୍ଷଙ୍କ ପାଖକୁ । ଅଧକ୍ଷ ଥାଆନ୍ତି ମହେଶ ପ୍ରଧାନ । ପରବର୍ତ୍ତୀ ଜୀବନରେ ସେ OUATର କୁଳପତି ହୋଇଥିଲେ । ମତେ ଅଧକ୍ଷ ପିଅନ ଦ୍ୱାରା ଡକାଇ ପଠାଇଲେ । ପଚାରିଲେ, ''କିହୋ ରବି, ତମେ କ'ଣ 'ଜାତି' ସ୍ଥାନରେ ଛକି ପକାଇ ଦେଇଛ । '' ମୁଁ କହିଲି, "ସାର୍, ମୁଁ ଜଣେ ସମାଜବାଦୀ । ଆମେ

ଶ୍ରେଣୀହୀନ, ଜାତି ବିହୀନ ସମାଜରେ ବିଶ୍ୱାସ କରୁ । ମୋ ଜେଜେଙ୍କର ବା ବାପାଙ୍କର ଜାତି ଥାଇପାରେ । ମୋର କିନ୍ତୁ ଜାତି ନାହିଁ ।" ସେ କହିଲେ, "ତୁମେ ତା'ହେଲେ ପରୀକ୍ଷା ଦେଇ ପାରିବ ନାହିଁ ।" ମୋର ମନେ ଅଛି, ମୁଁ ତାଙ୍କୁ ନମସ୍କାର କରି ତାଙ୍କ ଅଫିସରୁ ବାହାରି ଆସିଲି । ମୁଁ ଆସିଲା ପରେ ସେ ପିଅନକୁ ପଠାଇ ପୁଣି ଡକାଇଲେ । ମୁଁ ଯିବାରୁ ପଚାରିଲେ, "ରବି, ତମେ ରାଗିଗଲ କି ?" ମୁଁ କହିଲି, "ନା, ସାର୍ ମୁଁ ରାଗିବି କାହିଁକି ? ଆପଣ କହିଲେ, ମୁଁ ପରୀକ୍ଷା ଦେଇ ପାରିବି ନାହିଁ । ମୁଁ ତ ପ୍ରତିବାଦ କରିନାହିଁ । ମୁଁ ନୀରବରେ ଚାଲିଯାଇଛି । କିନ୍ତୁ ପରୀକ୍ଷା ଦେବା ପାଇଁ ମୁଁ ଜାତି ପ୍ରଥାରେ ବିଶ୍ୱାସ କରି ପାରିବି ନାହିଁ । ସମାଜବାଦ ଛାଡ଼ି ପାରିବି ନାହିଁ ।" ସେ ମୋ କଥା ମାନିନେଲେ, କହିଲେ, "ହଉ, ହଉ ଯାଅ । ତମ ଫର୍ମ ଗ୍ରହଣ କରାଗଲା । ପରୀକ୍ଷା ଦେବ ।"

ଓଡ଼ିଆ ବଜାରରେ ସେତେବେଳେ ସମାଜବାଦୀ ଦଳର କାର୍ଯ୍ୟାଳୟ ଥିଲା । ରେଭେନ୍ସା କଲେଜରୁ ପ୍ରାୟ ଛ' କିଲୋମିଟର ବାଟ । ତରୁଣ ସମାଜବାଦୀ ସଂଘର ଆମେ ସଭ୍ୟମାନେ ପ୍ରତି ରବିବାର ରେଭେନ୍ସାରୁ ଚାଲି ଚାଲି ଓଡ଼ିଆ ବଜାର ଆମ ଅଫିସକୁ ଯାଉ । ସେଠି ରବିବାର ପାଠଚକ୍ରରେ ଯୋଗ ଦେଇ ସାରି ପୁଣି ରେଭେନ୍ସା କଲେଜ ଫେରୁ । ୫୦/୬୦ ଛାତ୍ର ଛାତ୍ରୀଙ୍କୁ ମୁଁ ଏମିତି ଚଲାଇ ଚଲାଇ ନିଏ । ଏହି ଦଳରେ କେତେକ ଝିଅ ମଧ ଯାଉଥିଲେ । ମୁଁ ସେତେବେଳେ ୩ୟ ବର୍ଷ ଛାତ୍ର ଏବଂ ମୋ ସ୍ତ୍ରୀ ସରସ୍ୱତୀ ପ୍ରଥମ ବର୍ଷର ଛାତ୍ରୀ । ସେ ମଧ ଯାଉଥିଲେ । ଶାନ୍ତି ନାନୀ (ଅଧାପିକା ଶାନ୍ତିଲତା ମିଶ୍ର) ମଧ ଯାଉଥିଲେ । ଥରେ ଶାନ୍ତିନାନୀ କହିଲେ, "ଏତେ ଗୁଡ଼ା ବାଟ ଯାଇ ମୋ ଗୋଡ଼ ଫୋଟକା ହୋଇଗଲା ।" ମୁଁ କହିଲି, "ଗୋଡ଼ ଫୋଟକା ନହେଲେ ସମାଜବାଦୀ କେମିତି ହେବ ?"

ପାଠଚକ୍ର ପାଇଁ ଆମର ଆଗରୁ ଗୋଟିଏ ବିଷୟ ସ୍ଥିର କରାଯାଇ ଥାଏ ଓ କିଏ ଆଲୋଚନା ଆରମ୍ଭ କରିବେ ମଧ ସ୍ଥିର ହୋଇସାରିଥାଏ । ମୋର ମନେ ଅଛି, ଇଟାଲୀୟ ଲେଖକ ଇଗ୍ନୋଜିଓ ସିଲୋନି ଏକଛତ୍ରବାଦ ସଂପର୍କରେ ଗୋଟିଏ ବହି ଲେଖିଥିଲେ । ସେଇଟି ଏ ପାଠଚକ୍ରରେ ଆଲୋଚିତ ହୋଇଥିଲା । ପିଲାଙ୍କୁ ଗୋଟିଏ ଗୋଟିଏ ବହି ପଢ଼ିବାକୁ ଦିଆଯାଏ । ସେମାନେ ପଢ଼ି ଆସି ଆଲୋଚନା କରନ୍ତି । ଏହି ଭଳି ମାର୍କ୍ସବାଦ, ସମାଜବାଦ, ଗାନ୍ଧିବାଦ ଇତ୍ୟାଦି ସଂପର୍କରେ ଆମେ ଗୁଡ଼ାଏ ବହି ପଢ଼ିବାର ସୁଯୋଗ ପାଇଲୁ ଓ ନିଜ ନିଜ ଭିତରେ ଆଲୋଚନା କଲୁ । ଓଡ଼ିଶା ପରିପ୍ରେକ୍ଷୀରେ ସେ ସବୁର ପ୍ରାସଙ୍ଗିକତା, ଆମ ନିଜ ସମସ୍ୟା ସମାଧାନ ଦିଗରେ ସେ ସବୁ ତତ୍ତ୍ୱର ଉପଯୋଗୀତା – ଏସବୁ ମଧ ଆଲୋଚନା ହୁଏ ।

ସେ ଦିନଗୁଡ଼ିକ ସହିତ ମୁଁ ଆଜିର ଅବସ୍ଥାକୁ ତୁଳନା କରି ଦେଖିଲେ ହତାଶ ଲାଗୁଛି । ଆମେ ଛ' କିଲୋମିଟର ଚାଲି ଚାଲି ଯାଉଥିଲୁ ଏହି ଭଳି ଆଲୋଚନା କରିବାକୁ । ଏବେ ଏଭଳି ଗମ୍ଭୀର ଆଲୋଚନା ଯଦି କଲେଜ ହଲ୍‌ରେ ମଧ ହେଉଛି ତେବେ ବି ପିଲାଏ ଆସୁ ନାହାନ୍ତି । ଏହି ସବୁ ପାଠଚକ୍ରରେ ଆମେ ଖାଲି ଶୁଖିଲା ତତ୍ତ୍ୱ ଆଲୋଚନା କରୁ ନଥିଲୁ । ସେ ଗୁଡ଼ିକୁ ଦୈନନ୍ଦିନ ଜୀବନରେ ଆଚରଣ କରିବାକୁ ଚେଷ୍ଟା କରୁ ଥିଲୁ । ଉଦାହରଣ ସ୍ୱରୂପ, ସେହି ଭଳି ଆଲୋଚନା ଭିତରୁ ବାହାରିଲା ଯେ ଆମେ ବିବାହ ବେଳେ ଯୌତୁକ

ନେବା ନାହିଁ । ତାପରେ ଏହି ରୀତିରେ ମୋର ବନ୍ଧୁ କୁଳମଣି ମହାପାତ୍ର ଓ ଶାରଦାପ୍ରସାଦ ନାୟକଙ୍କ ବିବାହ ଅନୁଷ୍ଠିତ ହେଲା । ଆମେ ଯୌତୁକ ବିରୋଧୀ ଆନ୍ଦୋଳନ ପାଇଁ ଏକ ତିନିସୂତ୍ରୀ ନିୟମ ବାହାର କଲୁ । (୧) ଆମେ ଯୌତୁକ ନେବୁ ନାହିଁ । ଏପରିକି କୌଣସି ବାହାଘରରେ ଯୌତୁକ ଦିଆନିଆ ହେଉଥିଲେ ସେଥିରେ ଯୋଗଦାନ କରିବୁ ନାହିଁ । (୨) ଯଦି କୌଣସି ପିତା ମାତାଙ୍କ ଅବସ୍ଥା ସ୍ୱଚ୍ଛଳ ଓ ସେ ସ୍ୱତଃ ଖୁସିରେ ତାଙ୍କ ଝିଅକୁ ବାହାଘର ବେଳେ କିଛି ଦେବାକୁ ଚାହୁଁ ଥାଆନ୍ତି ତେବେ ଦେଇପାରନ୍ତି (୩) ତେବେ ସେ ଝିଅକୁ ଅର୍ଥ ଆକାରରେ ଦେବେ ଓ ଝିଅ ନାଁରେ ଡାକଘରେ ଗୋଟିଏ ପାଶ୍‌ବୁକ୍ ଖୋଲି ଅଥବା ବ୍ୟାଙ୍କରେ ଏକାଉଣ୍ଟ ଖୋଲି ସେଇଠି ତାପାଇଁ ରଖିବେ । ଫଳରେ ଶାଶୁଘରେ ଅବହେଳିତା ହେଲେ ଝିଅଟି ସେଇ ଅର୍ଥକୁ ପୁଞ୍ଜିକରି ଆତ୍ମ ନିର୍ଭରଶୀଳ ହୋଇପାରେ ।

ସମାଜବାଦୀ ଯୁବ ଆନ୍ଦୋଳନ ସହିତ ଜଡ଼ିତ ଥିବା ମୋର ବନ୍ଧୁ ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ ସହିତ ଦିନେ କଟକ କଲେଜଛକରେ ବୁଲୁବୁଲୁ ଆମେ ସ୍ଥିର କଲୁ ଯେ ସାଇକେଲରେ ଆମେ କୋଣାର୍କ ଯିବୁ । ସେତେବେଳେ ଦେବୀ ଛାତ୍ର ଥାଆନ୍ତି ଓ ମୋର ଛାତ୍ର ଜୀବନ ସରିଯାଇଥାଏ । ଦେବୀବାବୁଙ୍କର ଜଣେ ସହପାଠୀ ରାଜେନ୍ଦ୍ର (ଖ୍ୟାତନାମା ଇତିହାସ ଅଧ୍ୟାପକ ଡ. ରାଜେନ୍ଦ୍ର ପ୍ରସାଦ ଦାସ), ନରେନ୍ଦ୍ର ଜେନା ଓ ଗଜେନ୍ଦ୍ର ଦାସ - ଏହିଭଳି ଆମେ ଚାରିଜଣ କଟକରୁ କୋଣାର୍କ ଅଭିମୁଖେ ସାଇକେଲ ଯାତ୍ରା ଆରମ୍ଭ କଲୁ । ପ୍ରଥମେ ନହରକଣ୍ଟାରେ ଥିବା ମୋ ବଡ଼ ଭଉଣୀଘରେ ପହଞ୍ଚିଲୁ । ସେଠୁ ଯାଇପହଞ୍ଚିଲୁ ଆମ ଗାଁ ଭର୍ଥରା ଗଡରେ । ଆମ ଘରେ ଆମେ ଯାଉଛୁ ବୋଲି ସେମାନେ ଖୁସି ହୋଇ ପୋଖରୀରୁ ମାଛ ମାରି ଦିବ୍ୟ ଭୋଜନ ପ୍ରସ୍ତୁତ କରିଥାଆନ୍ତି । ସେଠୁ ଖାଇଦେଇ ସିଧା କୋଣାର୍କ ଚାଲିଲୁ । ଶୀତଦିନ । ରାତିରେ ଖୋଲା ଆକାଶ ତଳେ କୋଣାର୍କ ଘୋଡ଼ା ପାଖରେ ଶୋଇବାର ସେ ସ୍ମୃତି ଆମ ସମସ୍ତଙ୍କ ପାଇଁ ଅଭୁଲା ହୋଇ ରହିଯାଇଛି ।

ଗାନ୍ଧିଜୀଙ୍କ ହତ୍ୟା ସମ୍ପର୍କିତ ଏହି ସମୟର ଆଉ ଗୋଟିଏ ଘଟଣା ମନେପଡୁଛି । ନାଥୁରାମ ଗଡ୍‌ସେ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ସଭ୍ୟ ଥିଲା । ଏଣୁ ଗାନ୍ଧୀ ହତ୍ୟା ପରେ ଏ ସଂଘ ବଦ୍‌ନାମ ହୋଇ ଯାଇଥିଲା । ଭାରତର ତତ୍‌କାଳୀନ ଗୃହମନ୍ତ୍ରୀ ସର୍ଦ୍ଦାର ପଟେଲ ଆର୍, ଏସ୍, ଏସ୍ ଉପରେ ନିଷେଧାଜ୍ଞା ଜାରୀ କରିଥିଲେ । ଶୁଣିଲୁ ରାମଚନ୍ଦ୍ର ଭବନରେ ଆର୍, ଏସ୍, ଏସ୍ ଗୋଟାଏ ସଭା କରିବ ଓ ଏଥିରେ ପଣ୍ଡିତ ନୀଳକଣ୍ଠ ଦାସ ଯୋଗ ଦେବେ । ସେ ଦିନ ରବିବାର । ଯୋଗକୁ ଆମର ସାପ୍ତାହିକ ପାଠଚକ୍ର ରାସ୍ତା ଆରପଟ ଟାଉନ୍ ହଲ୍‌ରେ ହେବାର ଥାଏ । ଆମେ ବିଚାର କଲୁ ଯେ ଆମର ଏତେ ପାଖରେ ଗାନ୍ଧୀ ହତ୍ୟାକାରୀମାନେ ସଭାଟାଏ କରି ଚାଲିଯିବେ ଅଥଚ ଆମେ ନୀରବ ରହିବୁ । ଆମେ ସ୍ଥିର କଲୁ କି ଆମେ ସେ ସଭା କରାଇ ଦେବୁ ନାହିଁ । ଅଥଚ ଏହି ବିରୋଧ ସଂପୂର୍ଣ୍ଣ ଅହିଂସକ ଉପାୟରେ କରାଯିବ । ଆମ ପାଠଚକ୍ର ୨ଟା ବେଳେ ଚାଲିଥାଏ । ସେମାନଙ୍କ ମିଟିଂ ୫ଟାବେଳେ । ରାମଚନ୍ଦ୍ର ଭବନ ସାମନା ଓ ଦୁଇପଟେ ସମୁଦାୟ ବୋଧେ ଛଅଟା କବାଟ । ଆମେ ସ୍ଥିର କଲୁ ଯେ ସେମାନଙ୍କ ସଭା ଅବ୍ୟବହିତ ପୂର୍ବରୁ ଆମର ସ୍ୱେଚ୍ଛାସେବକମାନେ ସେଇ ସବୁ କବାଟ ସାମ୍ନାରେ ଶୋଇ ରହିବେ ଓ ସ୍ଲୋଗାନ୍ ଦେବେ । ପଣ୍ଡିତ ନୀଳକଣ୍ଠ ଦାସ ସଦଳବଳେ ଯଥା

ସମୟରେ ଆସି ପହଞ୍ଚିଲେ । ସ୍ବେଚ୍ଛାସେବକମାନଙ୍କର ସ୍ଲୋଗାନ୍ ଚାଲିଲା, 'ଗାନ୍ଧିଜୀ ଜିନ୍ଦାବାଦ. 'ଗାନ୍ଧି ହତ୍ୟାକାରୀ ଆର୍. ଏସ୍. ଏସ୍ ମୁର୍ଦ୍ଦାବାଦ' । ନୀଳକଣ୍ଠ ବାବୁ ଧର୍ମ ସଂକଟରେ ପଡ଼ିଗଲେ । ଯଦି ବି ସେ ସଭାସ୍ଥଳକୁ ଯିବା ପାଇଁ ଅଡ଼ି ବସନ୍ତି ତେବେ ଆମ ସ୍ବେଚ୍ଛାସେବକମାନଙ୍କ ଉପରେ ଚଢ଼ିକରି ଭିତରକୁ ଯିବେ । ସେତେବେଳେ ଗାନ୍ଧି ହତ୍ୟାକାରୀ ଦଳ ଆର୍. ଏସ୍. ଏସ୍ ଏତେ ବଦ୍‌ନାମ ହୋଇ ଯାଇଥିଲା ଯେ ଆମେ କରୁଥିବା ବିରୋଧର ସେମାନେ କିଛି ଜବାବ୍ ଦେଇ ପାରିଲେ ନାହିଁ । ନୀଳକଣ୍ଠ ବାବୁ ସେ ସଭାରେ ଯୋଗ ନଦେଇ ଚୁପ୍ କରି ଫେରି ଚାଲିଗଲେ । ନୀଳକଣ୍ଠ ବାବୁ ଏ ସଂପର୍କରେ ସୁରେନ୍ଦ୍ର ବାବୁ (ଦ୍ବିବେଦୀ)ଙ୍କ ନିକଟରେ ଫେରାଦ୍ ହେଲେ । ସୁରେନ୍ଦ୍ର ବାବୁ ମୋତେ ଡାକି ଏ ବିଷୟରେ ପଚାରିଲେ । ମୁଁ କହିଲି, "ଆପଣ ସେଥିରେ ମୁଣ୍ଡ ଖେଳାନ୍ତୁ ନାହିଁ । ତରୁଣ ସମାଜବାଦୀ ସଂଘରେ ସଭ୍ୟସଭ୍ୟା ସାମୂହିକ ଭାବେ ଯାହା ନିଷ୍ପତ୍ତି ନେଲେ ତାକୁ କାର୍ଯ୍ୟକାରୀ କରାଗଲା ।" କଲିକତାର Statesman ଓ Young Socialist League ଉକ୍ତ କାର୍ଯ୍ୟକୁ ପ୍ରଶଂସା କରି ସଂପାଦକୀୟ ଲେଖିଥିଲେ ।

ଏଇଠି ଉଲ୍ଲେଖ କରେ ଯେ ନୀଳକଣ୍ଠ ବାବୁ ଜଣେ ଉଚ୍ଚକୋଟୀର ଶିକ୍ଷକ, ସାହିତ୍ୟିକ ଏବଂ ବୁଦ୍ଧିଜୀବୀ ଥିଲେ । ସେ କେନ୍ଦ୍ରୀୟ ଆସେମ୍ବ୍ଲିର ମଧ ସଭ୍ୟ ଥିଲେ । ସେଠାରେ ସେ ଅନେକ ଉପାଦେୟ ଭାଷଣ ଦେଇଥିଲେ । ମୁଁ ୧୯୯୦ରେ ଯେତେବେଳେ ଲୋକସଭାର ବାଚସ୍ପତି ହେଲି ସେତେବେଳେ ବିଶିଷ୍ଟ ସାଂସଦମାନଙ୍କର ଭାଷଣ ଛପାଇବା ଆରମ୍ଭ କଲି । ଓଡ଼ିଶାରୁ କେବଳ ନୀଳକଣ୍ଠ ବାବୁଙ୍କ ଭାଷଣ ଛପା ହେବାପାଇଁ ଯୋଗ୍ୟ ବିବେଚିତ ହୋଇଥିଲା । ଏ କଥା କହିବାର କାରଣ ନୀଳକଣ୍ଠ ବାବୁଙ୍କ ବ୍ୟକ୍ତିତ୍ବ ପ୍ରତି ମୋର ଅଶ୍ରଦ୍ଧା ନଥିଲା କିମ୍ବା ତାଙ୍କ ପ୍ରତି ବ୍ୟକ୍ତିଗତଭାବେ ମୋର କୌଣସି ଅସୂୟାଭାବ ନଥିଲା । ଯଦିଓ ରାଜନୈତିକ ମତବାଦ ଦୃଷ୍ଟିରୁ ଆମ୍ଭେମାନେ ତାଙ୍କର ବିରୋଧ କରୁଥିଲୁ । ପରେ ସେ ପୁଣି କଂଗ୍ରେସରେ ଯୋଗଦେଇ ଓଡ଼ିଶା ବିଧାନ ସଭାର ବାଚସ୍ପତି ହୋଇଥିଲେ ।

୧୯୪୮ରେ ମୁଁ କଂଗ୍ରେସ ଓ କମ୍ୟୁନିଷ୍ଟ ସମର୍ଥିତ ପ୍ରାର୍ଥୀଙ୍କୁ ହରାଇ ରେଭେନ୍ସା କଲେଜର ସଭାପତି ରୂପେ ନିର୍ବାଚିତ ହେଲି । ସେତେବେଳେ ଓଡ଼ିଶା ରାଜନୀତି ପରିପ୍ରେକ୍ଷୀରେ ରେଭେନ୍ସା କଲେଜ ନିର୍ବାଚନକୁ ରାଜନୈତିକ ମହଲରେ ଖୁବ୍ ଗୁରୁତ୍ବ ଆରୋପ କରାଯାଉଥିଲା । କାରଣ, ରେଭେନ୍ସା କଲେଜ ଓଡିଶାର ବୃହତ୍ତମ କଲେଜ ଓ ଓଡ଼ିଶା ରାଜନୈତିକ ମାନଚିତ୍ରର ଗୋଟିଏ ଛୋଟ ସ୍କେଚ ମିଳୁଥିଲା ରେଭେନ୍ସା କଲେଜର ଛାତ୍ରସଂସଦ ନିର୍ବାଚନରୁ । ମୋର ନିର୍ବାଚନରେ ସମୁଦାୟ ଖର୍ଚ୍ଚ ହୋଇଥିଲା ଟ୨୮.୦୦ ଓ ଏହା ମୋର ଛାତ୍ର ବନ୍ଧୁମାନେ ନିଜ ଭିତରେ ଆଦାୟ କରିଥିଲେ । ମୁଁ ତରୁଣ ସମାଜବାଦୀ ସଂଘରୁ ପ୍ରାର୍ଥୀ ହୋଇଥିଲି ଓ କଂଗ୍ରେସ ତଥା କମ୍ୟୁନିଷ୍ଟ ପ୍ରାର୍ଥୀଙ୍କୁ ହରାଇ ଜିତିଥିଲି । ଏହାପରେ ମଧୁସୂଦନ ଆଇନ ମହାବିଦ୍ୟାଳୟ ରେଭେନ୍ସା କଲେଜ ପରିସର ଭିତରେ ଆରମ୍ଭ ହେଲା । ତା'ଛାତ୍ର ଇଉନିୟନର ମଧ ମୁଁ ଥିଲି ପ୍ରଥମ ସଭାପତି । ମୁଁ ଉକ୍ତ ଦୁଇ ଇଉନିୟନରୁ ଦୁଇଥର ଲାଗ ଲାଗ ସଭାପତି ରୂପେ ନିର୍ବାଚିତ ହୋଇଥିଲି । ଥରେ ୧୯୪୮-୪୯ରେ ଓ ଆଉଥରେ ୧୯୪୯-୫୦ରେ ।

## ମଧ୍ୟାହ୍ନ

ସେତେବେଳେ କଟକ ଏବେ ଜଗତ୍‌ସିଂହପୁର ଜିଲ୍ଲା ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀର ବିଧାନସଭା ପାଇଁ ଗୋଟାଏ ଉପନିର୍ବାଚନ ହେଲା । ସେତେବେଳେ ସାବାଳକ ଭୋଟ ବ୍ୟବସ୍ଥା ନଥିଲା । ସାବାଳକ ଭୋଟ ବ୍ୟବସ୍ଥା ୧୯୫୦ରୁ ପ୍ରଚଳନ ହେଲା । ଗ୍ରାମାଞ୍ଚଳରେ ଯେଉଁମାନେ ଚୌକିଦାର ଟିକସ ଦେଉଥିଲେ କେବଳ ସେହିମାନଙ୍କର ଭୋଟ ଦେବାର ଅଧିକାର ଥିଲା । ସେତେବେଳେ ସୋସାଲିଷ୍ଟ ଦଳ ନୂଆ କରି ଗଢ଼ା ହୋଇଥାଏ । ଆମେ ଛାତ୍ରମାନେ ଜୟପ୍ରକାଶ ଓ ଲୋହିଆଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥାଉ । ମନରେ ଅପୂର୍ବ ଉତ୍ସାହ, ଅଦମ୍ୟ ଉନ୍ମାଦନା । ଆମେ ଯେଉଁମାନେ ତରୁଣ ସମାଜବାଦୀ ସଂଘର (Young Socialist League) ସକ୍ରିୟ ସଭ୍ୟ ଥିଲୁ ଆମକୁ କୁହାଗଲା ସମାଜବାଦୀ କର୍ମୀଙ୍କ ସହିତ ମିଶି ଉପରୋକ୍ତ ଉପନିର୍ବାଚନରେ ପ୍ରଚାର କରିବାକୁ ଯିବୁ । ଗାଁରେ ଲୋକଙ୍କ ଭିତରେ, ଲୋକଙ୍କ ସାଥିରେ ଚଳିବା, ତାଙ୍କ ଭାଷାରେ କଥା କହିବା – ଇଏ ଆମ ସହରୀ ଛାତ୍ରଙ୍କ ପାଇଁ ଗୋଟାଏ ନୂଆ ଅଭିଜ୍ଞତା ଥିଲା ।

ଏବେ ଥିବା ଦୁଇଟି ନିର୍ବାଚନ ମଣ୍ଡଳୀ - ତିର୍ତ୍ତୋଲ ଓ ଏରସମା - ସେତେବେଳେ ଗୋଟିଏ ନିର୍ବାଚନ ମଣ୍ଡଳୀ ଥିଲା । କେବଳ ତିର୍ତ୍ତୋଲ ରେ କଂଗ୍ରେସ ତରଫରୁ ପ୍ରାର୍ଥୀ ହୋଇଥାଆନ୍ତି କୁଜଙ୍ଗର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ନାରାୟଣ ବୀରବର ସାମନ୍ତ ଏବଂ ସୋସାଲିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀ ହୋଇଥାଆନ୍ତି ନିଶାମଣି ଖୁଣ୍ଟିଆ । ସେତେବେଳେ ହରେକୃଷ୍ଣ ମହତାବ ଥାଆନ୍ତି ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ନବକୃଷ୍ଣ ଚୌଧୁରୀ ଉପପ୍ରଧାନମନ୍ତ୍ରୀ । ସୋସାଲିଷ୍ଟ ପାର୍ଟି ନୂଆ ଗଢ଼ା ହୋଇଥାଏ । ଏ ନିର୍ବାଚନର ଫଳାଫଳ ଜାଣିବା ପାଇଁ ଲୋକେ ବହୁତ ଉତ୍ସୁକ ଥାଆନ୍ତି । ଆମକୁ ଦଳ ତରଫରୁ ନିର୍ଦ୍ଦେଶ ଥାଏ ଯେ, ଦଳ ତରଫରୁ ଆମକୁ କିଛି ଅର୍ଥ ବା ଖାଦ୍ୟ ଦିଆଯାଇପାରିବ ନାହିଁ । ଆମକୁ ଗାଁ ଲୋକଙ୍କ ଠାରୁ ମାଗିଯାଚି ଖାଇବାକୁ ହେବ ଏବଂ ପାର୍ଟି ସାହିତ୍ୟ ବିକ୍ରୀ କରି ସେହି ପଇସାରୁ ନିଜ ଖର୍ଚ୍ଚ ତୁଲାଇବାକୁ ହେବ । ଦିନସାରା ଆମେ ପ୍ରଚାର କାର୍ଯ୍ୟରେ ବାହାରି ଯାଉ ଏବଂ ରାତିରେ ଆସି କୁଜଙ୍ଗରେ ରୋଷେଇକରି ଖାଉ । ଆମ ନିର୍ବାଚନ ପ୍ରଚାରର ମୁଖ୍ୟ କାର୍ଯ୍ୟାଳୟ ଥାଏ କୁଜଙ୍ଗରେ ।

ଆମ ସାଥିରେ ଥାଆନ୍ତି କଣ୍ଡୁରୀ ମଳିକ । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ । ପରେ ବହୁବାର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । କୁଜଙ୍ଗ ଅଞ୍ଚଳରେ ବହୁତ ଜୁଆରିଆ ନଈ । ଆମେ ଦିନେ ପ୍ରଚାର କାର୍ଯ୍ୟ ସାରି ଫେରିଲା ବେଳକୁ ନଈରେ ଜୁଆର ଆସିଯାଇଛି । ଡଙ୍ଗା ରହିଯାଇଥାଏ ଆରପଟେ । ଆମେ ପ୍ରଚଣ୍ଡ କ୍ଳାନ୍ତ । ଏପରିକି ଆମର ଅନେକ ସାଙ୍ଗ ସେଇଠି ବସୁ ବସୁ ଶୋଇଗଲେ । ରାତି ପ୍ରାୟ ୧୨ଟା । ଏହା ଭିତରେ ମୁଁ ଓ କଣ୍ଡୁରୀ ବାବୁ କଥାବାର୍ତ୍ତା ହେଲୁ କିଏ ଆରପଟକୁ ଯାଇ ଡଙ୍ଗାଟା ଏପଟକୁ ଆଣିବ । ଜୁଆର ଯୋଗୁଁ ସେତେବେଳେ ନଈବଢ଼ି ବେଙ୍ଗ ପରି ଫୁଲିକରି ରହିଛି । ସେଥିକୁ ସାଂକୁଚ, କୁମ୍ଭୀର ଇତ୍ୟାଦିଙ୍କ ଭୟ । ଆମେ କଥା ହେଉ ହେଉ କଣ୍ଡୁରୀବାବୁ ଚଟାପଟ୍ ଗାମୁଛା ବଦଳି

ପକାଇସେହି ନଈ ଭିତରକୁ ଡେଇଁ ପଡ଼ିଲେ ଆଉ ପହଁରି ପହଁରି ଆର ପଟରେ ପହଞ୍ଚି ତଙ୍ଗାଟା ଏ କୂଳକୁ ନେଇ ଆସିଲେ । କଣ୍ଡୁରୀ ବାବୁ ନିଜ ଅଞ୍ଚଳରେ ଏତେ ଲୋକପ୍ରିୟ ଥିଲେ ଯେ ୩/୪ ଥର ବିଧାନସଭାକୁ ନିର୍ବାଚିତ ହୋଇ ଯାଇଥିଲେ । କୁଜଙ୍ଗରେ ପହଞ୍ଚି ରୋଷେଇ କଲୁ । ଖାଇକରି ଶୋଇଲୁ । ପୁଣି ବଡ଼ି ଭୋରରୁ ଉଠି ଗ୍ରାମାଭିମୁଖେ ଯାତ୍ରା । ଭବିଷ୍ୟତ କର୍ମୀ ଜୀବନ ପାଇଁ ସିଏ ଆମର ଗୋଟାଏ ଖୁବ୍ ତାଲିମ ହେଲା । ଏବେ ଭାବି ଦେଖୁଛି ସେତେବେଳେ ଏ କାମରେ କେତେ ଆନନ୍ଦ ମିଳୁଥିଲା । ଆଜିକାଲି ପୁଞ୍ଜିପତିଙ୍କ ଠାରୁ ପଇସା ଝଡ଼ାଇ ବେଶ୍ ଗମାତ କରି ଯେଉଁସବୁ ନିର୍ବାଚନ ପ୍ରଚାର ହେଉଛି ସେଥିରେ କୌଣସି ସାତ୍ତ୍ୱିକତା ନାହିଁ । ଲୋକଙ୍କ ଉପରେ ମଧ ତା'ର ପ୍ରଚଣ୍ଡ କୁପ୍ରଭାବ ପଡୁଛି । କଂଗ୍ରେସ ନୂଆନୂଆ ଉପନିର୍ବାଚନରେ ଉତ୍ରୁଥାଏ । ଏଣୁ ଯେନତେନ ପ୍ରକାରେଣ ଭୋଟ ଜିତିବା ପାଇଁ ଚେଷ୍ଟା କରୁଥାଏ । ପଇସା ବାଣ୍ଟୁଥାଏ । ସେଇଥିରୁ ନିର୍ବାଚନ ଦୁର୍ନୀତି ଆରମ୍ଭ ହେଲା । ତେବେ ଆମେ ତୃଣମୂଳ ସ୍ତରରେ ଯେଉଁକାମ କରିଥିଲୁ ତାର ସୁଫଳ ପରେ ଅବଶ୍ୟ ମିଳିଲା । ୧୯୫୨ ସାଲ ନିର୍ବାଚନରେ ସାବାଳକ ଭୋଟପ୍ରଥା ପ୍ରଚଳନ ହୋଇଗଲାଣି । ସେଥର ସେହି ନିର୍ବାଚନ ମଣ୍ଡଳୀରୁ ନିଶାମଣି ଖୁଣ୍ଟିଆ ନିର୍ବାଚିତ ହୋଇ ଆସିଲେ । ଅବଶ୍ୟ ଏ ଘଟଣା ର ବହୁ ବର୍ଷ ପରେ ସେ, ସୁରେନ୍ଦ୍ର ବାବୁ (ଦ୍ୱିବେଦୀ), ଶ୍ରୀ ବାଙ୍କବିହାରୀ ଦାସ ପୁଣି କଂଗ୍ରେସ କୁ ଫେରି ଯାଇଥିଲେ ।

ସାରା ଭାରତବର୍ଷରେ ଓଡ଼ିଶା ସମାଜବାଦୀ ଦଳର ସୁନାମଥିଲା । ଏହା ଏକ ସୁସଂଗଠିତ ଦଳଥିଲା । ଛାତ୍ର, ଚାଷୀ, ଶ୍ରମିକଙ୍କୁ ସଂଗଠିତ କରିବା, କଂଗ୍ରେସ ସରକାର ର ଅନ୍ୟାୟ ବିରୁଦ୍ଧରେ ଲଢ଼ିବା – ଏ କାର୍ଯ୍ୟରେ ଓଡ଼ିଶା ଦଳ ଭାରତରେ ଆଗୁଆ ଥିଲା । ୧୯୫୨ରେ ୧୦ଜଣ ପ୍ରାର୍ଥୀ, ସମାଜବାଦୀ ଦଳରୁ ଜିତିକରି ଆସିଲେ । ସେତେବେଳେ ଆମ ପାର୍ଟିର ସମ୍ବିଧାନରେ ଥିଲା ଯେ ଆମଦଳର ଏମ୍.ଏଲ୍.ଏ. ମାନେ ଯେଉଁ ଭତ୍ତା ପାଇବେ ସେସବୁତକ ଦଳର କୋଷାଧକ୍ଷଙ୍କ ନିକଟରେ ସମର୍ପଣ କରିବେ । ଏପରିକି ସେମାନେ କୋଷାଧକ୍ଷଙ୍କୁ ଗୋଟାଏ Power of attorney ଦେଇଥିଲେ । ଓଡ଼ିଶାର ଜଣେ ସୁପରିଚିତ ଶ୍ରମିକ ନେତା ବନ୍ଧୁ ରାଜକିଶୋର ସାମନ୍ତରାୟ ଦଳର କୋଷାଧକ୍ଷ ଥାଆନ୍ତି । ସେ ଦଳୀୟ ଏମ୍.ଏଲ୍.ଏ ଙ୍କର ସବୁ ଯାକ ଦରମା ନେଇଯାଆନ୍ତି । ତାଙ୍କଠାରୁ ଏମ୍.ଏଲ୍.ଏ. ମାନେ ତାଙ୍କର ଓ ତାଙ୍କ ପରିବାରର ଆବଶ୍ୟକତା ଅନୁଯାୟୀ କିଛି ଅର୍ଥ ପାଆନ୍ତି । ସେତେବେଳେ ଏ ନିୟମ ଅତି କଡ଼ାକଡ଼ି ଭାବରେ ପାଳିତ ହେଉଥିଲା । ଏବେ ଏସବୁ ଅକଳ୍ପନୀୟ ।

ଧୀରେ ଧୀରେ ସମାଜବାଦୀ ଆନ୍ଦୋଳନରେ ମୁଁ ଅଧିକରୁ ଅଧିକ ସକ୍ରିୟ ହେଲି । କିଛିକାଳ ପରେ ମୁଁ ଅଖିଳ ଭାରତୀୟ ସମାଜବାଦୀ ସଂଘର ଯୁଗ୍ମ ସଂପାଦକ ନିର୍ବାଚିତ ହେଲି । ସିଏ ଥାଏ ସମାଜବାଦୀ ଆନ୍ଦୋଳନର ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନ ଆରମ୍ଭ ହୋଇଥାଏ । ଅରୁଣା ଆସଫ ଅଲ୍ଲୀ ସମାଜବାଦୀ ପାର୍ଟିରୁ ଇସ୍ତଫା ଦେଇ କମ୍ୟୁନିଷ୍ଟ ଦଳରେ ଯୋଗ ଦେଇଥାଆନ୍ତି ଓ ନେହେରୁଙ୍କର ସ୍ତାବକ ସାଜି ଯାଇଥାଆନ୍ତି । ବିଶିଷ୍ଟ ସମାଜବାଦ ତତ୍ତ୍ୱବିତ୍ ଅଚ୍ୟୁତ ପଟ୍ଟବର୍ଦ୍ଧନ ରାଜନୀତିରୁ ସନ୍ୟାସ ଗ୍ରହଣ କରିଥାଆନ୍ତି । ଏହି ସମୟରେ ସେସମୟର ଆଉ ଜଣେ ସମାଜବାଦୀ ନେତା

ଅଶୋକ ମେହେଟା ତାଙ୍କର ଏକ ଲେଖାରେ ସମାଜବାଦୀମାନେ କଂଗ୍ରେସ ସହିତ ସହଯୋଗ କରିବାପାଇଁ ମତ ପ୍ରକାଶ କଲେ । ଏହାକୁ ନେଇ ସମାଜବାଦୀ ଶିବିରରେ ଘମାଘୋଟ ତର୍କବିତର୍କ ଚାଲିଲା । ସମାଜବାଦୀମାନେ ୧୯୪୮ରେ କଂଗ୍ରେସ ଛାଡ଼ିବା ପରଠାରୁ ଜୟପ୍ରକାଶଜୀଙ୍କ ନେତୃତ୍ୱକୁ ମାନି ନେଇଥିଲେ । ଡଃ. ଲୋହିଆଙ୍କର ମଧ ସେତେବେଳେ ଏହି ଶିବିରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହୁଥିଲା । ଆମର ଅଖିଳ ଭାରତୀୟ ସମ୍ମିଳନୀମାନଙ୍କରେ ଡଃ. ଲୋହିଆଙ୍କ ପ୍ରସ୍ତୁତ ବୈପ୍ଳବିକ କାର୍ଯ୍ୟକ୍ରମ ପ୍ରାୟତଃ ଗୃହୀତ ହେଉଥିଲା ଏବଂ ଜୟପ୍ରକାଶଜୀ ତାକୁ ସମର୍ଥନ କରୁଥିଲେ । ଏହି ପରିପ୍ରେକ୍ଷୀରେ ଅଶୋକ ମେହେଟା ଏକଘରକିଆ ହୋଇଗଲେ ଓ ଅଚିରେ କଂଗ୍ରେସରେ ଯୋଗଦାନ କଲେ । ମୋ ଜୀବନକୁ ଗଭୀରଭାବେ ପ୍ରଭାବିତ କରିଥିବା ଜଣେ ବ୍ୟକ୍ତିତ୍ୱ ହେଲେ ସ୍ୱର୍ଗତ ରବିଘୋଷ । ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ଯେଉଁ କେତେଜଣ ମୂଳଦୁଆ ପକାଇଥିଲେ ସେ ଥିଲେ ସେଥିରୁ ଅନ୍ୟତମ । ଓଡ଼ିଶାରେ କଂଗ୍ରେସ ସମାଜବାଦୀ ଦଳର ସେଥିଲେ ଅନ୍ୟତମ ପ୍ରତିଷ୍ଠାତା । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କ ସହିତ ସେ ଥିଲେ ପ୍ରଜାମଣ୍ଡଳ ଆନ୍ଦୋଳନର ଅନ୍ୟତମ ଅଗ୍ରଗଣ୍ୟ ନେତା । ସମାଜବାଦ ପ୍ରତି ଆକୃଷ୍ଟ ହୋଇ ଆମେ ଯେଉଁ କେତେକ ଯୁବକ ବାଟ ଖୋଜୁଥାଉ ଆମ ପାଇଁ ରବିଦା ଥିଲେ friend, philosopher, guide । ତାଙ୍କ ସହିତ ଆମର ପ୍ରତିଦିନ ଦେଖା ନହେଲେ, ଘଣ୍ଟାଏ ଦି'ଘଣ୍ଟା ଆଲୋଚନା ନ ହେଲେ ଆମକୁ ଭାତ ରୁଚୁ ନଥିଲା ।

ସେ ଥିଲେ ପ୍ରକୃତରେ ଜଣେ ରାଜନୈତିକ ସନ୍ୟାସୀ । ଆଜନ୍ମ ବିପ୍ଳବୀ । ସେ LMP ପାଶ୍ କରିଥିଲେ କିନ୍ତୁ ଚିକିତ୍ସା ବିଦ୍ୟାକୁ ପେଶା କରି ପାରିଲେ ନାହିଁ । ତାଙ୍କର ଜଣେ ଡାକ୍ତର ବନ୍ଧୁ ତାଙ୍କୁ ଯାଜପୁର ନେଇଗଲେ ସେଠି ଡାକ୍ତରୀ ପ୍ରାକ୍‌ଟିସ୍ କରିବା ପାଇଁ । କିନ୍ତୁ ପଇସା ନେଇ ରୋଗୀ ଚିକିତ୍ସା କରିବା ତାଙ୍କ କଳ୍ପନାର ବାହାରେ ଥିଲା । ଏଣୁ ସେଠୁ ଛାଟି ପିଟି ହୋଇ ପଳାଇ ଆସିଲେ । ସେ ଆମ ଯୁବକମାନଙ୍କୁ ସବୁବେଳେ କହୁଥିଲେ ଯେ ଯଦି ଆଦର୍ଶବାଦୀ ରାଜନୀତି କରିବ ତେବେ ଅନ୍ତତଃ ପଖାଳଭାତ ଓ ଖଟାର ଗ୍ୟାରେଣ୍ଟି ରହିଥିବା ଦରକାର । ସେ ନିଜେ ବିବାହ କରି ନଥିଲେ । କିନ୍ତୁ ଆମକୁ ଚେତେଇ ଦେଉଥିଲେ: ''ମୋତେ କେହି ଏ ଦିଗରେ ଅନୁକରଣ କରନା ।''

ସେ କେମିତି ଜାଣିନେଲେ ଯେ ମୁଁ ତାଙ୍କ ଭଳି ଅବିବାହିତ ରହି ସମାଜସେବା କରିବା ଚାହୁଁଛି । ମୋର କେତେକ ବନ୍ଧୁ, ବିଶେଷ କରି ବନ୍ଧୁ ନରେନ୍ଦ୍ର ଜେନା, ସେତେବେଳକୁ ମୋ ବିବାହ ଡ. ସ୍ୱାଇଁଙ୍କ ସହିତ କରାଇବା ପାଇଁ ବହୁତ ଆଗ୍ରହ ପ୍ରକାଶ କରୁଥାଆନ୍ତି । ସେତେବେଳେ ସରସ୍ୱତୀ ଡାକ୍ତରୀ ପାଶ୍ କରି ସାରି କଲିକତାରେ All India Institute of Hygiene and Public Health ରେ ତାଲିମ ନେଉଥାଆନ୍ତି । ତାଙ୍କ ସହିତ ମୋର କେମିତି ଦେଖା ସାକ୍ଷାତ ହେବ ଓ ବିବାହ ପ୍ରଶ୍ନ ଉଠିବ ସେ ବିଷୟରେ ଏ ବନ୍ଧୁମାନେ ମସୁଧା କରୁଥାଆନ୍ତି । ହେଲେ, କାଳେ ମୁଁ ବିରକ୍ତ ହେବି ଓ ମନା କରିଦେବି ଏଣୁ ଭରସିକରି ମୋ ଆଗରେ ପ୍ରସ୍ତାବଟା ପକାଇ ପାରୁ ନଥାଆନ୍ତି । ଏଣୁ ସେମାନେ ଯାଇ

ରବି ଦା'ଙ୍କୁ ଧରିଲେ । ସେମାନେ ଜାଣିଥାଆନ୍ତି ଯେ ମୁଁ କେବେ ରବି ଦା'ଙ୍କ ନିର୍ଦ୍ଦେଶ ଭାଙ୍ଗି ପାରିବି ନାହିଁ । ସେମାନେ ରବି ଦା'ଙ୍କ ସହିତ କ'ଣ ଆଲୋଚନା କଲେ କେଜାଣି, ଦିନେ ରବି ଦା' ମୋତେ ଡାକି, ହାତରୁ ପଇସା ଖର୍ଚ୍ଚ କରି କଲିକତା ପାଇଁ କିଣିଥିବା ଖଣ୍ଡେ ରେଳଟିକେଟ ମୋତେ ଧରେଇ ଦେଲେ । ମୁଁ ଆବାକାବା ହୋଇ ପଚାରିଲି, "ଇଏ କ'ଣ ?" ସେ କହିଲେ "ତୁମେ ଆଜି ପୁରୀ ଏକ୍ସପ୍ରେସ୍‌ରେ କଲିକତା ଯିବ । ସେଠି ସରସ୍ୱତୀ ଅଲ୍‌ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍‌ରେ ଅଛି । ତା ସହିତ ଦେଖା କରିବ ଓ କଥାବାର୍ତ୍ତା ମଧ କରି ଆସିବ । ତା ସହିତ ଆମେ ତୁମ ବାହାଘର ଚାହୁଁ ।" ମୁଁ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ କଲିକତା ଗଲି । ସରସ୍ୱତୀଙ୍କ ସହିତ କଥା ହେଲି । ଆମେ ବାହାହେବୁ ବୋଲି ସ୍ଥିର କଲୁ । ଆମେ "ଯୌତୁକ ବିରୋଧୀ ସଂଘ"ଟିଏ ଗଢ଼ିଥାଉ । ମୁଁ ତାର ସଂପାଦକ ଥାଏ । ଏଣୁ ସ୍ଥିର ହେଲା ବିନା ଯୌତୁକ ଓ ବିନା ଖର୍ଚ୍ଚରେ ଆମ ବିବାହ ସମ୍ପନ୍ନ ହେବ । ବଂଧୁ ନରେନ୍ଦ୍ର ଜେନା ବାହାଘରର ସମସ୍ତ ଦାୟିତ୍ୱ ନେଲେ । କଟକ ଚାଉଳିଆଗଞ୍ଜର 'ଭାରତୀ ଭବନ' ଠାରେ ବିବାହ ଅନୁଷ୍ଠିତ ହେଲା । ଏ ୧୯୬୦ ର କଥା । ସେତେବେଳେ କିଶାନ୍ ପଟ୍ଟନାୟକ ଥାଆନ୍ତି ସୋସାଲିଷ୍ଟ ପାର୍ଟିର ସଂପାଦକ । ମୋ ଶାଶୁ ଏହି ବିବାହ ଉପଲକ୍ଷେ ତାଙ୍କ ହାତରେ ପାର୍ଟି ପାଇଁ ଏକ ଶହ ଟଙ୍କା ଚାନ୍ଦା ଆକାରରେ ଦେଲେ । ବିଭାଘର ଖୁବ୍ ନିରାଡ଼ମ୍ବର ଭାବେ ହେଲା । ଆମ ଘରୁ ମୋ କକା ଓ ଅନ୍ୟ କେତେକ ମୁରବୀ ଆସିଥିଲେ । ସରସ୍ୱତୀଙ୍କ ମୁରବୀ ମାନଙ୍କ ମଧ୍ୟରେ ତାଙ୍କର ଅଜା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ସର୍ବୋଦୟ ସେବକ ସ୍ୱର୍ଗତ ହରେକୃଷ୍ଣ ବିଶ୍ୱାଳ ମଧ ଆସିଥିଲେ ।

ସେତେବେଳେ ପ୍ରଜା ସୋସାଲିଷ୍ଟ ପାର୍ଟି ଗଢ଼ା ହୋଇଥାଏ । ୧୯୫୪-୫୫ ବେଳକୁ କଂଗ୍ରେସ ସପକ୍ଷବାଦୀ ଓ ବିପକ୍ଷବାଦୀ – ଏହିଭଳି ଦୁଇଟି ଗୋଷ୍ଠୀ ପାର୍ଟି ଭିତରେ ରହିଥାଆନ୍ତି । ଅଶୋକ ମେହେଟ୍ଟା ଯେତେବେଳେ ପାର୍ଟି ଭିତରେ କଂଗ୍ରେସକୁ ସମର୍ଥନ ଦେବାପାଇଁ ଯୁକ୍ତି ବାଢ଼ିଲେ ମଧୁ ଲିମାୟେ ତା'ର ବିରୋଧ କଲେ । ଏଥିପାଇଁ ଅଶୋକ ମେହେଟ୍ଟାଙ୍କ ସମର୍ଥକମାନେ ତାଙ୍କୁ ପାର୍ଟିରୁ ବିତାଡ଼ନ କରିବାକୁ ମସୁଧା କଲେ । ଡଃ. ଲୋହିଆ ଏହି ଚକ୍ରାନ୍ତର ଘୋର ବିରୋଧ କଲେ । ସେତେବେଳେ ପାର୍ଟି ଭିତରେ ଡଃ. ଲୋହିଆ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ବିଶ୍ୱ ଓ ଭାରତୀୟ ପୃଷ୍ଠଭୂମିରେ ଡଃ. ଲୋହିଆଙ୍କ ସିଦ୍ଧାନ୍ତ ସର୍ବୋତ୍କୃଷ୍ଟ ବୋଲି ଆମ୍ଭମାନଙ୍କର ହୃଦ୍‌ବୋଧ ହେଉଥିଲା । ତାଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ ଗାନ୍ଧୀନୀତି ଅନୁସରଣ ବିନା ଭାରତରେ ସମାଜବାଦ ପ୍ରତିଷ୍ଠା ଅସମ୍ଭବ । ସେ ସତ୍ୟାଗ୍ରହ ଏବଂ ବିକେନ୍ଦ୍ରୀକରଣକୁ ଗାନ୍ଧୀ ଆନ୍ଦୋଳନର ନିର୍ଯ୍ୟାସ ବୋଲି ମନେ କରୁଥିଲେ ।

ଏହା ଭିତରେ ଜୟପ୍ରକାଶ ନାରାୟଣ ସମାଜବାଦୀ ଶିବିରରୁ ଓହରିଯାଇ ବିନୋବାଜୀଙ୍କ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ ଓ ସେଥିପାଇଁ ନିଜକୁ 'ଜୀବନ ଦାନୀ' ବୋଲି ମଧ ଘୋଷଣା କରିଥିଲେ ।

ଏହାପରେ ଡଃ.ଲୋହିଆ ଆମ୍ଭମାନଙ୍କର ଅବିସମ୍ବାଦିତ ନେତା ହୋଇଗଲେ । ତାଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ଅଧିକ ଘନିଷ୍ଠ ହୋଇଗଲା ଗୋଟାଏ ନିର୍ଦ୍ଦିଷ୍ଟ ଘଟଣା

ପରେ । କେରଳରେ ପ୍ରଜା ସୋସାଲିଷ୍ଟ ପାର୍ଟି ବେଶୀ ସକ୍ରିୟ ନଥିଲେ ମଧ ୧୯୫୫ ସାଲରେ ପ୍ରଜା ସୋସାଲିଷ୍ଟ ପାର୍ଟି ଏକ ସରକାର ଗଢ଼ିବାରେ ସମର୍ଥ ହୋଇଥିଲା । କଂଗ୍ରେସରୁ ଆସି ପ୍ରଜା ସୋସାଲିଷ୍ଟ ପାର୍ଟିରେ ଯୋଗଦେଇଥିବା ପଟ୍ଟମ୍ ଥାନୁ ପିଲାଇ ସେଠି ଆମଦଳରୁ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସେତେବେଳେ ଡଃ. ଲୋହିଆ ପ୍ରଜା ସୋସାଲିଷ୍ଟ ଦଳର ସାଧାରଣ ସଂପାଦକ ଥାଆନ୍ତି । ସେ ଉତ୍ତରପ୍ରଦେଶରେ ଜଳକର ବିରୋଧି ଆନ୍ଦୋଳନ କରି ଉତ୍ତର ପ୍ରଦେଶର ଫରୁଖାବାଦରେ ବନ୍ଦୀ ଥାଆନ୍ତି । ସତ୍ୟାଗ୍ରହ କରିଥିବା ଯୋଗୁଁ ନେହେରୁ ସରକାର ତାଙ୍କୁ ଜେଲ୍‌ରେ ଭର୍ତ୍ତି କରିଦେଲେ । କାରଣ ନେହେରୁଙ୍କ ଯୁକ୍ତିଥିଲା ଯେ ଆମେ ତ ସ୍ୱରାଜ ପାଇଗଲୁ । ପୁଣି ଦେଶୀ ସରକାର ବିରୁଦ୍ଧରେ ସତ୍ୟାଗ୍ରହ କ'ଣ ? ଲୋହିଆଙ୍କ ଯୁକ୍ତିଥିଲା କେବଳ ଗଣତନ୍ତ୍ରରେ ହିଁ ସତ୍ୟାଗ୍ରହ କରିବାର ଅଧିକାର ଜନତାର ରହିଛି । କେବଳ ଗାନ୍ଧିଜୀ ନୁହନ୍ତି, ସକ୍ରେଟିସ୍, ଥୋରୋ, ଟଲଷ୍ଟୟ ଆମକୁ ସତ୍ୟାଗ୍ରହ ଶିଖାଇଛନ୍ତି । ଡଃ. ଲୋହିଆ ଏହ୍ଲାବାଦ ଜେଲ ଭିତରୁ ତାଙ୍କର ସତ୍ୟାଗ୍ରହ କରିବାର ଅଧିକାର ସାବ୍ୟସ୍ତ କରିବାକୁ ଏକ କେଶ୍ କଲେ । ସେ ନିଜେ ଏଲାହାବାଦ ହାଇକୋର୍ଟରେ ଆବେଦନ କଲେ ଓ ନିଜେ ନିଜ ସପକ୍ଷରେ ଲଢ଼ିଲେ ଏବଂ ଜିତିଲେ ମଧ । କୋର୍ଟ ରାୟ ଦେଲେ ଯେ ଗଣତନ୍ତ୍ରରେ ହିଁ ସତ୍ୟାଗ୍ରହ କରିବାର ଅଧିକାର ଅଛି । ଏଇଟା ଡଃ.ଲୋହିଆଙ୍କୁ ଜେଲ୍‌ରେ ପୁରାଇ ଥିବା ଉତ୍ତର ପ୍ରଦେଶର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ଙ୍କ ଗାଲରେ ଥାପଡ଼ ମାରିଲା ଭଳି ହେଲା ।

ହଁ, ପଟ୍ଟମ୍ ଥାନୁ ପିଲାଇଙ୍କ ସରକାର କଥା କହୁଥିଲି । ଡଃ. ଲୋହିଆଙ୍କ ସେହି କାରାବାସ ସମୟରେ କେରଳର ତାମିଲ୍ ଅଧିବାସୀମାନେ କୌଣସି ଗୋଟିଏ ଦାବୀ ନେଇ ସତ୍ୟାଗ୍ରହ କଲେ । ପୋଲିସ ସତ୍ୟାଗ୍ରହୀଙ୍କ ଉପରେ ଗୁଳି ଚାଳନା କଲା । ସେଥିରେ ଏକାଧିକ ବ୍ୟକ୍ତି ପ୍ରାଣ ହରାଇଥିଲେ । ପିଲାଇ କେରଳ ପ୍ରଜାସୋସାଲିଷ୍ଟ ପାର୍ଟିର ମୁଖ୍ୟ ମଧ ଥାଆନ୍ତି । ଡଃ. ଲୋହିଆ ଜେଲ୍ ଭିତରୁ ତାଙ୍କର ଇସ୍ତଫା ଦାବୀ କଲେ । ଏହାଛଡ଼ା ଗୁଳିକାଣ୍ଡ ପାଇଁ ଦାୟୀ ଅଫିସରଙ୍କୁ ସସ୍‌ପେଣ୍ଡ କରିବାକୁ ଓ ମୃତାହତଙ୍କ ପରିବାରକୁ କ୍ଷତିପୂରଣ ଦେବାକୁ ଦାବୀକଲେ । ପାର୍ଟିର ଆଉ କେତେକ ମୁଖ୍ୟନେତାଙ୍କ ପ୍ରରୋଚନାରେ ପିଲାଇ ଇସ୍ତଫା ଦେଲେ ନାହିଁ । ସେତିକିବେଳେ ଏଲାହାବାଦ ହାଇକୋର୍ଟଙ୍କର ସତ୍ୟାଗ୍ରହ ସପକ୍ଷରେ ଉପରୋକ୍ତ ଐତିହାସିକ ରାୟ ପ୍ରକାଶ ପାଇଥାଏ । ଲୋହିଆଜୀ ବଜ୍ରନିର୍ଘୋଷ ସ୍ୱରରେ ଘୋଷଣା କଲେ, "ମଣିଷ ମାଛି ନୁହେଁ । ମଣିଷ ମଣିଷ । ନିରସ୍ତ୍ର ସତ୍ୟାଗ୍ରହୀଙ୍କ ଉପରକୁ ଗୁଳିଚାଳନା କରିଥିବାରୁ ପିଲାଇଙ୍କୁ ଇସ୍ତଫା ଦେବାକୁ ପଡ଼ିବ । ଯେତେବେଳେ କଂଗ୍ରେସ ସରକାର ସତ୍ୟାଗ୍ରହୀଙ୍କୁ ମାରୁଥିଲେ ତୁମେ ତାଙ୍କୁ ଗୁଣ୍ଡାରାଜ୍ କହୁଥିଲ । ତୁମେ କ'ଣ କଲ ?" ଗାନ୍ଧିଜୀଙ୍କ ପରେ ଡଃ. ଲୋହିଆ ପ୍ରଥମଥର ପାଇଁ ଏପରି ଠୋସ୍ ଭାଷାରେ ଗଣତନ୍ତ୍ରରେ ସତ୍ୟାଗ୍ରହର ଅଧିକାର ସପକ୍ଷରେ ଯୁକ୍ତି ବାଢ଼ିଥିଲେ ।

ଭାରତବର୍ଷ ରାଜନୀତିରେ ଆମେ ବିରୋଧୀଦଳରେ ଥିବାବେଳେ ଗୋଟାଏ ନୈତିକ ମାନଦଣ୍ଡ ଗ୍ରହଣ କରୁ ପୁଣି ଶାସନଗାଦିକୁ ଚାଲିଗଲେ ଆଉ ଏକ ଭିନ୍ନ ମାନଦଣ୍ଡ ଗ୍ରହଣ

କଲୁ । ସେତେବେଠାରୁ ରାଜନୀତି କ୍ଷେତ୍ରରେ ଏହି ଯେଉଁ ଦୋମୁହାଁ ନୀତି ବା double standard ଆରମ୍ଭ ହୋଇଥିଲା ଡଃ. ଲୋହିଆ ପ୍ରଥମ ବ୍ୟକ୍ତି ଯେ ତା'ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିଥିଲେ । ମୋ ମତରେ ସମାଜବାଦ ଓ ଗାନ୍ଧୀବାଦର ଏହା ଏକ ମୌଳିକ ପ୍ରଶ୍ନକୁ ସ୍ପର୍ଶ କରେ । ରାଜନୀତି କେବଳ କ୍ଷମତା ହାସଲ ଖେଳ ନୁହେଁ । ରାଜନୀତି କିଛି ନୀତି ଆଦର୍ଶକୁ ସମ୍ମାନ ଦେବ । ଜନସାଧାରଣଙ୍କ ଆବେଗ ଓ ସ୍ୱପ୍ନକୁ ସମ୍ମାନ ଦେବ । ଅନ୍ୟାୟ ବାହାରୁ ହେଉ ଅଥବା ନିଜ ଦଳଭିତରୁ ହେଉ ତା'ର ଦୃଢ଼ ପ୍ରତିରୋଧ କରିବ । ଡଃ. ଲୋହିଆ ଏହି ଆଦର୍ଶରେ ବିଶ୍ୱାସ କରୁଥିଲେ ।

ଏହାବାଦ ହାଇକୋର୍ଟର ରାୟପରେ ଜବାହାରଲାଲଙ୍କ ସମ୍ମାନ କମିଲା ଓ ଡଃ. ଲୋହିଆଙ୍କ ସମ୍ମାନ ବୃଦ୍ଧି ପାଇଲା । ପିଲାଇ ଇସ୍ତଫା ଦେଲେ ନାହିଁ । କିନ୍ତୁ ଡଃ.ଲୋହିଆ ଏବଂ ଆମଭଳି ତାଙ୍କ ଭାବାଦର୍ଶରେ ବିଶ୍ୱାସ କରୁଥିବା ସାଥିଙ୍କ ପାଇଁ ଏହା ଏକ ନୀତିଗତ ମୌଳିକ ପ୍ରଶ୍ନଥିଲା । ନାଗପୁରରେ ଦଳର ଏକ ସ୍ୱତନ୍ତ୍ର ବୈଠକ ଡକା ହେଲା । ସେତେବେଳେ ଓଡ଼ିଶାରେ ଦଳର ସାଧାରଣ ସଂପାଦକ ଥାଆନ୍ତି ସ୍ୱର୍ଗତ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ମୁଁ ଥାଏ ଅଖିଳ ଭାରତ ସମାଜବାଦୀ ଯୁବକ ସଭାର ଯୁଗ୍ମ ସଂପାଦକ । ନାଗପୁର ସମ୍ମିଳନୀ ପୂର୍ବରୁ ରାଜ୍ୟସ୍ତରରେ ଏ ସଂପର୍କରେ ଏକ ବିତର୍କ ପାଇଁ କଟକ ଜିଲ୍ଲା ବଇରୀରେ ଦଳର ଏକ ବୈଠକ ଡକାଗଲା । ମୁଁ ସେଠାରେ ଡଃ. ଲୋହିଆଙ୍କ ଦାବୀକୁ ଦୋହରାଇଲି । ମୁଁ କହିଲି ଯେ ପଟ୍ଟମ୍ ଥାନୁ ପିଲାଇ ନିଶ୍ଚୟ ଇସ୍ତଫା ଦେବେ, ମୃତାହତଙ୍କୁ କ୍ଷତିପୂରଣ ଦେବେ ଓ ଦୋଷୀଙ୍କୁ ଉପଯୁକ୍ତ ଦଣ୍ଡ ମିଳିବ । ମୋ ମତ ଲିପିବଦ୍ଧ ହେବନାହିଁ ବୋଲି ଶ୍ରୀ ଦ୍ୱିବେଦୀ ନିର୍ଦ୍ଦେଶ ଦେଲେ । ମୁଁ କାନ୍ଦିକରି ଅଡ଼ିବସିଲି ଯେ ମୋ ମତ ନିଶ୍ଚୟ ରେକର୍ଡ଼ ହେବ । ଏ ପ୍ରକାର ପରିସ୍ଥିତି ହେବ ବୋଲି ସୁରେନ୍ଦ୍ର ବାବୁ ଆଶା କରି ନଥିଲେ । ସଦ୍ୟ ଦିବଂଗତ ଶ୍ରୀ ଗଣନାଥ ପ୍ରଧାନ (ଯେ କି ପରେ ଏମ୍.ଏଲ୍.ଏ. ହୋଇଥିଲେ) ମଧ କେରଳ ଗୁଳିକାଣ୍ଡ ପରିପ୍ରେକ୍ଷୀରେ ଲୋହିଆଜୀଙ୍କୁ ସମର୍ଥନ କଲେ । ଅବଶ୍ୟ ବହୁ କମ୍ ଭୋଟରେ ଡଃ. ଲୋହିଆଙ୍କ ପ୍ରସ୍ତାବ କାଟ ଖାଇଗଲା । ଏଇଠି ଉଲ୍ଲେଖ କରାଯାଇପାରେ ଯେ ପିଲାଇଙ୍କ ଇସ୍ତଫା ସଂପର୍କରେ ସର୍ବଭାରତୀୟ ସ୍ତରରେ ଯେତେବେଳେ ନାଗପୁର ଠାରେ ମତାମତ ନିଆଗଲା ସାରଙ୍ଗଧର ବାବୁ (ଦାସ) ଗୁଳିକାଣ୍ଡ ବିରୁଦ୍ଧରେ ମତ ଦେଲେ । ସେଥିପାଇଁ ଦ୍ୱିବେଦୀ ତାଙ୍କୁ ଡାକି ଖୁବ୍ ଧମକେଇଲେ ।

ତାପରେ ଆମକୁ ଲାଗିଲା ଯେ ଦଳ ଆଉ ଏକ ହୋଇ ରହିପାରିବ ନାହିଁ । ବିଭାଜନ ସୁନିଶ୍ଚିତ । ଆମକୁ ଲାଗିଲା ଯେ ଲୋହିଆଜୀ ଯୁଗପତ୍ ସମାଜବାଦ ଓ ଗାନ୍ଧୀବାଦର ପନ୍ଥା ଅନୁସରଣ କରୁଛନ୍ତି ଓ ତାହାହିଁ ଭାରତପାଇଁ ଉଚିତମାର୍ଗ । ମୋ ଭଳି ହଜାର ହଜାର ସମାଜବାଦୀ ଯୁବକ ଡଃ. ଲୋହିଆଙ୍କ ପଛରେ ଛିଡ଼ା ହୋଇଗଲେ । ହାଇଦ୍ରାବାଦରେ ଏକ ବିଶେଷ ସମ୍ମିଳନୀ ଡକା ହେଲା । ଆମେ ଡଃ. ଲୋହିଆଙ୍କ ନେତୃତ୍ୱରେ ପ୍ରଜା ସୋସାଲିଷ୍ଟ ଦଳରୁ ଅଲଗା ହୋଇଗଲୁ ଓ ସୋସାଲିଷ୍ଟ ପାର୍ଟି (S.P.) ଗଢ଼ାଗଲା । ଆମଦଳ ଏକ ଛୋଟିଆ ଦଳ ହୋଇ ଜନ୍ମନେଲା । ତେବେ ଦଳ ଛୋଟ ଥିଲା କି ବଡ଼ ଥିଲା ସିଏ ଗୁରୁତ୍ୱପୂର୍ଣ୍ଣ

ନୁହେଁ । ମୁଖ୍ୟ ପ୍ରଶ୍ନ ଥିଲା ଏକ ବୈଚାରିକ ପ୍ରଶ୍ନ । ସୋସାଲିଷ୍ଟ ପାର୍ଟି ଗଢ଼ା ହେବା ପରଠାରୁ ସ୍ୱାଧୀନ ଭାରତରେ ସିଦ୍ଧାନ୍ତବାଦୀ ରାଜନୀତିର ଆରମ୍ଭ ହେଲା ବୋଲି ମୋର ବିଶ୍ୱାସ । ଦେଶକାଳ ପାତ୍ରକୁ ଚାହିଁ ଗାନ୍ଧିଜୀଙ୍କ ନୀତିକୁ କିପରି ରାଜନୀତି କ୍ଷେତ୍ରରେ ପ୍ରୟୋଗ କରାଯିବ ଡଃ. ଲୋହିଆ ସେ ତତ୍ତ୍ୱ ଆମକୁ ଶିଖାଇଲେ । ଆମେ ତାକୁ ସର୍ବାନ୍ତକରଣେ ମାନିନେଲୁ ।

ସେତେବେଳକୁ ମତାଦର୍ଶ ଦୃଷ୍ଟିରୁ ଜୟପ୍ରକାଶ ଓ ଲୋହିଆ ପରସ୍ପରଠାରୁ ଦୂରେଇ ଯାଇ ସାରିଥିଲେ ମାତ୍ର ବ୍ୟକ୍ତିଗତ ସଂପର୍କ ଅତୁଟ ଥିଲା । ନୂଆପାର୍ଟି ଗଢ଼ା ହେବା ପରେ ଉଭୟ ପୁଣି ପରସ୍ପରର ନିକଟତର ହେଲେ ଓ ସେମାନଙ୍କ ମଧ୍ୟରେ ପତ୍ରାଳାପ ଚାଲିଲା ।

ଗାନ୍ଧିଜୀଙ୍କ ୧୩ଟି ରଚନାତ୍ମକ କାର୍ଯ୍ୟକ୍ରମ ପରି ଡଃ. ଲୋହିଆ ଭାରତୀୟ ଜନସାଧାରଣଙ୍କ ସମ୍ମୁଖରେ ତିନୋଟି କାର୍ଯ୍ୟକ୍ରମ ରଖିଲେ– (୧) ଜେଲ୍, (୨) କୋଦାଳ ଓ (୩) ଭୋଟ । ସେ କହୁଥିଲେ ଯେ ଆମେ ରାଜନୈତିକ ସ୍ୱାଧୀନତା ପାଇଗଲୁ ବୋଲି ସନ୍ତୋଷର ସହିତ ଚୁପ୍ ହୋଇ ବସିଯିବା ଅନୁଚିତ୍ । ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ତଥା ନିଜର ନ୍ୟାଯ୍ୟ ଅଧିକାର ସପକ୍ଷରେ ସତତ ଆନ୍ଦୋଳନ ଚାଲୁ ରହିବା ଉଚିତ୍ । ଏଥିପାଇଁ ଆବଶ୍ୟକ ପଡ଼ିଲେ ଜେଲ୍ ଯିବାକୁ ଜନସାଧାରଣ ପ୍ରସ୍ତୁତ ରହିବା ଉଚିତ୍ । (୨) ପ୍ରତ୍ୟେକ ସାବାଳକ ବ୍ୟକ୍ତି ପ୍ରତିଦିନ ୨/୩ ଘଣ୍ଟା ଶରୀର ଶ୍ରମ କରିବା ଉଚିତ୍ । ରାସ୍ତା, ପୋଖରୀ ଇତ୍ୟାଦି ନିର୍ମାଣ କରିବାକୁ କିଛି ସମୟ ସାମୁହିକ ଶ୍ରମଦାନ କରିବା ଏହାର ଅନ୍ତର୍ଭୁକ୍ତ । ଶେଷରେ, ପ୍ରତି ପାଞ୍ଚବର୍ଷରେ ହେଉଥିବା ଭୋଟ ପ୍ରକ୍ରିୟାରେ ମଧ୍ୟ ପ୍ରତ୍ୟେକ ବ୍ୟକ୍ତି ଅଂଶ ଗ୍ରହଣ କରିବା ଉଚିତ ଓ ନିଜର ବିବେକାନୁମୋଦିତ ପନ୍ଥାରେ ଏହି ଅଧିକାରର ସଦୁପଯୋଗ କରିବା ଉଚିତ୍ ।

ଗାନ୍ଧିଜୀଙ୍କର ସମସ୍ତ ରଚନାତ୍ମକ କାର୍ଯ୍ୟକ୍ରମକୁ ସେ ସାତୋଟି ବ୍ୟାପକ କାର୍ଯ୍ୟକ୍ରମ ଭିତରେ ଅନ୍ତର୍ଭୁକ୍ତ କରିଦେଇଥିଲେ । ଏହାକୁ ସେ 'ସପ୍ତକ୍ରାନ୍ତି' ନାମକରଣ କରିଥିଲେ । ଏ ସାତୋଟି କ୍ରାନ୍ତି ଖାଲି ଦେଶର ସର୍ବାଙ୍ଗୀନ ବିକାଶ ପାଇଁ ଆବଶ୍ୟକ ନୁହେଁ. ବିଶ୍ୱଶାନ୍ତି ପ୍ରତିଷ୍ଠା ପାଇଁ ମଧ୍ୟ ଅପରିହାର୍ଯ୍ୟ ବୋଲି ଡଃ. ଲୋହିଆ ବିଶ୍ୱାସ କରୁଥିଲେ ।

ଏହି 'ସପ୍ତକ୍ରାନ୍ତି' ନିମ୍ନ ପ୍ରକାରେ ଅଟେ :-

ପ୍ରଥମ କ୍ରାନ୍ତି: ଧନୀ ଗରିବ ପାର୍ଥକ୍ୟ ଦୂର ହେବ, ଭାରତବର୍ଷରେ ଓ ସମଗ୍ର ବିଶ୍ୱରେ । ଦ୍ୱିତୀୟରେ, ନରନାରୀ ଅସମାନତା ଦୂର ହେବ । ତୃତୀୟରେ, କଳାଗୋରା ବର୍ଣ୍ଣ ବୈଷମ୍ୟ ଦୂର ହେବ । ଚତୁର୍ଥରେ, ଜାତିପ୍ରଥା ଦୂର ହେବ । ଦଳିତଙ୍କ ଉତ୍‌ଥାନପାଇଁ ଆବଶ୍ୟକ ପଡ଼ିଲେ ସ୍ଥାନ ସଂରକ୍ଷଣ ପରି ନିଷେଧାତ୍ମକ ନ୍ୟାୟ (Negative Justice) ବ୍ୟବସ୍ଥା କରିବାକୁ ହେବ । ପଞ୍ଚମରେ, ଅଣୁଅସ୍ତ୍ର ଏପରିକି ପାରମ୍ପରିକ ଯୁଦ୍ଧାସ୍ତ୍ର (ଯଥା: ବନ୍ଧୁକ, ଗୁଳିଗୋଳା) ର ମଧ୍ୟ ବିଲୋପ ସାଧନ କରିବାକୁ ପଡ଼ିବ । ଷଷ୍ଠରେ, ବ୍ୟକ୍ତି ସ୍ୱାଧୀନତା ପାଇଁ ଲଢ଼ିବାକୁ ପଡ଼ିବ । ବ୍ୟକ୍ତିଗତ ଜୀବନରେ ସରକାର ବା ରାଷ୍ଟ୍ରର ଅଯଥା ହସ୍ତକ୍ଷେପକୁ ବିରୋଧ କରାଯିବ । ସପ୍ତମରେ: ଧନୀ ରାଷ୍ଟ୍ର ଓ ଦରିଦ୍ର ରାଷ୍ଟ୍ରଙ୍କ ଭିତରେ ପାର୍ଥକ୍ୟ ଦୂରୀକରଣ ।

ଏହି ପୃଷ୍ଠଭୂମି ଉପରେ ସମାଜବାଦୀ ଆନ୍ଦୋଳନ ଛିଡ଼ା ହୋଇଥିଲା । ସେ ସମୟରେ ମୋ ଭଳି ଯୁବକମାନଙ୍କର ଦୃଢ଼ ବିଶ୍ୱାସ ହୋଇଥିଲା ଯେ ଡଃ. ଲୋହିଆଙ୍କ 'ସପ୍ତକ୍ରାନ୍ତି' ସ୍ୱପ୍ନକୁ ସାକାର କରିବା ନିମିତ୍ତ ଯେ କୌଣସି ତ୍ୟାଗ ଓ ତପସ୍ୟାକୁ କମ୍ ବୋଲି ମାନିବାକୁ ହେବ । ଗାନ୍ଧୀଜୀଙ୍କ ଅବର୍ତ୍ତମାନରେ ଡଃ. ଲୋହିଆ ଆମ ପାଇଁ ହୋଇ ଉଠିଲେ ସମକାଳୀନ ଗାନ୍ଧୀ ।

ସ୍ୱାଧୀନତା ପ୍ରାପ୍ତିପରେ ଆମ ସମସାମୟିକ ଇତିହାସର ସବୁଠାରୁ ଲଜ୍ଜାଜନକ ଘଟଣା ହେଉଛି ୧୯୬୨ ସାଲରେ ଚୀନ୍‌ର ଭାରତ ଆକ୍ରମଣ । ଭାରତର ପରାଜୟ ଜନିତ ଗ୍ଲାନି ଏଯାଏ ଆମ୍ଭମାନଙ୍କ ମନରୁ ଦୂର ହୋଇନାହିଁ । ଏ ଘଟଣା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଇତିହାସର ଆଉ ଏକ ଦୁଃଖଦ ଘଟଣା: ଚୀନ୍‌ର ତିବ୍ବତ ଆକ୍ରମଣ ଓ ଦଖଲ । ଇତିହାସର ଏ ଦୁଇ କାଳିମାମୟ ଅଧ୍ୟାୟକୁ ଅନେକ ବିଶେଷଜ୍ଞ ବିଶ୍ଳେଷଣ କରିଛନ୍ତି । ମାତ୍ର ମୋ ମତରେ ଏ ଦିଗରେ ଡଃ. ଲୋହିଆଙ୍କ ବିଶ୍ଳେଷଣ ଅନନ୍ୟ ।

ଉଭୟ କ୍ଷେତ୍ରରେ ଭାରତ ଲାଞ୍ଛିତ ହେବାର ପ୍ରଧାନ କାରଣ ସେତେବେଳେ ଯୁଗପତ୍ ଭାରତର ପ୍ରଧାନମନ୍ତ୍ରୀ ଏବଂ ବୈଦେଶିକ ମନ୍ତ୍ରୀ ଥିବା ଜବାହାରଲାଲ ନେହେରୁଙ୍କର ଅଦ୍ଭୁତ ମାନସିକତା । ସେ ନିଜର ଧାର୍‌କରା ବୁଦ୍ଧି ପ୍ରୟୋଗ କରି ହିମାଳୟ ପରି ଦୁଇଟି ପ୍ରକାଣ୍ଡ ଭୁଲ୍ କରି ବସିଲେ । ସେତେବେଳେ ବିଲାତର ପ୍ରସିଦ୍ଧ 'ନିଉ ଷ୍ଟେଟସ୍‌ମ୍ୟାନ' ଖବର କାଗଜର ସଂପାଦକ ଥିଲେ କିଙ୍ଗ୍‌ସଲେ ମାର୍ଟିନ୍ । ସେ ଥିଲେ ଜବାହାରଲାଲଙ୍କର ପରମ ବନ୍ଧୁ । ଏହି ବନ୍ଧୁତା ଆମ ଦେଶ ପାଇଁ ଅଭିଶାପରେ ପରିଣତ ହେଲା । ନେହେରୁ ମାର୍ଟିନ୍‌ଙ୍କ ସହିତ ପରାମର୍ଶ କରି ନିଜର ବୈଦେଶିକ ନୀତି ତିଆରି କରୁଥିଲେ । ତିବ୍ବତର ସାଂସ୍କୃତିକ, ସାମାଜିକ, ଧାର୍ମିକ ଐତିହ୍ୟ ସଂପର୍କରେ ନେହେରୁ ମାର୍ଟିନ୍‌ଙ୍କ ବିଶ୍ଳେଷଣ ଉପରେ ନିର୍ଭର କରିଥିଲେ । ସେହିଭଳି 'Suzerainty' ଓ 'Sovereignty' ଶବ୍ଦ ଖେଳରେ ମାତିଯାଇ ଏକ କ୍ଷୁଦ୍ର ଦେଶର ସ୍ୱାର୍ଥକୁ ଏକ ବୃହତ୍ ଦେଶର ସ୍ୱାର୍ଥ ନିକଟରେ ସେ ଦିନେ ବଳି ପକାଇଦେଲେ । ମାର୍ଟିନ୍‌ଙ୍କ ଠାରୁ ବୁଦ୍ଧି ଧାର ଆଣି ନେହେରୁ ବୁଝାଇଦେଲେ ଯେ ଚୀନ୍‌ର ତିବ୍ବତ ଉପରେ Sovereignty ନଥିଲେ ମଧ୍ୟ Suzerainty ରହିଛି । ଅର୍ଥାତ୍, ତିବ୍ବତ ଚୀନ୍‌ର ସାର୍ବଭୌମତା ପରିସର ଭିତରକୁ ନ ଆସୁଥିଲେ ମଧ୍ୟ ଏହା ଉପରେ କର୍ତ୍ତୃତ୍ୱ ବିସ୍ତାର କରିବାର ଅଧିକାର ଚୀନ୍‌ର ରହିଛି । ଡଃ. ଲୋହିଆ ନେହେରୁଙ୍କର ଏଇ ରାଜନୈତିକ ଭାଷ୍ୟକୁ ଲକ୍ଷ୍ୟ କରି କହିଲେ, "'Suzerainty' ଓ 'Sovereignty' ଶବ୍ଦ ଦୁଇଟି କଲେଜ ଛାତ୍ର ପରି ଜବାହାରଲାଲ ନେହେରୁ ମହୋଦୟଙ୍କ ମୁଣ୍ଡକୁ ଗୋଳମାଳ କରିଦେଲା ଏବଂ ସେ ଦେଶକୁ ଫସାଇ ଦେଲେ ।" ତେବେ ମୁଁ ନେହେରୁଜୀଙ୍କୁ କିଛି କନ୍‌ସେସନ୍ ଦେଇ କହିବି ଯେ ସେ ନିଜ ଅଜାଣତରେ ଏହି ପ୍ରକାଣ୍ଡ ଭୁଲ୍‌ଟି କରିବସିଲେ । କିଙ୍ଗ୍‌ସେଲେ ମାର୍ଟିନ୍ ତାଙ୍କ ମୁଣ୍ଡରେ ପୁରାଇ ଦେଲେ ଯେ ଚୀନ୍‌ର ତିବ୍ବତ ଉପରେ ରାଜନୈତିକ କର୍ତ୍ତୃତ୍ୱ ବିସ୍ତାର କରିବାର ଅଧିକାର ରହିଛି । ତିବ୍ବତ ଯେ ଏକ ସାର୍ବଭୌମ ରାଷ୍ଟ୍ର ଏହା ସେ ଗ୍ରହଣ କରିପାରିଲେ ନାହିଁ ।

ଅଥଚ ଚୀନ୍ ତିବ୍ବତ ଆକ୍ରମଣ କରିବାର ମାତ୍ର କିଛି ବର୍ଷ ପୂର୍ବରୁ –ଅର୍ଥାତ୍ ଭାରତ ସ୍ୱାଧୀନତା ପାଇବାର ଦଶମାସ ପୂର୍ବରୁ – ଜବାହାରଲାଲ ଏସିଆନ୍ ରିଲେସନ୍ସ୍‌ର ଏକ ଆନ୍ତର୍ଜାତିକ ବୈଠକ ଡାକିଥିଲେ । ଭାଗ୍ୟର ବିଡମ୍ବନା ସେ ଏହା ଉଦ୍‌ଘାଟନ କରାଇଥିଲେ ଗାନ୍ଧୀଜୀଙ୍କ ଦ୍ୱାରା । ସେଥିରେ ଚୀନ୍‌ରୁ ଦୁଇଟି ପ୍ରତିନିଧି ଦଳ ଆସିଥିଲେ । ସେତେବେଳେ ଚୀନ୍‌ରେ ଚାଙ୍ଗ୍ କାଇ ସେକ୍‌ଙ୍କର କୋମିଂଟାଙ୍ଗ ଦଳ ରାଜୁତି କରୁଥାଏ । ତାଙ୍କ ପ୍ରତିନିଧିଦଳ ଆସିଥିଲେ । ମାତ୍ର କୌତୂହଳର ବିଷୟ ହେଲା ଏଥିରେ ତିବ୍ବତର ପ୍ରତିନିଧି ମଧ୍ୟ ସ୍ୱତନ୍ତ୍ରଭାବେ ଯୋଗ ଦେଇଥିଲେ । ଅର୍ଥାତ୍, ସ୍ୱୟଂ ଭାରତ ସରକାର ଓ ନେହେରୁ ସେତେବେଳେ ଚୀନ୍ ଓ ତିବ୍ବତକୁ ଦୁଇଟି ପୃଥକ ଦେଶ ରୂପେ ମାନ୍ୟତା ଦେଇଥିଲେ । ୧୯୪୮ରେ ଗାନ୍ଧୀଜୀଙ୍କ ପରଲୋକ ଘଟିଲା । ମୋ ମତରେ, ଯଦି ଚୀନ୍‌ର ତିବ୍ବତ ଆକ୍ରମଣ ବେଳେ ଗାନ୍ଧୀଜୀ ବଞ୍ଚିଥାନ୍ତେ ସେ ନିଶ୍ଚୟ ଏହାର ବିରୋଧ କରିଥାଆନ୍ତେ । ଗାନ୍ଧୀଜୀ ଥିଲେ ଚୀନ୍ ହୁଏତ ଭାରତ ଆକ୍ରମଣ କରି ନଥାଆନ୍ତା । ଚୀନ୍ ତିବ୍ବତ ଆକ୍ରମଣ କଲାବେଳେ ଲୋହିଆ ଥାଆନ୍ତି ସୋସାଲିଷ୍ଟ ପାର୍ଟିର ବିଦେଶ ବିଭାଗ ଚେୟାରମ୍ୟାନ୍ ।

ପରେ ଅବଶ୍ୟ ନେହେରୁ ଅନୁତାପ କରି କହିଲେ "ମୁଁ ଠକିଗଲି ।" ତେବେ କୌଣସି ଦେଶପ୍ରେମୀ ଭାରତୀୟ ବିଶ୍ୱାସ କଲା ନାହିଁ ତାଙ୍କର ସେ ସ୍ୱୀକାରୋକ୍ତିକୁ । ନିଜକୁ 'ପ୍ରଗତିଶୀଳ' ବୋଲାଉଥିବା, ବ୍ୟକ୍ତି, ପୁଣି ଗୋଟାଏ ଏଡ଼େବଡ଼ ଦେଶର ପ୍ରଧାନମନ୍ତ୍ରୀ, ଯାହାଙ୍କ ହାତମୁଠାରେ ସରକାର ଅଛି, ସେନା ଅଛି, ଗୋଇନ୍ଦା ବିଭାଗ ଅଛି ସେ ଏପରି ଅବଲୀଳା କ୍ରମେ ଗୋଟାଏ ଭୁଲ୍ କରି ପକାଇବେ – ଏହା କିପରି କିଏ ବିଶ୍ୱାସ କରିବ ?

ସେହି ସମୟରେ ଡଃ. ଲୋହିଆ ବିଲାତରେ ଥିଲେ । ସେ ଏକ ପ୍ରେସ୍ କନ୍‌ଫରେନ୍ସ କରିଥିଲେ । ସେଠି ସେ ଚୀନ୍‌ର ତିବ୍ବତ ଦଖଲକୁ ଏକ 'ଶିଶୁ ହତ୍ୟା' (murder of a baby) ବୋଲି ଆଖ୍ୟାୟିତ କରିଥିଲେ । ସେ କହିଲେ, "ଚୀନ୍ ରାକ୍ଷସ ତିବ୍ବତ ଭଳି ଏକ ନିରୀହ ଶିଶୁକୁ ତଣ୍ଟି ଚିପି ମାରିଦେଲା ।" ଜବାହାରଲାଲ୍‌ଙ୍କ ଘନିଷ୍ଠ ବନ୍ଧୁ କୃଷ୍ଣ ମେନନ୍ ସେତେବେଳେ ବ୍ରିଟେନ୍‌ରେ ଭାରତର ହାଇକମିଶନର୍ ଥାଆନ୍ତି । ସେ ତୁରନ୍ତ ନେହେରୁଙ୍କୁ ଖବର ପଠାଇଲେ ଯେ ଡଃ. ଲୋହିଆଙ୍କ ବିବୃତ୍ତି ଖୁବ୍ ଭଲଭାବେ ବିଭିନ୍ନ ଖବର କାଗଜରେ ପ୍ରକାଶ ପାଇ ଯାଇଛି ।

ତେବେ ଜବାହାରଲାଲ ଜୟପ୍ରକାଶଜୀଙ୍କୁ ନିଜ ଆଡ଼କୁ ଟାଣି ନେଲେ ଓ ତାଙ୍କ ଦ୍ୱାରା ଏପରି ଏକ ବିବୃତି ଦିଆଇଲେ ଯେପରି ଜନସାଧାରଣ ଅନୁଭବ କରିବେ ଯେ ଲୋହିଆଙ୍କ ମତ ସମାଜବାଦୀ ଦଳର ମତ ନୁହେଁ । ଲୋହିଆ ଭାରତକୁ ଫେରିଲା ପରେ ଜବାହାରଲାଲ୍ ଜୟପ୍ରକାଶଜୀଙ୍କ ସାହାଯ୍ୟ ନେଇଥିବା କଥା ଜାଣିପାରିଲେ । ଏଇଠି ପ୍ରକାଶ କରାଯାଇପାରେଯେ, ଜୟପ୍ରକାଶଜୀଙ୍କର ଜବାହାରଲାଲଙ୍କ ସହିତ ଏକପ୍ରକାର ପାରିବାରିକ ସଂପର୍କ ଥିଲା । ଜୟପ୍ରକାଶଙ୍କ ପତ୍ନୀ ପ୍ରଭାବତୀ ଦେବୀ ଓ ଜବାହରଲାଲ୍‌ଙ୍କ ପତ୍ନୀ କମଳା ନେହେରୁ ପରସ୍ପର ପରସ୍ପରର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ । ଅବଶ୍ୟ ସ୍ୱାଧୀନତା ପୂର୍ବରୁ ଜୟପ୍ରକାଶଙ୍କ ଅପେକ୍ଷା ଲୋହିଆଙ୍କୁ ନେହେରୁ ନିଜର ନିକଟତର ବୋଲି ଭାବୁଥିଲେ ।

ମାତ୍ର ସ୍ୱାଧୀନତା ପ୍ରାପ୍ତିପରେ ଜବାହରଲାଲ ଯେଉଁ ରାସ୍ତା ଧରିଲେ ତାହା ଲୋହିଆଙ୍କୁ ନେହେରୁଙ୍କ ସବୁଠୁ ବଡ଼ ସମାଲୋଚକରେ ପରିଣତ କଲା । ଜୟପ୍ରକାଶଙ୍କର ଏତାଦୃଶ ଆଚରଣ ଲୋହିଆଙ୍କୁ ବହୁତ ବାଧିଲା । ପରେ ପ୍ରଜା ସୋସାଲିଷ୍ଟ ପାର୍ଟିରେ ଯେଉଁ ବିଭାଜନ ହେଲା ତା'ର ବିଭିନ୍ନ କାରଣ ଭିତରୁ ଏ ଘଟଣା ଅନ୍ୟତମ ।

ଏହି ପରିପ୍ରେକ୍ଷୀରେ ଆଉ ଜଣେ ପ୍ରାତଃ ସ୍ମରଣୀୟ ବ୍ୟକ୍ତିଙ୍କ ନାମ ନିଆଯାଇପାରେ । ସେ ହେଲେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍ । ସେ ସେତେବେଳେ ଉପ ପ୍ରଧାନମନ୍ତ୍ରୀ ଥିଲେ । ଅନେକଙ୍କ ଆଖିରେ ସର୍ଦ୍ଦାର ପଟେଲଙ୍କର ଭାବମୂର୍ତ୍ତୀ ହେଲା, ସେ ଅତ୍ୟନ୍ତ କଡ଼ା ସ୍ୱଭାବର ବ୍ୟକ୍ତି, ଯାହାକୁ କଥା ଓଡ଼ିଆରେ କହନ୍ତି 'ରାହୁଆ' । ଅନେକ ଅଭିଯୋଗ କରିଥାଆନ୍ତି ଯେ ସେ ପ୍ରଗତିଶୀଳ ନ ଥିଲେ । ମାତ୍ର ଅନେକ ବିଷୟରେ ସେ ଜବାହାରଲାଲଙ୍କ ଠାରୁ ଅଧିକ ଆଗରେ ଥିଲେ । ତିବ୍ବତ ପ୍ରସଙ୍ଗକୁ ନେଇ ସେ ଜବାହରଲାଲଙ୍କୁ ଖଣ୍ଡେ ଚିଠି ଲେଖିଲେ । ତାର ସାରମର୍ମ ଏହିପରି ଥିଲା: ତମେ ଜବାହରଲାଲ ନେହେରୁ (ପଟେଲ ନେହେରୁଙ୍କ ଠାରୁ ବର୍ଷେ ବଡ଼ ଥିଲେ) ଠକି ଗଲ । ତମକୁ ଚୀନ୍ ଠକି ଦେଲା । ଏ ଚିଠିଟି ଉପ ପ୍ରଧାନମନ୍ତ୍ରୀଙ୍କ ପ୍ୟାଡ୍‌ରେ ଲେଖାହୋଇଥିବା ଏକ ଅଫିସିଆଲ ଚିଠି । ୧୯୪୯ରେ ଲେଖା ହୋଇଥିଲା । ୧୯୫୦ରେ ସର୍ଦ୍ଦାର ପଟେଲଙ୍କର ଦେହାନ୍ତ ହେଲା ।

ତିବ୍ବତକୁ ନେଇ ଭାରତରେ ଯେଉଁ ଜନ ଆନ୍ଦୋଳନ ଅନେକ ଦିନ ଲାଗି ରହିଥିଲା ତାକୁ ଗଢ଼ି ତୋଳିବାର ମୁଖ୍ୟ ଶ୍ରେୟ ଡ:ଲୋହିଆଙ୍କୁ ଦିଆଯିବ । ତିବ୍ବତ ସଂପର୍କରେ ନେହେରୁ ଜନମାନସକୁ ବିଭ୍ରାନ୍ତ କରିବାପରେ ତାକୁ ପୁନଶ୍ଚ ସଠିକ୍ ରାସ୍ତାକୁ ଆଣିବା ପାଇଁ ଲୋହିଆଙ୍କ ଉଦ୍ୟମ ଥିଲା ଅକ୍ଲାନ୍ତ । ତାଙ୍କର ବିଭିନ୍ନ ଭବିଷ୍ୟତବାଣୀ ପରି ତିବ୍ବତ ସଂପର୍କୀୟ ଭବିଷ୍ୟତ ବାଣୀ ମଧ୍ୟ ସତ୍ୟ ପ୍ରମାଣିତ ହୋଇଛି ।

ତିବ୍ବତର ଭାବଗତ ଅଥବା ସାଂସ୍କୃତିକ ସଂପର୍କ ଚୀନ ଅପେକ୍ଷା ଭାରତ ସହିତ ଥିଲା ଅଧିକ । ସେଇଥିପାଇଁ ଦଲାଇ ଲାମା କହୁଥିଲେ, 'ଭାରତ ଗୁରୁ । ତିବ୍ବତ ଶିଷ୍ୟ ।' କିନ୍ତୁ ଗୁରୁ ଶିଷ୍ୟ ସହିତ ନିଷ୍ଠୁର ଭାବେ ବିଶ୍ୱାସଘାତକତା କଲା । ତେବେ ଏ ଦିଗରେ ପ୍ରକାଶ ପାଉଥିବା ଜନସାଧାରଣଙ୍କ କ୍ରୋଧକୁ ଶାନ୍ତ କରିବାକୁ ଓ ନିଜ ଭୁଲ ପାଇଁ କିଞ୍ଚିତ୍ ପ୍ରାୟଶ୍ଚିତ କରିବାକୁ ନେହେରୁ ଦଲାଇଲାମା ଏବଂ ତାଙ୍କ ସହିତ ପଳେଇ ଆସିଥିବା ତାଙ୍କ ଅନୁଗାମୀମାନଙ୍କୁ ଭାରତରେ 'ରାଜନୈତିକ ଆଶ୍ରୟ' ଦେଲେ । ସେବେଠାରୁ ଦଲାଇଲାମା ଓ ତାଙ୍କ ସହ ଚାଲିଆସିଥିବା ତାଙ୍କର ଶହ ଶହ ଅନୁଗାମୀ ଶରଣାର୍ଥୀ ରୂପେ ଭାରତରେ ରହିଛନ୍ତି ।

୧୯୪୯ / ୫୦ରୁ ୧୯୬୨ ପର୍ଯ୍ୟନ୍ତ ଡ:ଲୋହିଆ 'ହିମାଳୟ ବଞ୍ଚାଅ' ଆନ୍ଦୋଳନ କଲେ । ଏଥିରେ ତାଙ୍କୁ ନୈତିକ ସମର୍ଥନ ଦେଇଥିବା ଓ ସକ୍ରିୟ ସହଯୋଗ କରିଥିବା ବିଶିଷ୍ଟ ବ୍ୟକ୍ତିଙ୍କ ଭିତରେ ଥିଲେ ଦେଶର ପ୍ରଥମ ରାଷ୍ଟ୍ରପତି ଡ:ରାଜେନ୍ଦ୍ର ପ୍ରସାଦ । ଏପରିକି ସେ ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେଲାପରେ ଡ: ଲୋହିଆଙ୍କ ସହିତ ବିଭିନ୍ନ ସ୍ଥାନକୁ ଯାଇ

'ହିମାଳୟ ବଞ୍ଚାଅ' ଆନ୍ଦୋଳନ ସପକ୍ଷରେ ଭାଷଣ ଦେଲେ । ଏଥିପାଇଁ ରାଜେନ୍ଦ୍ର ପ୍ରସାଦଙ୍କ ଉପରେ ନେହେରୁ ଏପରି କ୍ଷୁବ୍ଧ ହୋଇ ଯାଇଥିଲେ ଯେ ରାଜେନ୍ଦ୍ର ପ୍ରସାଦ ମରିବାବେଳେ ନେହେରୁ ରାଜସ୍ଥାନର ଗଙ୍ଗାନଗରରେ ଥିଲେ । ରାଜେନ୍ଦ୍ର ବାବୁଙ୍କ ଶବଦାହରେ ଯୋଗ ଦେଲେ ନାହିଁ ।

ଏଇଠି ରାଜେନ୍ଦ୍ର ପ୍ରସାଦଙ୍କ ସଂପର୍କରେ ଗୋଟିଏ ବ୍ୟକ୍ତିଗତ ଅନୁଭୂତି ମନେପଡିଯାଏ । ୧୯୬୦ ମସିହାର କଥା । ମୁଁ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ଥାଏ । ଦଳ କାମରେ ସେତେବେଳେ ମୁଁ ହାଇଦ୍ରାବାଦରେ ରହୁଥାଏ । ମୋର ବନ୍ଧୁ ବଦ୍ରୀବିଶାଲ ହାଇଦ୍ରାବାଦର ବାସିନ୍ଦା । ଡକ୍ଟର ଲୋହିଆ ହାଇଦ୍ରାବାଦ ଗଲେ ତାଙ୍କରି ଘରେ ରହୁଥିଲେ । ମୁଁ ଦିନେ ସନ୍ଧ୍ୟାରେ ତାଙ୍କ ଘରକୁ ଯାଇଥାଏ । ସେତେବେଳକୁ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେଇ ସାରିଥାନ୍ତି । ସେ ମଧ୍ୟ ହାଇଦ୍ରାବାଦ ଆସିଥାଆନ୍ତି । ହଠାତ୍ ତାଙ୍କ ପାଖରୁ ଫୋନ୍ ଆସିଲା ବଦ୍ରିବିଶାଲ୍‌ଙ୍କ ପାଖକୁ । ବଦ୍ରିବିଶାଲ୍‌ଙ୍କ ବାପା ନଥାଆନ୍ତି । ତାଙ୍କୁ ରାଜେନ୍ଦ୍ରପ୍ରସାଦ ଫୋନ୍ କରି ଥାଆନ୍ତି । ବଦ୍ରି ଫୋନ୍ ଧରିଲେ । ସେ କାହିଁକି ଫୋନ୍ କରିଥିଲେ ବୋଲି ପଚାରି ଜାଣିଲି ଯେ ତାଙ୍କର ଗୋଟିଏ ଗାଈ ଦରକାର । କାରଣ ତାଙ୍କର ପତ୍ନୀ ମୃତ୍ୟୁଶଯ୍ୟାରେ ଇଛାପ୍ରକାଶ କଲେ ଯେ ସେ ଗୋଦାନ ଦେବେ । ଏଣୁ ସଙ୍ଗେ ସଙ୍ଗେ ଗାଈଟିଏ ଦରକାର । ତେବେ ୧୫/୨୦ ମିନିଟ୍ ଭିତରେ ବଦ୍ରୀ ଗାଈଟିଏ ଯୋଗାଡ଼ କରି ଟ୍ରକ୍‌ରେ ପଠାଇ ଦେଲେ । ଆମେ କାର୍‌ରେ ଗଲୁ ରାଷ୍ଟ୍ରପତି ନିଳୟ । ଆମେ ପହଞ୍ଚିବା ବେଳକୁ ରାଜେନ୍ଦ୍ର ବାବୁ ବାହାରେ ବସିଥାଆନ୍ତି । ଆମକୁ ଦେଖି ଛିଡ଼ାହୋଇ ନମସ୍କାର କଲେ । ସେ ବାପତୁଲ୍ୟ ବ୍ୟକ୍ତି । କାହିଁକି ଛିଡ଼ାହୋଇ ପଡିଲେ ବୋଲି ବଦ୍ରୀ ପଚାରିଲେ । ସେ କହିଲେ ତୁମେ ଗାଈ ନେଇକରି ଆସିଛ- ସେଇଥିପାଇଁ । 'ହିମାଳୟ ବଞ୍ଚାଅ' ଆନ୍ଦୋଳନରେ ଲୋହିଆଙ୍କ ପ୍ରତି ତାଙ୍କର ନିର୍ଭୀକ ସମର୍ଥନ ଅଥବା ଆମକୁ ଛିଡ଼ାହୋଇ ପଡ଼ି ନମସ୍କାର କରିବା ଭଳି ନମ୍ରତା ମୁଁ କେବେ ଭୁଲିପାରିବି ନାହିଁ ।

ମୋତେ ଥରେ ଡଃ. ଲୋହିଆଙ୍କ ସହିତ ସିକିମ୍ ରାଜଧାନୀ ଗ୍ୟାଙ୍ଗ୍‌ଟକ୍ ଯିବାର ସୁଯୋଗ ମିଳିଥିଲା । ସେତବେଳକୁ ଦଲାଇଲାମା ତିବ୍ବତ ଛାଡ଼ି ଭାରତ ଚାଲି ଆସିଥାଆନ୍ତି ଓ ଚୀନ୍ ତିବ୍ବତକୁ ପୁରା ଦଖଲ କରି ନେଇଥାଏ । ତିବ୍ବତରେ ଦଲାଇଲାମାଙ୍କର ଯେଉଁ ଅନୁଗତମାନେ ରହିଗଲେ ସେମାନେ ଚୀନ୍ ସହ ଲଢୁଥାଆନ୍ତି । ଚୀନ୍ ତିବ୍ବତ ଉପରେ ଅତ୍ୟାଚାର ଚଳାଇଥାଏ । ଦଲାଇଲାମା ସେତେବେଳେ ଯେଉଁ ପାର୍ବତ୍ୟ ରାସ୍ତାରେ ଭାରତ ଚାଲି ଆସିଥିଲେ ସେଇ ରାସ୍ତାଟି ଦେଖିବା ପାଇଁ ଆମେ ଗ୍ୟାଙ୍ଗ୍‌ଟକ୍ ଯାଇଥିଲୁ ।

ଜବାହରଙ୍କ ତିବ୍ବତ ସଂପର୍କୀୟ ଭୁଲ୍ ନୀତିର ଆଉ ଏକ ଫଳଶ୍ରୁତି ହେଲା ଚୀନ୍‌ର ଭାରତ ଆକ୍ରମଣ । ଜବାହରଙ୍କ ଦୁର୍ବଳ ନେତୃତ୍ୱ ହେତୁ ଚୀନ୍ ଆମକୁ ଆମ ଭୂଇଁରେ ହରାଇ ଦେଇ ପଳାଇଲା । ଦେଶ ବାହାରେ ଆମେ ହାସ୍ୟାସ୍ପଦ ହେଲୁ ଓ ଦେଶ ଭିତରେ ଲଜ୍ଜିତ ହେଲୁ । ଡ: ଲୋହିଆ ସେ ସମୟରେ ନେହେରୁ ସରକାରକୁ 'ଜାତୀୟ ଲଜ୍ଜାର ସରକାର' ବୋଲି ଘୋଷଣା କଲେ । ସେତେବେଳଯାଏ ଯେଉଁ ଲୋକେ ଡ: ଲୋହିଆଙ୍କୁ କେବଳ

ଜଣେ ବୁଦ୍ଧିବାଦୀ ରାଜନେତା ବୋଲି ଭାବୁଥିଲେ ସେମାନେ କ୍ରମଶଃ ବୁଝିବାକୁ ସକ୍ଷମ ହେଲେ ଯେ ସେ ଜଣେ ଦୂରଦ୍ରଷ୍ଟା ଜନନାୟକ । ସେ କେବଳ ନେହେରୁଙ୍କୁ ସମାଲୋଚନା କରିଦେଇ ବସିପଡ଼ିଲେ ନାହିଁ । ଏଭଳି ଜାତୀୟ ଲଜ୍ଜାର ସରକାରକୁ କୌଣସି ଦେଶଭକ୍ତ ବରଦାସ୍ତ କରିବା ଉଚିତ ନୁହେଁ ବୋଲି ତାଙ୍କର ମତ ଥିଲା । ସେଇଠୁ ଆରମ୍ଭ ହେଲା ତାଙ୍କର 'କଂଗ୍ରେସ ହଟାଓ, ଦେଶ ବଞ୍ଚାଅ' ଆନ୍ଦୋଳନ । ସେତେବେଳେ ଭାରତୀୟ ରାଜନୀତିରେ କଂଗ୍ରେସ ଏବଂ ନେହେରୁଙ୍କୁ ବାଦଦେଇ କିଛି କଳ୍ପନା କରାଯାଇ ପାରୁନଥିଲା । ଏପରିକି ଲାଗୁଥିଲା, ସତେକି ନେହେରୁ କେବଳ ଶାସକଦଳର ନୁହେଁ, ବିରୋଧୀ ଦଳର ମଧ ନେତା ! ସାଧାରଣ ଜନତା, ବୁଦ୍ଧିଜୀବୀ ଏପରିକି ଅନେକ ବିରୋଧୀଦଳ ଯେତେବେଳେ ଏହି ଭଳି ମାନସିକତାର ଶୀକାର ହୋଇଥିଲେ ସେତେବେଳେ ଡ: ଲୋହିଆଙ୍କର 'କଂଗ୍ରେସ ହଟାଓ, ଦେଶ ବଞ୍ଚାଓ' ଆନ୍ଦୋଳନ ଯେ ଏକ ଅରଣ୍ୟ ରୋଦନ ଅଥବା ନିଷ୍ଫଳ ପ୍ରୟାସରେ ପର୍ଯ୍ୟବେସିତ ହେବ - ଅନେକ ଏ ପ୍ରକାର ଆଶଙ୍କା କରୁଥିଲେ । ମାତ୍ର ଡ: ଲୋହିଆଙ୍କର ଜନନାୟକ ସୁଲଭ ଦୂରଦୃଷ୍ଟି, ଅସମ୍ଭବ ଧୈର୍ଯ୍ୟ ଏବଂ ଦକ୍ଷ ସାଂଗଠନିକ ଶକ୍ତି ହେତୁ କଂଗ୍ରେସର ତଥାକଥିତ ଦୁର୍ଜେୟ ଦୁର୍ଗ ଅଚିରେ ଟଳିପଡ଼ିଲା ।

ସେ ବିରୋଧୀ ଦଳମାନଙ୍କୁ ବୁଝାଇ ଦେଲେ ଯେ ଆସନ୍ନ ନିର୍ବାଚନରେ ପ୍ରତ୍ୟେକ ଦଳ ତା' ନିଜସ୍ୱ କାର୍ଯ୍ୟକ୍ରମକୁ ଜନସାଧାରଣଙ୍କ ଆଗରେ ଯେପରି ଚାହୁଁଛି ରଖୁ, ତଥାପି ଏଇ ଗୋଟିଏ କାର୍ଯ୍ୟକ୍ରମ ଉପରେ ସମସ୍ତେ ଏକମତ ହୁଅନ୍ତୁ ଯେ ଯେହେତୁ କଂଗ୍ରେସ ଆଜି ଏକ ଜାତୀୟ ଲଜ୍ଜାର ସରକାରରେ ପରିଣତ ହୋଇଛି ତାକୁ ଶାସନଗାଦିରୁ ହଟାଇବା ପାଇଁ ଐକ୍ୟବଦ୍ଧ ହେବା ସବୁ ଦଳର ପବିତ୍ର କର୍ତ୍ତବ୍ୟ । ଏଣୁ ଯେଉଁଠାରୁ କଂଗ୍ରେସ ପ୍ରାର୍ଥୀ ଛିଡ଼ା କରିବ ସେଠି ବିରୋଧୀ ଦଳମାନଙ୍କ ତରଫରୁ ମଧ ଗୋଟିଏ ପ୍ରାର୍ଥୀ ଦିଆଯିବ । ଇଏ ୧୯୬୨ ସାଲର କଥା । ଡ: ଲୋହିଆ ମୋତେ ଡାକି କହିଲେ ''ରବି, ଅନ୍ତତଃ ପଚାଶ ଜଣ ସମାଜବାଦୀ ଭାବାପନ୍ନ ପ୍ରାର୍ଥୀ ଏଥର ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇ ଆସିବା ଉଚିତ । ଜବାହରଲାଲ୍‌ଙ୍କ ବିରୁଦ୍ଧରେ ପାର୍ଲାମେଣ୍ଟରେ ଅବିଶ୍ୱାସ ପ୍ରସ୍ତାବ ସଫଳ ହୋଇ ପାରୁନାହିଁ କାରଣ ଏବେ ଯେଉଁମାନେ ବିରୋଧୀଦଳରେ ଅଛନ୍ତି ତାଙ୍କର କୌଣସି ମାନସିକ ଦୃଢ଼ତା ନାହିଁ କି ଆତ୍ମବିଶ୍ୱାସ ନାହିଁ । ସେମାନେ ଭାବିନେଇଛନ୍ତି ଯେ ଜବାହରଲାଲ କେବଳ ପ୍ରଧାନମନ୍ତ୍ରୀ ନୁହନ୍ତି ବସ୍ତୁତଃ ବିରୋଧୀ ଦଳର ମଧ ନେତା । ଡ: ଲୋହିଆଙ୍କ ବ୍ୟକ୍ତିତ୍ୱ ଏବଂ ପ୍ରଚେଷ୍ଟା ହେତୁ ସବୁଦଳ ଏକମତ ହେଲେ ଯେ ଯେଉଁଠି କଂଗ୍ରେସ ପ୍ରାର୍ଥୀ ଦେବ ସେଠି ଗୋଟିଏ ବିରୋଧୀ ପ୍ରାର୍ଥୀ ଛିଡ଼ା କରାଯିବ । ସେତିକିବେଳେ ସେ ମୋତେ ନିର୍ଦ୍ଦେଶ ଦେଲେ ଯେ ତୁମେ ନିର୍ବାଚନ ଲଢ଼ । ମାତ୍ର ବିଧାନସଭା ଗୁଡ଼ିକର ଅବସ୍ଥା ଯାହା ସେ ଦୃଷ୍ଟିରୁ ତୁମେ ପାର୍ଲାମେଣ୍ଟ ପାଇଁ ପ୍ରାର୍ଥୀ ହୁଅ । ସେ ଯାଏ ନିର୍ବାଚନ ଲଢ଼ିବା ସ୍ୱପ୍ନ ମୋ ମୁଣ୍ଡରେ ପଶି ନଥିଲା । ସେ ଖାଲି ମୋତେ ନିର୍ବାଚନ ଲଢ଼ିବା ପାଇଁ ନୁହେଁ ଏକାଥରେ ପାର୍ଲାମେଣ୍ଟ ପାଇଁ ନିର୍ବାଚନ ଲଢ଼ିବାକୁ ପ୍ରସ୍ତାବ ଦେଲେ । ସେବେଠାରୁ ମୁଁ କେବେ ବିଧାନସଭା ପାଇଁ ଲଢ଼ି ନାହିଁ କିମ୍ବା ଲଢ଼ିବା କଥା ଭାବିନାହିଁ ମଧ ।

ଏହି 'କଂଗ୍ରେସ ହଟାଓ' ଆନ୍ଦୋଳନ ଫଳରେ ସେଥରକ ଭାରତର ନଅଟି ରାଜ୍ୟରେ କଂଗ୍ରେସ ହଟିଲା । ଲୋହିଆ ନେହେରୁଙ୍କ ବିରୁଦ୍ଧରେ ପାର୍ଲାମେଣ୍ଟ ନିର୍ବାଚନ ଲଢ଼ିଥିଲେ । କିନ୍ତୁ ସଫଳ ହୋଇନଥିଲେ । ତା'ପରେ ଗୋଟିଏ ଉପନିର୍ବାଚନ ହେଲା ଉତ୍ତରପ୍ରଦେଶର ଫରୁକାବାଦରେ । ସବୁ ବିରୋଧୀଦଳ ମତ ଦେଲେ ଯେ ଡ: ଲୋହିଆ ପୁଣିଥରେ ସେଠୁ ନିର୍ବାଚନ ଲଢନ୍ତୁ । ଡ: ଲୋହିଆ ଏହି ନିର୍ବାଚନରେ ଜିତିଲେ । ସଂସଦୀୟ ଗଣତନ୍ତ୍ରର ଏଠି ଗୋଟାଏ ବିରାଟ ବିଜୟ ହେଲା ।

ମୁଁ ନିର୍ବାଚନ ପ୍ରଚାରରେ ଭାଗନେବାକୁ ସେଠାକୁ ଯାଇଥିଲି ଓ ଗୋଟିଏ ହରିଜନ ବସ୍ତିରେ ପ୍ରାୟ ଏକମାସ ରହି ଲୋହିଆଙ୍କ ପାଇଁ ପ୍ରଚାର କରିଥିଲି । ଆମେ ଯେଉଁ ସ୍ଲୋଗାନ ଦେଉଥିଲୁ ସେଥିରୁ ଗୋଟିଏ ଏବେବି ମନେ ଅଛି । "ରାଷ୍ଟ୍ରପତିକୋ ଦେ ଦୋ ତା'ର, ଗାଦି ଛୋଡ଼ୋ ଜବାହର ।" ୧୯୬୩ ମସିହାରେ ହୋଇଥିବା ତିନୋଟି ଉପ ନିର୍ବାଚନରେ ବିରୋଧୀଦଳର ତିନିଜଣ ତୁଙ୍ଗ ନେତା - ଡ: ଲୋହିଆ, ମିନୁ ମାସାନୀ ଓ କୃପାଳିନୀ ଜିତିଥିଲେ ।

୧୯୬୩ରେ ଡ: ଲୋହିଆ ସଂଯୁକ୍ତ ସୋସାଲିଷ୍ଟ ଦଳ ତରଫରୁ ପାର୍ଲାମେଣ୍ଟରେ ପ୍ରବେଶ କରିବା ଥିଲା ଏକ ଐତିହାସିକ ଘଟଣା । ସେ ପାର୍ଲାମେଣ୍ଟରେ ବସିବା ପରେ ପାର୍ଲାମେଣ୍ଟର କାୟାପଲଟ୍ ହୋଇଗଲା । ୧୯୫୦ ମସିହାରୁ ସେ ଯାବତ୍ ଜବାହରଲାଲଙ୍କ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ଆଣିବା ପାଇଁ କେହି ସାହସ କରି ନଥିଲେ । କାରଣ ପ୍ରସ୍ତାବ ଗୃହିତ ହେଉ ବା ନହେଉ କେବଳ ପ୍ରସ୍ତାବଟିର ଆଲୋଚନା ପାଇଁ ପଚାଶ ଜଣ ସଭ୍ୟ ଦରକାର । ସେତେବେଳେ ବିରୋଧୀଦଳରେ ଖୁବ୍ ଭଲ ଭଲ ଲୋକଥିଲେ । ମାତ୍ର ଅଧିକାଂଶଙ୍କର ନେହେରୁଙ୍କ ପ୍ରତି କିପରି ଏକ ଦୁର୍ବଳତା ରହିଥିଲା । ସେମାନେ ଏପରି ବ୍ୟବହାର କରୁଥିଲେ ଯେ ଲାଗିବ ସତେକି ନେହେରୁ କେବଳ ସରକାରୀ ଦଳ ନୁହେଁ, ତାଙ୍କ ଦଳର ମଧ ନେତା । ପୂର୍ବରୁ କହିଛି, ଲୋହିଆ ପ୍ରଥମ ବ୍ୟକ୍ତି ଯିଏ ଏହି ମାନସିକତା ଉପରେ କୁଠାରାଘାତ କଲେ । ଗୋଟିଏ ଗଣତନ୍ତ୍ରରେ ବିରୋଧୀଦଳ ବିକଳ୍ପ ନୀତି ଉପରେ ଜନସାଧାରଣଙ୍କୁ ପାର୍ଲାମେଣ୍ଟ ବାହାରେ ସଂଗଠିତ କରିବ ଏବଂ ପାର୍ଲାମେଣ୍ଟ ଭିତରେ ସେହି ନୀତି ଗୁଡ଼ିକୁ ପ୍ରତିପାଦିତ କରି ସେଥିପାଇଁ ଲଢ଼ିବ । ଏ ଯାଏ ଏ କାମ ପାର୍ଲାମେଣ୍ଟ ଭିତରେ ହୋଇନଥିଲା ।

ଅନାସ୍ଥା ପ୍ରସ୍ତାବ ଉପରେ ସବୁ ବିରୋଧୀଦଳଙ୍କୁ ଏକମତ କରାଇବା କାଠିକର ପାଠ ଥିଲା । ତଥାପି ଡ: ଲୋହିଆ ଧୈର୍ଯ୍ୟର ସହିତ ଆଗେଇଲେ । ଏ ଦିଗରେ ଡ: ଲୋହିଆ ଦୁଇଟି ପଦକ୍ଷେପ ନେଲେ । ପ୍ରଥମତଃ, ସବୁ ବିରୋଧୀଦଳଙ୍କୁ ଅନାସ୍ଥା ପ୍ରସ୍ତାବ ଉପରେ ସହମତ କରାଇବା । ଦ୍ୱିତୀୟତଃ, ଦେଶରେ ଶୋଷଣ ଏବଂ ତଦ୍‌ଜନିତ ଦାରିଦ୍ର୍ୟ କେଉଁ ସ୍ତରରେ ଅଛି ସେ ସଂପର୍କରେ ପାର୍ଲାମେଣ୍ଟରେ ଏକ ବିତର୍କ ସୃଷ୍ଟି କରିବା । ପ୍ରଥମ ପଦକ୍ଷେପ ସ୍ୱରୂପ, ସେ ଗୋଟିଏ ନୀତି ନିର୍ଦ୍ଧାରଣ କଲେ ଯେ ଅନାସ୍ଥା ପ୍ରସ୍ତାବ ଆଲୋଚନାବେଳେ ପ୍ରତ୍ୟେକ ଦଳ ତାଙ୍କ ନିଜ ଦଳର ଆଦର୍ଶ ଓ ନୀତିକୁ ଭିତ୍ତିକରି ନିଜର ବକ୍ତବ୍ୟ ରଖିବେ

ମାତ୍ର ଅନାସ୍ଥା ପ୍ରସ୍ତାବଟି ମାତ୍ର ଗୋଟିଏ ବାକ୍ୟରେ ଆଗତ କରାଯିବ, ଯଥା: "ଏ ଗୃହ ନେହେରୁ ସରକାର ଉପରେ ଅବିଶ୍ୱାସ ପ୍ରସ୍ତାବ ଆଗତ କରୁଛି ।" ଜେ. ବି. କୃପାଳିନୀ ସେ ପ୍ରସ୍ତାବ ଆଗତ କଲେ । ମୁଁ ସେଦିନ ଦର୍ଶକ ଗ୍ୟାଲେରୀରେ ବସିଥିଲି । ପ୍ରସ୍ତାବଟି ଯଦିଓ କାଟ ଖାଇଗଲା ତଥାପି ସଂସଦ ସଭ୍ୟମାନଙ୍କର ଏବଂ ସମଗ୍ର ଦେଶର ମନଃସ୍ଥିତି ବଦଳାଇ ଦେବାରେ ଏହା ବହୁପରିମାଣରେ ସାହାଯ୍ୟ କଲା । କଂଗ୍ରେସ ଯାବତ୍ ଚନ୍ଦ୍ରାର୍କ ଭାରତକୁ ଶାସନ କରିବ ଏବଂ ନେହେରୁ ଜଣେ ନିଷ୍କଳଙ୍କ, ଅପ୍ରତିଦ୍ୱନ୍ଦୀ ନେତା – ଏ ଧାରଣା ମୂଳରେ ଏହି ଅନାସ୍ଥା ପ୍ରସ୍ତାବ କୁଠାରାଘାତ କଲା ।

ଦ୍ୱିତୀୟ ପଦକ୍ଷେପର ଉଦ୍ଦେଶ୍ୟ ଥିଲା ସଂସଦ ଯେ ଲୋକଙ୍କ ଦୁଃଖସୁଖର ଏକ ଦର୍ପଣ – ତାର ଏହି ଭୂମିକା ସଂପର୍କରେ ସଂସଦ ସଭ୍ୟ ତଥା ଜନସାଧାରଣଙ୍କୁ ସଚେତନ କରାଇବା । ଦେଶରେ ଦାରିଦ୍ର୍ୟ କେଉଁ ସ୍ତରରେ ଅଛି ତାହା ଦର୍ଶାଇ ସେ ନେହେରୁ ସମାଜବାଦର ମୁଖା ଖୋଲି ଦେଇ ଥିଲେ । ଏ ସଂପର୍କରେ ସେ ପାର୍ଲାମେଣ୍ଟରେ ଯେଉଁ ବିତର୍କ ଆରମ୍ଭ କଲେ ତାହା "ତିନିଅଣା ବନାମ ପନ୍ଦର ଅଣା" ବିତର୍କ ରୂପେ ପରିଚିତ । ଯୋଜନା କମିଶନ (ଆୟୋଗ) ଦେଇଥିବା ରିପୋର୍ଟକୁ ଭିତ୍ତିକରି ଲୋହିଆ ପ୍ରମାଣ କଲେ ଯେ ଭାରତ ବର୍ଷର ୨୭ କୋଟି ଲୋକଙ୍କର ଦୈନିକ ଆୟ ତିନିଅଣା ।

ଡ: ଲୋହିଆ ସେଠି ଗୋଟିଏ ଉଦାହରଣ ଦେଲେ ଯାହା ଆମ ପାଇଁ କୌତୂହଳୋଦ୍ଦୀପକ । ଏହି ବିତର୍କ ଆରମ୍ଭ କରିବାର ଛଅ ବର୍ଷ ପୂର୍ବରୁ ଅର୍ଥାତ୍ ୧୯୫୭ରେ ଡ: ଲୋହିଆ ଓଡ଼ିଶା ଗସ୍ତରେ ଆସି ତିର୍ତ୍ତୋଲ (ସେତେବେଳେ କଟକ ଜିଲ୍ଲା, ଏବେ ଜଗତ୍ସିଂପୁର ଜିଲ୍ଲା) ଯାଇଥାଆନ୍ତି । ତିର୍ତ୍ତୋଲ ହାଇସ୍କୁଲରେ ତାଙ୍କର ରାତି ରହଣି ହେଲା । ସକାଳୁ ତାଙ୍କୁ କେନାଲ୍ କୂଳକୁ ଝାଡ଼ାଯିବା ପାଇଁ ପଡ଼ିଲା । ମୁଁ ତାଙ୍କ ସହିତ ହାଲଟିଏ ଧରି ଚାଲିଲି । ନିତ୍ୟକର୍ମ ସାରି ସେ ଦେଖିଲେ ଯେ କେତେଜଣ ପିଲା ଅଳ୍ପ ଅଳ୍ପ ପାଣିରୁ ମାଛ ଧରୁଛନ୍ତି । ସେ ମୋତେ କହିଲେ, 'ରବି, ସେ ପିଲାଙ୍କୁ ଡାକ୍ ।' ମୁଁ ଡାକିଲି । ସେ ପିଲାଙ୍କୁ ଡ:ଲୋହିଆ ସରଳ ହିନ୍ଦୀରେ ପଚାରିଲେ, "ତୁମେ ଏ ମାଛ ଧରି କ'ଣ କରିବ ?" ଗୋଟିଏ ପିଲା କହିଲା, "ଆମେ ଆଜୁ ବିକିବୁ ।" ଲୋହିଆ ପୁଣି ପଚାରିଲେ,"କେତେ ପାଇବ ?" ତାପରେ ସେ ନିଜେ ହିସାବ କିତାବ କଲେ । ସେ ସେଠି ଲୋକଙ୍କର ଆୟ ଦୈନିକ ତିନିଅଣା ବୋଲି ବାହାର କଲେ । ପାର୍ଲାମେଣ୍ଟରେ ଉପରୋକ୍ତ ବିତର୍କ ବେଳେ ସେ ଏହି ଘଟଣାଟି କହିଲେ ଏବଂ ଏହି ପ୍ରସଙ୍ଗରେ ଗୋଟିଏ ବାକ୍ୟ କହିଲେ, "ମୋ ଭଳିଆ ଲୋକ ଏ ଦାରିଦ୍ର୍ୟ ଦେଖି କାହିଁକି ବଞ୍ଚିଛି ? ଯେଉଁ ବୟସରେ ପିଲାଟି ପାଠ ପଢ଼ିବା କଥା, ସେ ପାଠ ନପଢ଼ି ମାଛ ଧରୁଛି ।''

ଡ: ଲୋହିଆ ନେହେରୁଙ୍କୁ ଆହ୍ୱାନ ଜଣାଇ କହିଲେ, ''ଜବାହର, ତୁମର ପରିସଂଖ୍ୟାନ ଭୁଲ୍ । ତୁମ ଅମଲାତନ୍ତ୍ର ଆଉ ଅର୍ଥନୀତିଜ୍ଞମାନେ ତୁମକୁ ବିଭ୍ରାନ୍ତିକର ତଥ୍ୟ ଯୋଗାଇଛନ୍ତି । ପ୍ରକୃତ ତଥ୍ୟ ହେଉଛି ୩ ଅଣା ବନାମ ୧୫ ଅଣାର ତର୍କ ।'' ସବୁ ଖବର କାଗଜ ସେତେବେଳେ ଲେଖିଥିଲେ ଯେ ଡ:ଲୋହିଆ ପାର୍ଲାମେଣ୍ଟରେ ନେହେରୁ ସରକାରର ସବୁ ଗୁମର ପଦାରେ ପକାଇଦେଲେ ।

ଭାରତ ବର୍ଷର ଉତ୍ତର ପୂର୍ବାଞ୍ଚଳ, ଅର୍ଥାତ୍, ବର୍ମା ଓ ଚାଇନା ଇତ୍ୟାଦି ଦେଶର ସୀମାକୁ ଛୁଇଁଥିବା ଅଞ୍ଚଳ ଗୁଡ଼ିକ ରାଜଧାନୀ ଦିଲ୍ଲୀଠାରୁ ପ୍ରାୟ ହଜାର ହଜାର ମାଇଲ ଦୂରରେ ଅବସ୍ଥିତ। ସେହିମାନଙ୍କ ମଧ୍ୟରୁ ଗୋଟିଏ ରାଜ୍ୟ ହେଉଛି ମଣିପୁର। ତାର ସାହିତ୍ୟ, ସଂସ୍କୃତି ଓ ପରଂପରା ଥିଲା ଖୁବ୍ ସମୃଦ୍ଧ। ମୁଁ ୧୯୬୦ରେ ଯେତେବେଳେ ସୋସାଲିଷ୍ଟ ପାର୍ଟିର ସାଧାରଣ ସଂପାଦକ ହେଲି ସେତେବେଳେ ମୋର ସବୁଠାରୁ ବଡ଼ କାର୍ଯ୍ୟଥିଲା ଭାରତବର୍ଷରେ ବିଭିନ୍ନ ରାଜ୍ୟ ଗସ୍ତ କରି ପାର୍ଟିକୁ ସଂଗଠିତ କରିବା। ସେହି ପରିପ୍ରେକ୍ଷୀରେ ମୁଁ ଡଃ ଲୋହିଆଙ୍କ ନିର୍ଦ୍ଦେଶରେ ମଣିପୁର ଯାଇଥିଲି। ମଣିପୁର ସେତେବେଳକୁ ରାଜ୍ୟ ମାନ୍ୟତା ପାଇ ନଥାଏ। ତେଣୁ ତାହା ଦିଲ୍ଲୀ ଅଧୀନସ୍ଥ ଏକ କେନ୍ଦ୍ରଶାସିତ ଅଞ୍ଚଳ ଭାବେ ପରିଗଣିତ ହେଉଥିଲା। ମଣିପୁର ବାସୀଙ୍କୁ କେନ୍ଦ୍ର ସରକାର ଯେପରି ନ୍ୟାୟ ଦେବା କଥା ସେପରି ଦେଉନଥିଲେ। ସେମାନଙ୍କର ଏକ ବଦ୍ଧମୂଳ ଧାରଣା ହୋଇଯାଇଥିଲା ଯେ ସେମାନେ ଯେହେତୁ ଦିଲ୍ଲୀଠାରୁ ବହୁଦୂରରେ ରହୁଛନ୍ତି ତାଙ୍କର ଉନ୍ନତି ତଥା ବିକାଶ ପାଇଁ କେହି ମୁଣ୍ଡ ଖେଳାଉନାହାନ୍ତି। ନିଜକୁ ଅନ୍ୟରାଜ୍ୟ ଠାରୁ କିଭଳି ଏକ ହୀନ ମନେ କରୁଥିଲେ ସେମାନେ। ଏହି ସମୟରେ ଡଃ ଲୋହିଆ ମଣିପୁର ବାସୀଙ୍କ ମନରୁ ସେଇ ହୀନମନ୍ୟତାକୁ ଦୂରେଇ ଦେବାପାଇଁ ବିଭିନ୍ନ ପ୍ରଚେଷ୍ଟା କରିଥିଲେ। ମଣିପୁର ବାସୀଙ୍କ ମନରେ ସୃଷ୍ଟି ହୋଇଥିବା ଏହି ଭାବ ଯେ ଦିନେ ଦେଶର ଏକତାକୁ ବିପନ୍ନ କରିବ ଏହା ଲୋହିଆଙ୍କୁ ବେଶ୍ ଜଣାଥିଲା। ସେ ତେଣୁ ମଣିପୁରବାସୀଙ୍କ ନ୍ୟାଯ୍ୟ ଅଧିକାରକୁ ସମ୍ମାନ ଜଣାଇ ସେଠାରେ ଆନ୍ଦୋଳନ ଆରମ୍ଭ କରିଥିଲେ। ଆମ୍ଭେମାନେ ମଧ୍ୟ ସେ ଆନ୍ଦୋଳନରେ ସାମିଲ ହୋଇ ବହୁବାର ମଣିପୁର ଯାଇଥିଲୁ। ମଣିପୁରବାସୀଙ୍କ ଜୀବନ ଶୈଳୀ ମୋତେ ଖୁବ୍ ଆକୃଷ୍ଟ କରିଥିଲା। ସେଠାକାର ସ୍ତ୍ରୀ ଲୋକମାନଙ୍କ କାର୍ଯ୍ୟକ୍ଷମତା ଏତେ ଉନ୍ନତ ଓ ଉଚ୍ଚକୋଟୀର ଯାହା ଜଣେ ନ ଦେଖିଲେ ବିଶ୍ୱାସ କରିପାରିବନାହିଁ। ଏପରିକି ହାଟ ବଜାର ମଧ୍ୟ ମହିଳାମାନଙ୍କ ଦ୍ୱାରା ପରିଚାଳିତ ହେଉଥିବାର ମୁଁ ଲକ୍ଷ୍ୟ କରିଥିଲି। ଡଃ ଲୋହିଆ ମଣିପୁରବାସୀଙ୍କ ସାମ୍ବିଧାନିକ ଅଧିକାର ପାଇଁ ଆନ୍ଦୋଳନ କରିଥିଲେ ଏବଂ ଜେଲ୍ ମଧ୍ୟ ଯାଇଥିଲେ। ୧୯୫୨ରେ ମଣିପୁରରେ ଯେଉଁ ପ୍ରଥମ ନିର୍ବାଚନ ହେଲା ସେଥିରେ ମଣିପୁରର ଦୁଇଟିଯାକ ଆସନରେ ସମାଜବାଦୀ ଦଳ ବିଜୟଲାଭ କଲା। ଯେଉଁ ଦୁଇଜଣ ବିଜୟୀ ହେଲେ ସେମାନେ ହେଉଛନ୍ତି ଅଚାଉସିଂହ ଏବଂ ରିଂଶାଂ କିସାଙ୍ଗ। ତେବେ ରିଶାଂ କିସାଙ୍ଗ ପରମୁହୂର୍ତ୍ତରେ ସମାଜବାଦୀ ଦଳ ଛାଡ଼ି ଦେଇଥିଲେ। ଲୋହିଆଙ୍କ ସମାଜବାଦୀ ପାର୍ଟିରୁ ସେ ବିଜୟୀ ହୋଇଥିଲେ ସତ ମାତ୍ର ନିଜର ବ୍ୟକ୍ତିଗତ ସ୍ୱାର୍ଥ ଦୃଷ୍ଟିରୁ ସେ କଂଗ୍ରେସ ପାର୍ଟିକୁ ଚାଲିଯାଇ ମଣିପୁରର ମୁଖ୍ୟମନ୍ତ୍ରୀ ହୋଇଗଲେ। ସେ ଜଣେ ନାଗା ଥିଲେ। ଲୋହିଆ ତାଙ୍କୁ ଏକ ଅପ୍ରତିଦ୍ୱନ୍ଦୀ ନେତା ଭାବେ ଗଢ଼ିବାକୁ ଚାହୁଁଥିଲେ। କାରଣ ସେତେବେଳକୁ ନାଗାଲାଣ୍ଡରେ ନାଗା ନେତା ଫିଜୋ ନାଗାଲାଣ୍ଡକୁ ଭାରତ ଠାରୁ ଅଲଗା କରିବାକୁ ଚାହୁଁଥିଲେ। ସେ ଜଣେ ଭୟଙ୍କର ଭାରତ ବିରୋଧୀ ବ୍ୟକ୍ତିଥିଲେ। ସେଥିପାଇଁ ଡଃ ଲୋହିଆଙ୍କର ଉଦ୍ଦେଶ୍ୟ ଥିଲା ଯେ ସେ ରିଶାଂ କିସାଙ୍ଗଙ୍କୁ ଫିଜୋଙ୍କର ଏକ ଯଥାର୍ଥ ପ୍ରତିଦ୍ୱନ୍ଦୀ ଭାବରେ ଛିଡ଼ା କରାଇବେ, ଯିଏକି ଫିଜୋଙ୍କୁ ସଫଳତାର ସହିତ ମୁକାବିଲା କରିପାରିବ। ମାତ୍ର ତା' ହେଲା ନାହିଁ। ସମୟ ସ୍ରୋତରେ

ଅନେକ ସମାଜବାଦୀ ଏହିପରି ବାଟ ହୁଡିଲା ପରି ରିଶାଂ କିସାଂଙ୍ଗ ବାଟହୁଡି ଯାଇଥିଲେ । କ୍ଷମତାଲାଳସା ତାଙ୍କୁ ଜଣେ ସଫଳ ଜନନେତା ହେବା ପରିବର୍ତ୍ତେ ମୁଖ୍ୟମନ୍ତ୍ରୀ ହେବାକୁ ବାଧ କରିଥିଲା । ତାଙ୍କ ସହିତ ମୋର ଘନିଷ୍ଠ ବଂଧୁତ୍ୱ ରହିଥିଲା । ତେବେ, ସେ ସମାଜବାଦୀ ପାର୍ଟି ଛାଡିବା ପରେ ତାଙ୍କ ସହିତ ମୋର ପ୍ରାୟ ଆଉ ସମ୍ପର୍କ ରହି ନଥିଲା । ଡ଼ଃ ଲୋହିଆ ମଣିପୁରବାସୀଙ୍କ ଅଧିକାର ପାଇଁ ଯେଉଁ ଆନ୍ଦୋଳନ ଚଳାଇଥିଲେ ତାହାର ଯଥେଷ୍ଟ ଆବଶ୍ୟକତା ରହିଥିଲା । କାରଣ ଲୋହିଆ ଭଲଭାବରେ ଜାଣିଥିଲେ ଯେ ଆମେ ଯଦି ସୀମାନ୍ତ ଅଞ୍ଚଳରେ ରହୁଥିବା ଲୋକମାନଙ୍କୁ ଉପଯୁକ୍ତ ସୁରକ୍ଷା ନ ଦେବା ତାହାଲେ ସେମାନେ ଯେ କୌଣସି ମୂହୁର୍ତ୍ତରେ ବିଦେଶୀ ଆକ୍ରମଣର ଶିକାର ହେବେ ଫଳରେ ଦେଶର ଏକତା ନଷ୍ଟ ହେବ । ତେଣୁ ସେମାନଙ୍କୁ ଯଦି ଉପଯୁକ୍ତ ସୁବିଧା ସୁଯୋଗ ଦିଆଯିବ, କିମ୍ବା ବଞ୍ଚିବା ପାଇଁ ସେମାନେ ଯଦି ଅନ୍ୟାନ୍ୟ ରାଜ୍ୟଭଳି ସମାନ ଅଧିକାର ପାଇବେ ତାହାଲେ ତାଙ୍କର ଭାରତ ପ୍ରତି ଆନୁଗତ୍ୟ ଅତୁଟ ରହିବ, ନଚେତ୍ ତାଙ୍କ ମନରେ ଏକ ବିଛିନ୍ନତା ମନୋଭାବ ସୃଷ୍ଟି ହେବ । କେବଳ ସେହି ଉଦ୍ଦେଶ୍ୟରେ ଲୋହିଆ ସେଠାକାର ଲୋକମାନଙ୍କ ଦାବୀକୁ ପାର୍ଲାମେଣ୍ଟରେ ପହଞ୍ଚାଇଥିଲେ ଏବଂ ତା ଦ୍ୱାରା ସୀମାନ୍ତ ଅଞ୍ଚଳରେ ଲୋକମାନଙ୍କର ଭାରତପ୍ରତି ମମତ୍ୱବୋଧ ପୁନଶ୍ଚ ବୃଦ୍ଧିପାଇଥିଲା ।

ଚୀନ୍ ଆକ୍ରମଣ ପରଠାରୁ ଡ: ଲୋହିଆଙ୍କ ଅକ୍ଳାନ୍ତ ଉଦ୍ୟମ ଫଳରେ କଂଗ୍ରେସ ଓ ନେହେରୁଙ୍କ ଭାବମୂର୍ତ୍ତୀ ଖଣ୍ଡ ବିଖଣ୍ଡ ହେବାରେ ଲାଗିଲା । ୧୯୬୩ ମସିହା ନିର୍ବାଚନର ତିନୋଟି ଯାକ ଉପନିର୍ବାଚନରେ କଂଗ୍ରେସ ହାରିଲା । ଡ: ଲୋହିଆଙ୍କ ସମେତ ଆଉ ଦୁଇଜଣ ବିରୋଧୀ ଦଳରୁ ନିର୍ବାଚିତ ହେଲେ । ଡ: ଲୋହିଆଙ୍କ ଯୁଦ୍ଧ କୌଶଳ ଯେ ଠିକ୍ ଲାଇନ୍‌ରେ ଅଛି ଓ କଂଗ୍ରେସର ଦୁର୍ଗ ଯେ ଅଭେଦ୍ୟ ନୁହେଁ ଏ ବିଶ୍ୱାସ ଉଭୟ ବିରୋଧୀଦଳ ନେତା ଏବଂ ଜନସାଧାରଣଙ୍କ ଭିତରେ ସୃଷ୍ଟିହେଲା । ଦେଶରେ ସୃଷ୍ଟିହୋଇଥିବା ଏହି ପରିବର୍ତ୍ତିତ ମନଃସ୍ଥିତିର ସୁଯୋଗ ନେଇ ଡ: ଲୋହିଆ ଆରମ୍ଭ କଲେ ତାଙ୍କର "କଂଗ୍ରେସ ହଟାଓ, ଦେଶ୍ ବଞ୍ଚାଓ" ଆନ୍ଦୋଳନ । ଏଥର ମଧ ବିରୋଧୀ ଦଳମାନଙ୍କ ପ୍ରତି ଡ: ଲୋହିଆଙ୍କର ସେହି ଗୋଟିଏ ଅନୁରୋଧ ଥିଲା , ତୁମେ ପାର୍ଲାମେଣ୍ଟ ଭିତରେ ଓ ବାହାରେ ତୁମର ଆଦର୍ଶଗତ ବୈଶିଷ୍ଟ୍ୟକୁ ରକ୍ଷାକରିବା ପାଇଁ ଯାହା କାର୍ଯ୍ୟକ୍ରମ ନେଉଛ ନିଅ, ନିଜ ଭିତରେ ଯେତେ ଆଦର୍ଶଗତ ସଂଘର୍ଷ ଛିଡ଼ା କରୁଛ କର । ମାତ୍ର ଏକ ନ୍ୟୁନତମ କାର୍ଯ୍ୟକ୍ରମ ଉପରେ ସମସ୍ତେ ଏକମନ ହୋଇ ଲଢ଼ । ସମସ୍ତେ ସହମତ ହେବା ଭଳି କାର୍ଯ୍ୟକ୍ରମଟି ହେଲା ବିଧାନସଭା ଅଥବା ପାର୍ଲାମେଣ୍ଟ ପାଇଁ କଂଗ୍ରେସ ଯେଉଁଠି ପ୍ରାର୍ଥୀ ଛିଡ଼ା କରିବ ସେଠି ତା ବିରୁଦ୍ଧରେ ନିଶ୍ଚୟ ଜଣେ ବିରୋଧୀଦଳ ପ୍ରାର୍ଥୀ ଛିଡ଼ା ହେବ । ଡ: ଲୋହିଆଙ୍କ କାର୍ଯ୍ୟକ୍ରମ ଅହି-ନକୁଳ ସଂପର୍କ ରଖୁଥିବା କମ୍ୟୁନିଷ୍ଟ ଓ ସ୍ୱତନ୍ତ୍ର ଦଳକୁ ମଧ ଗୋଟିଏ ମଞ୍ଚ ଉପରକୁ ନେଇ ଆସିପାରିଲା । ୧୯୬୭ ମସିହା ସାଧାରଣ ନିର୍ବାଚନରେ ବିରୋଧୀ ଦଳମାନଙ୍କ ପକ୍ଷରୁ ଉଭୟ ଆସେମ୍ବ୍ଲି ଓ ପାର୍ଲାମେଣ୍ଟ ପାଇଁ କଂଗ୍ରେସ ବିରୁଦ୍ଧରେ ଗୋଟିଏ ଲେଖା ପ୍ରାର୍ଥୀ ଦେବା ପ୍ରସ୍ତାବ କାର୍ଯ୍ୟକାରୀ ହେଲା ।

୧୯୬୫ ସାଲରେ ଡ: ଲୋହିଆଙ୍କ ଗସ୍ତ ପଡ଼ିଲା ଯୁକ୍ତରାଷ୍ଟ୍ର ଆମେରିକାକୁ । ଲୋହିଆ ଆମେରିକା ଗଲେ ଆରିଜୋନା ବିଶ୍ୱବିଦ୍ୟାଳୟରେ ଭାଷଣ ଦେବାକୁ । ସେଠାରେ ଗୋଟିଏ ଘଟଣା ଘଟିଲା । ଉକ୍ତ ବିଶ୍ୱବିଦ୍ୟାଳୟର ଜଣେ ନାରୀ ଅଧାପିକା ଡ: ଲୋହିଆଙ୍କୁ ନିମନ୍ତ୍ରଣ କରି ନେଇଥିଲେ ସ୍ଥାନୀୟ ଏକ ଚା' ରେଷ୍ଟୋରାଁକୁ ଚା' ପିଇବା ପାଇଁ । ଆମେରିକାର ସେ ରାଜ୍ୟରେ ଉକ୍ଟ ବର୍ଣ୍ଣବୈଷମ୍ୟ ନୀତି ସେ ପର୍ଯ୍ୟନ୍ତ ଆଇନସିଦ୍ଧ ଥିଲା । ଡ: ଲୋହିଆ କଳାଲୋକ ହୋଇ ଗୋରା ଲୋକଙ୍କ ପାଇଁ ଉଦ୍ଦିଷ୍ଟ ଜଳଖିଆ ଦୋକାନରେ ପ୍ରବେଶ କରିଥିବାରୁ ତାଙ୍କୁ ଗିରଫ କରାଗଲା । ଏ ଖବର କିନ୍ତୁ ବିଜୁଳି ବେଗରେ ସମଗ୍ର ବିଶ୍ୱରେ ପ୍ରଚାରିତ ହୋଇଗଲା । ସେତେବେଳେ ଆମେରିକାର ରାଷ୍ଟ୍ରପତି ଥାଆନ୍ତି ଜନ୍‌ସନ୍ । ତାଙ୍କ କାନରେ ଏ ଖବର ପଡନ୍ତେ ସେ ତତ୍‌କ୍ଷଣାତ୍ ଡ: ଲୋହିଆଙ୍କୁ ଖଲାସ କରିଦେବା ପାଇଁ ଆରିଜୋନା ସରକାରଙ୍କୁ ନିର୍ଦ୍ଦେଶ ଦେଲେ ଓ ଡ: ଲୋହିଆଙ୍କୁ କ୍ଷମାମାଗି ସର୍ବସାଧାରଣରେ ଏକ ବିବୃତ୍ତି ଦେଲେ । ତାର ପ୍ରତିକ୍ରିୟା ସ୍ୱରୂପ ଡ: ଲୋହିଆ ଯାହା କହିଥିଲେ ତାହା ସମଗ୍ର ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେ କହିଥିଲେ ରାଷ୍ଟ୍ରପତି ମହାଶୟ, "ଆପଣ ମୋତେ କ୍ଷମା ମାଗନ୍ତୁ ନାହିଁ, କ୍ଷମା ମାଗନ୍ତୁ ପୃଥିବୀର ଚାରିଶହ କୋଟି ଲୋକଙ୍କ ପାଖରେ, ଆପଣଙ୍କ ସମ୍ବିଧାନ ନିକଟରେ ଏବଂ ଆପଣଙ୍କର Statue of Liberty ନିକଟରେ ।" ସେ ସମୟରେ ଅନେକ ସମ୍ବାଦପତ୍ର ଚିକାଗୋ ବକ୍ତୃତା ମାଧମରେ ଆମେରିକା ମାଟିରେ ଭାରତୀୟ ସଂସ୍କୃତିର ପ୍ରଥମ ବିଜୟବାନା ଉଡ଼ାଇଥିବା ସ୍ୱାମୀ ବିବେକାନନ୍ଦଙ୍କ ସହ ଡ:ଲୋହିଆଙ୍କ ବ୍ୟକ୍ତିତ୍ୱର ଏବଂ ଏହି ଘଟଣାର ତୁଳନା କରିଥିଲେ ।

ଡ: ଲୋହିଆ ଆମେରିକାରେ ଥିବାବେଳେ ନେହେରୁଙ୍କର ମୃତ୍ୟୁ ଘଟିଥିଲା ଭାରତରେ । ଇଏ ୧୯୬୫ ସାଲକଥା । ନେହେରୁଙ୍କ ପରେ ତାଙ୍କ କନ୍ୟା ଇନ୍ଦିରା ପ୍ରଧାନମନ୍ତ୍ରୀ ହେଲେ ।

'କଂଗ୍ରେସ ହଟାଓ' ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ମୋତେ ଥରେ ଡ: ଲୋହିଆ ଡାକି ପଚାରିଲେ, "ତମେ କେବେ ନିର୍ବାଚନ ଲଢ଼ି ନାହଁ ?" ମୁଁ ଉତ୍ତର ଦେଲି, "ନାଁ" । ସେ କହିଲେ- କହିଲେ ତ ନୁହେଁ, ନିର୍ଦ୍ଦେଶ ଦେଲେ - "ତୁମେ ତାହେଲେ ପାର୍ଲାମେଣ୍ଟ୍ ପାଇଁ ପ୍ରାର୍ଥୀ ହୁଅ ।" ମୁଁ ମନେ ମନେ ଠିକ୍ କଲି ଯେ ମୁଁ ପ୍ରାର୍ଥୀ ହେବି । ଏହା ଫଳରେ 'କଂଗ୍ରେସ ହଟାଓ' ଆନ୍ଦୋଳନର ନେତୃତ୍ୱ ପରି ଗୁରୁଦାୟିତ୍ୱ ସ୍ୱାଭାବିକ ଭାବେ ମୋତେ ନେବାକୁ ପଡ଼ିଲା । ଏହି ପରିପ୍ରେକ୍ଷୀରେ ମୁଁ ଆମ ଦଳର ଏମ୍.ଏଲ୍.ଏ ଗଣନାଥ ପ୍ରଧାନଙ୍କ ସହିତ ତାଙ୍କ ଭୁବନେଶ୍ୱର କ୍ୱାଟରରେ ବସି ଆଲୋଚନା କରୁଛି ହଠାତ୍ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ପାଖରୁ ଗୋଟାଏ ଫୋନ୍ ଆସିଲା ଯେ ସେ ଆସିବାକୁ ଚାହୁଁଛନ୍ତି । ଆମେ ଖୁସି ହୋଇଗଲୁ । ତାଙ୍କ ଆସିବା ବାଟକୁ ଉତ୍‌କଣ୍ଠିତ ହୋଇ ଚାହିଁ ରହିଲୁ । ନବବାବୁ ତାଙ୍କ ସାନଝିଅ ତିନୁର ସାଇକେଲ ଚଢ଼ି ଆସି ପହଞ୍ଚିଲେ । ମୁଁ ତାଙ୍କୁ ପଚାରିଲି, "ଆପଣ ଝାଳନାଳ ହୋଇ ତିନୁ ସାଇକେଲ୍‌ଟା ଚଢ଼ି କାହିଁକି ଆସୁଥିଲେ ?" ସେତେବେଳକୁ ସେ ଖୁବ୍ ଖୁସି ଥିବାଭଳି ଲାଗୁଥିଲେ । Excited ହୋଇ କହିଲେ "ମୋତେ ଭଲ ଲାଗିଲା ଆସିବାକୁ ।

ସେଇଥିପାଇଁ ସେମିତି ଚାଲି ଆସିଲି ।" ତାପରେ ମୋର, ତାଙ୍କର ଓ ଗଣନାଥ ବାବୁଙ୍କର ଆଲୋଚନା ହେଲା । ସେ କହିଲେ ଓଡ଼ିଶାରେ "କଂଗ୍ରେସ ହଟାଓ" ଆନ୍ଦୋଳନର ପ୍ରଥମ ସଭା ଭୁବନେଶ୍ୱରରେ ହେବ । ୨/୩ ଦିନପରେ ତାରିଖ ସ୍ଥିର ହେଲା । ବିଜୁଳି ବେଗରେ ଚାରିଆଡ଼େ ଏ କଥା ବ୍ୟାପିଗଲା ଯେ ନବକୃଷ୍ଣ ଚୌଧୁରୀ 'କଂଗ୍ରେସ ହଟାଓ' ସଂପର୍କରେ କହିବେ । ସଭା ହେଲା । ସେ ସଭାରେ ଗଣନାଥ ପ୍ରଧାନ ସଭାପତିତ୍ୱ କଲେ । ନବବାବୁ ଏବଂ ମୁଁ ସେ ସଭାରେ ବକ୍ତା ଥିଲୁ । ସେତେବେଳେ ପି.କେ. ଦେଓ (କଳାହାଣ୍ଡି ମହାରାଜା) ପାର୍ଲାମେଣ୍ଟରେ ସ୍ୱତନ୍ତ୍ର ପାର୍ଟିର ନେତା ଥାଆନ୍ତି । ସେ ସେଠି ପହଞ୍ଚି ସେ ସଭାରେ ଯୋଗଦେଲେ । ଏହାପରେ ହରେକୃଷ୍ଣ ମହତାବ ଏବଂ ପବିତ୍ରମୋହନ ପ୍ରଧାନ କଂଗ୍ରେସ ଛାଡ଼ି ଜନକଂଗ୍ରେସ ଗଢ଼ିଲେ । ସେମାନେ ମଧ୍ୟ କଂଗ୍ରେସ ହଟାଓ ଅଭିଯାନରେ ସାମିଲ ହେଲେ । ପ୍ରଜାସୋସାଲିଷ୍ଟ ଦଳ ମଧ୍ୟ ଆମକୁ ସମର୍ଥନ କଲା । ଏହିଭଳି ଓଡ଼ିଶାରେ କଂଗ୍ରେସ ହଟାଓ' ଆନ୍ଦୋଳନ ଅତିଶୀଘ୍ର ତେଜି ଉଠିଲା ।

ଏହି ପରିପ୍ରେକ୍ଷୀରେ ଡ: ଲୋହିଆ ଓଡ଼ିଶା ଗସ୍ତ କଲେ । କଟକ, ଭୁବନେଶ୍ୱର ଓ ପୁରୀରେ ତାଙ୍କର ମିଟିଂ ହେବା ସ୍ଥିର ହେଲା । କଟକ ମିଟିଂ ଖୁବ୍ ବଡ ହୋଇଥିଲା । ଏଇଠି ଗୋଟାଏ କଥା ମନେ ପଡୁଛି । କଟକ ମିଟିଂରେ ଯୋଗ ଦେବାକୁ ଆସି ଡ: ଲୋହିଆ କଟକ ସର୍କିଟ୍ ହାଉସ୍‌ରେ ରହୁଥାଆନ୍ତି । ନବକୃଷ୍ଣ ଚୌଧୁରୀ ସେଠାକୁ ଆସିଥାଆନ୍ତି । ତାଙ୍କର ମଧ୍ୟ ସେହି ସଭାରେ ଭାଷଣ ଦେବା ସ୍ଥିର ହୋଇଥାଏ । ଡ: ଲୋହିଆ ଚା' ପିଇ ବସିଲାବେଳକୁ ତାଙ୍କୁ ସାଥ୍ ଦେବାପାଇଁ ନବବାବୁଙ୍କୁ ଖୋଜା ପଡ଼ିଲା । ହଠାତ୍ କୁଆଡ଼େ ଅଦୃଶ୍ୟ ହୋଇଯାଇଛନ୍ତି । ମୁଁ ତାଙ୍କୁ ଖୋଜି ଖୋଜି ଯାଇ ଦେଖେତ ସେ ବାଥ୍‌ରୁମ୍‌ରେ ଲୁଗା ସଫା କରୁଛନ୍ତି । ସେତେବେଳକୁ ଅପରାହ୍ନ ୪ଟା କି ସାଢ଼େ ଚାରିଟା ହେବ । ମୁଁ କହିଲି, "ଆପଣ ଏତେବେଳେ ଲୁଗାସଫା କରୁଛନ୍ତି କାହିଁକି ?" ସେ କହିଲେ, "ଓହୋ! ଏବେ ସଫାକରି ନ ଶୁଖାଇଲେ କାଲି ସକାଳୁ କ'ଣ ପିନ୍ଧିବି ?" ମୁଁ ଏ କଥା ଆସି ଡ: ଲୋହିଆଙ୍କୁ କହିବାରୁ ସେ ବିସ୍ମୟାଭିଭୂତ ହୋଇଗଲେ ।

ଡ: ଲୋହିଆ ଏବଂ ନବବାବୁ ଅତି ଘନିଷ୍ଠ ବନ୍ଧୁ ଥିଲେ । କଂଗ୍ରେସ ସୋସାଲିଷ୍ଟ ଦଳ ଗଢ଼ାହେବା ଦିନୁ, ଅର୍ଥାତ୍, ୧୯୩୪ରୁ ସେମାନଙ୍କର ଏ ଅନ୍ତରଙ୍ଗତା । ସେ ଉଭୟଙ୍କୁ ଏକାଠି ଦେଖି ମୋତେ ସେଦିନ ଯେଉଁ ଅପାର ଆନନ୍ଦ ଓ ସାହସ ମିଳିଥିଲା ତାହା ବର୍ଣ୍ଣନାତୀତ ।

କଟକ ସଭାରେ ନବବାବୁ ସେଦିନ ଯେଉଁ ସ୍ୱୀକାରୋକ୍ତି କଲେ ତାହା ଉପସ୍ଥିତ ସମସ୍ତଙ୍କୁ ହତବାକ୍ କରିଦେଲା । ନବବାବୁ ପୂର୍ବରୁ କଂଗ୍ରେସରେ ଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ମଧ୍ୟ ହୋଇଥିଲେ । ସେ ସଭାରେ ସେ ନିଜ ପରିଚୟ ଦେଇ କହିଲେ "ମୁଁ କଂଗ୍ରେସ ବିରୁଦ୍ଧରେ ରାଜସାକ୍ଷୀ ରୂପେ ଏଠି ଛିଡ଼ା ହୋଇଛି ।" ତାଙ୍କର ଏହି ସ୍ୱୀକାରୋକ୍ତି ସେତେବେଳେ ଦେଶସାରା ପ୍ରଚାରିତ ହୋଇଯାଇଥିଲା । ସେତେବେଳେ ଓଡ଼ିଶାରେ ତିନି ତୁଙ୍ଗ ଜନନେତା, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ ଓ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ

ସରକାରର ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ 'କଂଗ୍ରେସ ହଟାଓ' ଆନ୍ଦୋଳନକୁ ଗ୍ରହଣ କରି ନେଇଥିଲେ । ମୁଁ ପୁରୀରୁ ଲୋକସଭା ପାଇଁ ଲଢ଼ିବା ସ୍ଥିର ହେଲା । ମୁଁ କଂଗ୍ରେସ ପ୍ରାର୍ଥୀଙ୍କ ଠାରୁ ପ୍ରାୟ ୬୦ ହଜାର ଅଧିକ ଭୋଟ ପାଇ ଜିତିଲି । ମୁଁ ଜଣେ ପୂର୍ବତନ କେନ୍ଦ୍ରମନ୍ତ୍ରୀଙ୍କୁ ହରାଇ ଏତେ ଅଧିକ ଭୋଟରେ ଜିତିବି ବୋଲି ଆଶା କରିନଥିଲି । ୧୯୬୮ରେ ମୁଁ ଦେଶର ଚତୁର୍ଥ ସାଧାରଣ ନିର୍ବାଚନରେ ଜିତି ଲୋକସଭାରେ ପ୍ରବେଶ କଲି ଏବଂ ସେଠି ସଂଯୁକ୍ତ ସୋସାଲିଷ୍ଟ ଦଳର ଉପନେତା ନିର୍ବାଚିତ ହେଲି । ଏହାର ଦେଢ଼ବର୍ଷ ପରେ ଡ: ଲୋହିଆଙ୍କର ଅକାଳ ଦେହାନ୍ତ ହୋଇଗଲା । ଏହା କେବଳ ଆମ ଦଳକୁ ଏକ ଶକ୍ତ ଧକ୍କା ନଥିଲା ତାଙ୍କ ଅବର୍ତ୍ତମାନରେ ସମଗ୍ର ସମାଜବାଦୀ ଆନ୍ଦୋଳନ ଓ ଭାରତୀୟ ଗଣତନ୍ତ୍ରର ଅପୂରଣୀୟ କ୍ଷତି ଘଟିଲା । ସେତେବେଳେ ମଧୁଲିମାୟେ ଥାଆନ୍ତି ପାର୍ଲାମେଣ୍ଟରେ ଆମ ପାର୍ଟି ର ନେତା ଓ ମୁଁ ଥାଏ ଉପନେତା । ଏହା ଭିତରେ ଥରେ ପାର୍ଲାମେଣ୍ଟରେ ସେତେବେଳେ ଥିବା ଏକମାତ୍ର ଓଡ଼ିଆ ଅଫିସର, ସେ ସମୟର ପାର୍ଲାମେଣ୍ଟ ସଚିବାଳୟର ଯୁଗ୍ମ ସଚିବ ପ୍ରଫୁଲ୍ଲ ପଟ୍ଟନାୟକ ଏକ ଖବର ନେଇ ଆସିଲେ । ସେ ଅତ୍ୟନ୍ତ ଖୁସ୍ ମିଜାଜ୍ ଲୋକ । ସେ ସବୁବେଳେ ହସୁଥିବେ ଓ ଅନ୍ୟମାନଙ୍କୁ ହସାଉଥିବେ । ସେ ଆସି କହିଲେ,"ରବିବାବୁ, ଖାଇବାକୁ ଦିଅନ୍ତୁ ।" ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, 'କାହିଁକି ?' ତାପରେ ସେ ମୋ ହାତକୁ ଖଣ୍ଡେ ଚିଠି ବଢ଼ାଇ ଦେଲେ । ମୁଁ ପଚାରିଲି, "ଏ ଚିଠି କ'ଣ ପାଇଁ ?" ସେ କହିଲେ "ବାଚସ୍ପତି ସଞ୍ଜୀବରେଡି ସୋଭିଏତ୍ ଇଉନିୟନ ଓ ହଙ୍ଗେରୀ ଗସ୍ତରେ ଯାଉଛନ୍ତି । ତାଙ୍କସହିତ ଯାଉଥିବା ସଂସଦୀୟ ପ୍ରତିନିଧି ଦଳରେ ଯିବାପାଇଁ ସେ ଆପଣଙ୍କୁ ବାଛିଛନ୍ତି ।"

ମୁଁ ନୂଆସଭ୍ୟ ହୋଇଥିଲେ ମଧ ପରମ୍ପରା ଭାଙ୍ଗି ମୋତେ ବାଚସ୍ପତି ତାଙ୍କ ପ୍ରତିନିଧିଦଳରେ ସାମିଲ କରିବା ଘଟଣା ମୋତେ ଆଶ୍ଚର୍ଯ୍ୟ ଲାଗିଲା । ସେ ପ୍ରତିନିଧି ଦଳରେ CPI ର ବରିଷ୍ଠ ନେତା ସ୍ବର୍ଗତ ହିରେନ୍ ମୁଖାର୍ଜୀ ଓ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶିଲଭଦ୍ରଯାଜୀ ଯାଇଥିବାର ମନେ ପଡୁଛି । ଓଡ଼ିଶାରୁ ଶ୍ରଦ୍ଧାକର ସୁପକାର ଓ ମୁଁ ଯାଇଥିଲୁ ।

ଆମେ ଯେତେବେଳେ ଋଷୀୟ କେନ୍ଦ୍ରୀୟ ସଂସଦକୁ ଗଲୁ ସେତେବେଳେ ତାଙ୍କର ବୈଦେଶିକ ମନ୍ତ୍ରୀ ଗ୍ରୋମିକୋ ଭାଷଣ ଦେଉଥାଆନ୍ତି । ପରିଦର୍ଶକ ଗ୍ୟାଲେରୀରେ ଋଷିଆରେ ଥିବା ଆମର ରାଷ୍ଟ୍ରଦୂତ ମୋ ପାଖରେ ବସିଥାଆନ୍ତି । ମୁଁ ପଚାରିଲି, "ଗ୍ରୋମିକୋ କେଉଁ ଭାଷାରେ ଭାଷଣ ଦେଉଛନ୍ତି ?" ସେ କହିଲେ "ସେ ଋଷୀୟ ଭାଷାରେ କହୁଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ଋଷିଆର ଅନ୍ୟାନ୍ୟ ଆଞ୍ଚଳିକ ଭାଷାରେ ଅନୁଦିତ ହୋଇଯାଉଛି ।" ସଂସଦର ସବୁ ସଦସ୍ୟ କାନରେ Ear phone ଲଗାଇ ନିଜ ନିଜ ଭାଷାରେ ସେ ଭାଷଣ ଶୁଣୁଛନ୍ତି । ଆମେ ଭାରତ ଫେରିବାପରେ ଆମ ସଂସଦରେ ସେହିଭଳି ବ୍ୟବସ୍ଥା କରିବା ନିମିତ୍ତ ଆମେ ବାଚସ୍ପତିଙ୍କୁ ପ୍ରସ୍ତାବ ଦେଲୁ । ଏ ସଂପର୍କରେ ସେ ଋଷ୍ ସରକାରଙ୍କ ସହ ପରାମର୍ଶ କରିବେ ବୋଲି ଆମକୁ ପ୍ରତିଶ୍ରୁତି ଦେଲେ ।

ସୋଭିଏତ୍ ଋଷ୍ ଯାତ୍ରା ସମୟର ଆଉ ଏକ ମଜା କଥା ମନେପଡୁଛି । ଆମେ

ସାଇବେରିଆର ରାଜଧାନୀ ଇର୍‌କୁଟ୍‌ସ୍‌ତ୍ ସହର ପରିଦର୍ଶନରେ ଯାଇଥାଉ । ସେଠି ଏକ ଚା' ଭୋଜିରେ ଆମେ, ସାଇବେରିଆର ପାର୍ଲାମେଣ୍ଟ ମୁଖ୍ୟ ଏବଂ ଶାସନ ମୁଖ୍ୟ ପ୍ରଭୃତି ଯୋଗ ଦେଇଥାଆନ୍ତି । ସେଠି ମୁଁ ବସିଥାଏ ଏବଂ ମୋ ପାଖରେ କୁଷ୍କ୍ ସହରର ମେୟର ବସିଥାଆନ୍ତି । ସେ ମେୟର୍ ଜଣେ ଭଦ୍ରମହିଳା । ଭୋଜିରେ ଭଦ୍ରାମି ଦୃଷ୍ଟିରୁ କିଛି ପାନୀୟ ଗ୍ରହଣ କରିବାକୁ ପଡ଼ିବ । ମୁଁ କମଳା ରସ ନେଲି । ମୋ ପାଖରେ ବସିଥିବା ସେ ଭଦ୍ରମହିଳା ମୋତେ ଖଣ୍ଡି ଖଣ୍ଡି ଇଂରାଜିରେ କହିଲେ, "ଆପଣ ଭୋଦ୍‌କା ନିଅନ୍ତୁ ନା ।" ଭୋଦ୍‌କା ପ୍ରସିଦ୍ଧ ଋଷୀୟ ମଦ । ସେଠି ଆବାଳ ବୃଦ୍ଧ ବନିତା ତାହା ପାନ କରନ୍ତି । ମୁଁ ଜୀବନରେ କେବେବି ମଦ ସ୍ପର୍ଶ କରିନାହିଁ । ଏଣୁ ମୁଁ ହସି ହସି ମନା କରିଦେଲି । ସେ କିନ୍ତୁ ନଛୋଡ଼ବନ୍ଧା । ଗୁଡ଼ାଏ ଯୁକ୍ତି କଲେ । ମୁଁ ମଧ ଯୁକ୍ତି କଲି । ମୁଁ କହିଲି ଭାରତର ସଂଖ୍ୟା ଗରିଷ୍ଠଲୋକ ଖଟିଖିଆ ଶ୍ରେଣୀର । ମଦ ସେମାନଙ୍କ ଅର୍ଥନୈତିକ ଶୋଷଣର ଗୋଟାଏ ଅମୋଘ ଅସ୍ତ୍ର ହୋଇ ଯାଇଛି । ସେମାନେ ମଦ ପିଇ ପିଇ ତଳିତଳାନ୍ତ ହୋଇଯାଉଛନ୍ତି । ଘରେ ପ୍ରବଳ ପାରିବାରିକ ଅଶାନ୍ତିର ଝଡ଼ ବୋହୁଛି । ଅନେକ ପରିବାର ଧ୍ୱଂସ ପାଇଯାଉଛି । ଏଣୁ ଆମ ଦେଶରେ ନିଶା ସେବନ କେବଳ ଏକ ନୈତିକ ପ୍ରଶ୍ନ ନୁହେଁ ଏକ ଅର୍ଥନୈତିକ ସମସ୍ୟା ମଧ । ଆମ ଦେଶରେ ଏଥିପାଇଁ ଚାଲିଥିବା ନିଶାନିବାରଣ ଆନ୍ଦୋଳନ ସଂପର୍କରେ ସୂଚନା ଦେଲି । ଆମେ ଅନ୍ଦୋଳନକାରୀ ନିଜେ ନିଶାମୁକ୍ତ ନହେଲେ ଲୋକଙ୍କୁ ନିଶାମୁକ୍ତି ସଂପର୍କରେ ବୁଝାଇପାରିବୁ ନାହିଁ । ଏଣୁ ମୁଁ ମଦ ପିଏ ନାହିଁ ବୋଲି ଯୁକ୍ତି କଲି । ଶେଷରେ ସେ ମୋତେ ଯୁକ୍ତିରେ ନପାରି ହସି ହସି କହିଲେ, "ହେଉ ହେଲା । ତେବେ ମୁଁ ଜଣେ ନାରୀ । ଭଦ୍ରାମି ଖାତିରିରେ ମୋ ଅନୁରୋଧ ରକ୍ଷା କରି ଗୋଟିଏ ବୁନ୍ଦା ଚାଖନ୍ତୁ ।" କ'ଣ କରିବି । ଦେଖିଲି ଭଦ୍ର ମହିଳା ନଛୋଡବନ୍ଧା । ସେ ବୁନ୍ଦାଟାଏ ମୋ ହାତରେ ପକାଇ ଦେଲେ । ମୁଁ ଆଖି ବୁଜି ଚାଟି ଦେଲି । ଆମ ସହିତ ଯାଇଥିବା ଶୀଳଭଦ୍ରଯ୍ୟାଜୀ ମଦ୍ୟପାନରେ ଅଭ୍ୟସ୍ତ କି ନା' ଜାଣେ ନାହିଁ । ମାତ୍ର ସେ ସେଥିରୁ ଅଳ୍ପ କେଇ ସୁଡୁକା ପିଇ ଦେଇ ମାତାଲ ଓ ପରେ ବେହୋସ ହୋଇଗଲେ ।

ସେହି ଋଷିଆ ଗସ୍ତ ସମୟରେ ଋଷର ତାସ୍‌କେଣ୍ଟ (ଯେଉଁଠାରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୁର ଶାସ୍ତ୍ରୀ ମୃତ୍ୟୁବରଣ କରିଥିଲେ) ଯିବାର ସୁଯୋଗ ମିଳିଥିଲା । ଋଷିଆର ଦୁଇଟି ଭାଗ । ଗୋଟିଏ ୟୁରୋପରେ ଅନ୍ୟଟି ଏସିଆ ରେ। ତାସ୍‌କେଣ୍ଟ ଋଷିଆର ଏସିୟ ଭାଗରେ ଅବସ୍ଥିତ । ଋଷ ରାଜଧାନୀ ମସ୍କୋ ଠାରୁ ଏହା ସଂପୂର୍ଣ୍ଣ ଅଲଗା । ଆମର ସେହି ତାସ୍‌କେଣ୍ଟ ଗସ୍ତକାଳରେ ସେଠାକାର ଗୋଟିଏ ଝିଅ ଆମ ସହିତ ଋଷିୟ ଭାଷାରୁ ଇଂରେଜୀ ଭାଷାକୁ ଅନୁବାଦ କରିବା ପାଇଁ ଅନୁବାଦିକା ଭାବରେ ଯାଇଥାଏ । କୌତୁହଳ ବଶତଃ ମୁଁ ତାଙ୍କୁ ପଚାରିଦେଲି, "ତମେ କେଉଁଯାଏ ପାଠ ପଢ଼ିଛ ?" ସେ କହିଲେ 'ମୁଁ ଇତିହାସରେ ଏମ୍.ଏ. ପାଶ୍ କରିଛି ' । ତା'ପରେ ମୁଁ କହିଲି ଆଚ୍ଛା, ତମେ ତାହେଲେ ମସ୍କୋ ୟୁନିଭରସିଟିର ଛାତ୍ରୀ! ମୋ କଥା ଶୁଣି ସେ ବିବ୍ରତ ହୋଇପଡ଼ିଲା ଏବଂ କହିଲା No, No Sir! I studied in my own University,

Taskent. । ଝିଅଟିର ନିଜ ରାଜ୍ୟ ପ୍ରତି ଏତେ ମମତ୍ୱ ବୋଧ ଯେ ସେ ଦୃଢ଼ତାର ସହିତ କହୁଥିଲା ଯେ, ମୁଁ ମୋ ରାଜ୍ୟର ୟୁନିଭରସିଟିରେ ନପଢ଼ି ମସ୍କୋରେ କାହିଁକି ପଢ଼ିବାକୁ ଯିବି ? ସେଠାରୁ ଫେରି ପରେ ମୁଁ ସୋଭିଏତ୍ ୟୁନିୟନ୍‌ର ଭବିଷ୍ୟତ ସଂପର୍କରେ ଏକ ଲେଖା ଲେଖିଥିଲି ଯାହା ପରେ ସତ୍ୟରେ ପରିଣତ ହୋଇଥିଲା । ସୋଭିଏତ୍ ୟୁନିୟନ୍‌ରେ ସେତେବେଳକୁ ଷ୍ଟାଲିନ୍‌ଙ୍କ ଏକଛତ୍ରବାଦୀ ଶାସନ ଚାଲିଥାଏ । ମୋର କାହିଁକି ସେଦିନ ମନେ ହୋଇଥିଲା ଯେ, ସୋଭିଏତ୍ ୟୁନିୟନର ଏହି ଏକଛତ୍ରବାଦୀ ଶାସନ ଆଉ ବେଶୀଦିନ ଟିକି ପାରିବ ନାହିଁ, ସେଠାରେ ନିଶ୍ଚୟ ଗଣତନ୍ତ୍ର ପ୍ରତିଷ୍ଠା ପାଇଁ ଲୋକମାନେ ଆନ୍ଦୋଳନ କରିବେ । ମସ୍କୋରେ ଯେହେତୁ ସମସ୍ତ ଶାସନ କେନ୍ଦ୍ରୀଭୂତ ହୋଇଥିଲା ଏବଂ ଏହା ଯେହେତୁ ଋଷିଆର ୟୁରୋପ ଭାଗରେ ଅବସ୍ଥିତ ଥିଲା ସେହି ହେତୁରୁ ମସ୍କୋବାସୀ ତାସ୍‌କେଣ୍ଟବାସୀ (ଯେଉଁମାନେ କି ଏସୀୟ ଭାଗର ନାଗରିକ) ଙ୍କୁ ନିଶ୍ଚୟ ଏକ ଦ୍ୱିତୀୟ ଶ୍ରେଣୀର ନାଗରିକ ଭଳି ଆଚରଣ ପ୍ରଦର୍ଶନ କରିବେ, ଫଳରେ ତାସ୍‌କେଣ୍ଟ ବାସୀ ଦିନେ ନା ଦିନେ ମସ୍କୋ ଅଧିବାସୀଙ୍କ ବିରୁଦ୍ଧରେ ଯେ ଲଢ଼ାଇ କରିବେ ଏହା ସ୍ୱତଃସିଦ୍ଧ ଥିଲା । ସେଦିନ ସେ ଝିଅର ଦୃଢ଼ ଆତ୍ମବିଶ୍ୱାସ ଏବଂ ଅଗାଧ ରାଜ୍ୟପ୍ରୀତି ଦେଖି ମୋ ମନରେ ଯେଉଁ ସନ୍ଦେହ ଜାତ ହୋଇଥିଲା ତାହା ପରେ ଅକ୍ଷରେ ଅକ୍ଷରେ ସତ୍ୟ ହେଲା । ସୋଭିଏତ୍ ୟୁନିୟନ ଖଣ୍ଡ ବିଖଣ୍ଡିତ ହୋଇଗଲା । ତାସ୍‌କେଣ୍ଟ ଏକ ସ୍ୱତନ୍ତ୍ର ସ୍ୱାଧୀନ ରାଷ୍ଟ୍ରଭାବେ ପରିଗଣିତ ହେବାକୁ ଲାଗିଲା ।

ଆମ ଫେରନ୍ତା ଟିକେଟ ଥିଲା ମସ୍କୋରୁ ଦିଲ୍ଲୀ । ମାତ୍ର ଆମ ପାର୍ଲାମେଣ୍ଟ ଅଫିସର କହିଲେ "ଆପଣମାନେ ଆଉ ଦୁଇ ହଜାର ଲେଖାଁ ଟଙ୍କା ଯଦି ଦେବେ ତାହେଲେ ଲଣ୍ଡନ୍, ପ୍ୟାରିସ୍ ଏବଂ କାଇରୋ ବୁଲି ଆସିପାରିବେ ।" ମୁଁ ଏବଂ ଶ୍ରଦ୍ଧାକର ବାବୁ ପୁଣି ବିଲାତ ଯାତ୍ରା କଲୁ । ଏହା ମୋର ପ୍ରଥମ ବିଲାତ ଯାତ୍ରା ।

୧୯୬୭ରେ ମୁଁ ଲୋକସଭାକୁ ନିର୍ବାଚିତ ହୋଇଗଲା ପରେ ମୋତେ ଭୁଟାନ୍ ଗସ୍ତ କରିବାର ପ୍ରଥମ ସୁଯୋଗ ମିଳିଲା । ପାର୍ଲାମେଣ୍ଟ ତରଫରୁ ସେ ପ୍ରତିନିଧି ମଣ୍ଡଳରେ ମୁଁ, ହନୁମନ୍ତେୟା ଓ ଅମୃତା ନାହାଟା ଭୁଟାନ ଯିବାର କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଭୁଟାନ ହେଉଛି ଭାରତର ଏକ ପଡ଼ୋଶୀ ରାଜ୍ୟ । ଭୁଟାନର ବିକାଶ ତଥା ଦେଶରକ୍ଷା ଦିଗରେ ଭାରତ ସାହାଯ୍ୟ କରୁଥିଲେ ହେଁ ଏହା ଏକ ସ୍ୱତନ୍ତ୍ର ସ୍ୱାଧୀନରାଷ୍ଟ୍ର । ଶ୍ରୀ ହନୁମନ୍ତେୟା ସେ ପାର୍ଲାମେଣ୍ଟାରୀ ଦଳର ନେତୃତ୍ୱ ନେଇଥିଲେ । ଆମେ ସମସ୍ତେ ଏକ କାର୍ ଯୋଗେ ବଙ୍ଗଳାର ସିଲ୍‌ଗୁଡ଼ି ଦେଇ ଭୁଟାନ୍‌ର ରାଜଧାନୀ ଥିମ୍ପୁରେ ପହଞ୍ଚିଲୁ । ଭୁଟାନ୍ ମହାରାଜା ବହୁତ ଭାରତ ସପକ୍ଷବାଦୀ ଥିଲେ । ତେଣୁ ତାଙ୍କୁ ସେଠାରେ ମିଷ୍ଟର ଇଣ୍ଡିଆ ବୋଲି କୁହାଯାଉଥିଲା । ତାଙ୍କ ସହିତ ଆମ ପ୍ରତିନିଧି ମଣ୍ଡଳର ଆଳାପ ଆଲୋଚନା ସମୟରେ ସେ ଭାରତ ପ୍ରତି ଗଭୀର କୃତଜ୍ଞତା ପ୍ରଦର୍ଶନ କରିଥିଲେ । ଏପରିକି ଆମେ ଯେତେବେଳେ ରାଜାଙ୍କ ସହିତ ବସି ଚା'ପିଉଥିଲୁ ସେତେବେଳେ ଅକସ୍ମାତ୍ ମୋ ହାତରୁ ପ୍ଲେଟ୍‌ଟି ଖସିପଡ଼ିଲା । ରାଜା ତତ୍‌କ୍ଷଣାତ୍ ନିଜେ ନଇଁପଡ଼ି ସେ ପ୍ଲେଟ୍‌ଟିକୁ ତଳୁ ଯେପରି ଉଠାଇ ଦେଇଥିଲେ ତାହା

ମୋତେ ସେଦିନ ଖୁବ୍ ଅଭିଭୂତ କରିଦେଇଥିଲା । ଆମେ ପ୍ରତିନିଧି ମଣ୍ଡଳୀ ନେଇ ଫେରିବା ବାଟରେ ଆମର ଅନ୍ତତଃ ଏତିକି ହୃଦ୍‌ବୋଧ ହୋଇଥିଲା ଯେ ଯେତେଦିନ ପର୍ଯ୍ୟନ୍ତ ସିଏ ରାଜା ରହିଥିବେ ସେତେଦିନ ପର୍ଯ୍ୟନ୍ତ ଭୁଟାନ୍‌ର ସୀମା ଭାରତବର୍ଷପାଇଁ ସୁରକ୍ଷିତ ରହିବ, କାରଣ ସେତେବେଳକୁ ଚୀନ୍ ଭାରତ ସହିତ ତାର ସଂପର୍କ ତିକ୍ତ କରିସାରିଥିଲା ।

ଷାଠିଏ ଦଶକର କଥା । ଏକଦା ମୁଁ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ଉପନେତା ଥିବା ସମୟରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ଆଗତ କରାଯାଇଥିଲା । ସେତେବେଳେ ପଞ୍ଜାବରେ କେନ୍ଦ୍ର ସରକାରୀ କର୍ମଚାରୀମାନେ ସେମାନଙ୍କ କୌଣସି ଦାବୀ ନେଇ ଏକ ହରତାଳ କରିଥିଲେ । ସେ ହରତାଳ ଏପରି ଉଗ୍ର ରୂପ ଧାରଣ କରିଥିଲା ଯେ ତାହାକୁ କୌଣସି ପ୍ରକାର ଦବାଇ ଦେବାପାଇଁ ପୋଲିସ ବାହିନୀ ପକ୍ଷରୁ ଗୁଳିଚାଳନା କରାଯାଇଥିଲା । ଫଳରେ କେତେକ ସରକାରୀ କର୍ମଚାରୀ ମୃତ୍ୟୁବରଣ କରିଥିଲେ । ସେହି ଘଟଣାକୁ ନିନ୍ଦା କରି ସମସ୍ତ ବିରୋଧୀଦଳ ପକ୍ଷରୁ ତତ୍‌କାଳୀନ ଇନ୍ଦିରା ସରକାରଙ୍କ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ଅଣାଯାଇଥିଲା । ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଅଟଳ ବିହାରୀ ବାଜପେୟୀ ସେତେବେଳେ ବିରୋଧି ଦଳମାନଙ୍କ ପକ୍ଷରୁ ଏହି ଅବିଶ୍ୱାସ ପ୍ରସ୍ତାବ ଆଗତ କରିଥିଲେ । ସମ୍ଭବତଃ ସେହି ସମୟରୁ ତାଙ୍କ ସହିତ ମୋର ଅନ୍ତରଙ୍ଗତା ବେଶ୍ ବୃଦ୍ଧି ପାଇଥିଲା । ଏହି ଅବିଶ୍ୱାସ ପ୍ରସ୍ତାବ ଆଗତ କରିବା ଦିନ ବିରୋଧୀ ଦଳ ପକ୍ଷରୁ ଆମେ ତିନୋଟି ଦାବୀ ଉପସ୍ଥାପନ କରିଥିଲୁ। ପ୍ରଥମ ଦାବୀ ଥିଲା, ଗୁଳିକାଣ୍ଡର ବିଚାର ବିଭାଗୀୟ ତଦନ୍ତ, ଦ୍ୱିତୀୟ ହେଲା ଗୁଳିକାଣ୍ଡରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କୁ ଦଣ୍ଡ, ଶେଷ ତଥା ତୃତୀୟ ଦାବୀ ଥିଲା ମୃତ ବ୍ୟକ୍ତିର ପରିବାରକୁ ଉପଯୁକ୍ତ କ୍ଷତିପୂରଣ । ସେତେବେଳେ ଗୃହମନ୍ତ୍ରୀ ଥାନ୍ତି ଶ୍ରୀ ୱାଇ.ବି. ଚୌହାନ । ପ୍ରଥମ ଦିନ ସେ ତାଙ୍କ ଭାଷଣରେ ଉପରୋକ୍ତ ତିନୋଟି ଦାବୀ ମଧ୍ୟରୁ କୌଣସି ଗୋଟିଏ ଦାବୀ ଗ୍ରହଣ କରି ନଥିଲେ । ତା' ପରଦିନ ଥାଏ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ କହିବା ପାଳି । ଏଣେ ଆମ ବିରୋଧୀ ଦଳ ପକ୍ଷରୁ ଉପଯୁକ୍ତ ରଣକୌଶଳ ପ୍ରସ୍ତୁତ ହୋଇଗଲା ତାଙ୍କୁ ମୁକାବିଲା କରିବାପାଇଁ। ସେତେବେଳେ ବିରୋଧି ଦଳରେ ଯେଉଁ ପ୍ରମୁଖ ନେତାମାନେ ଥାନ୍ତି ସେମାନେ ହେଲେ ଜନ ସଂଘର ନେତା ଶ୍ରୀ ଅଟଳ ବିହାରୀ ବାଜପେୟୀ, ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ନେତା ମଧୁଲିମାୟେ ଏବଂ ସ୍ୱତନ୍ତ୍ର ପାର୍ଟିର ନେତା ଥାନ୍ତି ଏନ୍. ଜି.ରଙ୍ଗା । ମୁଁ ଥାଏ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ଉପନେତା । ବିରୋଧୀ ଦଳ ପକ୍ଷରୁ ଆୟୋଜିତ ସେ ଆଲୋଚନାରେ ମୋତେ ଦାୟିତ୍ୱ ଦିଆଯାଇଥିଲା ଯେ ପରଦିନ ଯେତେବେଳେ ଇନ୍ଦିରାଗାନ୍ଧୀ ଅବିଶ୍ୱାସ ପ୍ରସ୍ତାବ ଉପରେ ନିଜର ମତ ପ୍ରଦାନ କରିବେ ସେଇ ସମୟରେ ମୁଁ ଠିଆ ହୋଇ ତାଙ୍କର ପ୍ରତିରୋଧ କରିବି ଏବଂ କହିବି ଯେ ଆମ ବିରୋଧୀଦଳ ତରଫରୁ କରାଯାଇଥିବା ତିନୋଟି ଦାବୀ ମଧ୍ୟରୁ ଅନ୍ୟୂନ ଦୁଇଟି ଦାବୀକୁ ଯଦି ପ୍ରଧାନମନ୍ତ୍ରୀ ଗ୍ରହଣ କରିବେ ତାହାଲେ ମୁଁ ତାଙ୍କୁ ଗୃହରେ କହିବାକୁ ସୁଯୋଗ ଦେବି ନଚେତ୍ ତାଙ୍କୁ ଆଦୌ କୁହାଇ ଦେବିନାହିଁ। ସେତେବେଳେକୁ ଲୋକ ସଭାର ବାଚସ୍ପତି ଥାନ୍ତି ଶ୍ରୀ ସଞ୍ଜୀବ ରେଡ୍ଡି । ମୋର ସ୍ପଷ୍ଟ ମନେ ଅଛି ତା' ପରଦିନ ଇନ୍ଦିରାଗାନ୍ଧୀ ଯେତେବେଳେ

ନିଜର ବକ୍ତବ୍ୟ ପାଇଁ ଠିଆ ହେଲେ ତତ୍‌କ୍ଷଣାତ୍ ମୁଁ ପଏଣ୍ଟ ଅଫ୍ ଅର୍ଡର ଉଠାଇ ବାଚସ୍ପତିଙ୍କୁ କହିଲି ଯେ ପ୍ରଧାନମନ୍ତ୍ରୀ ଯଦି ଆମର ତିନୋଟି ଦାବୀ ମଧ୍ୟରୁ ଅନ୍ୟୁନ ଯେ କୌଣସି ଦୁଇଟି ଦାବୀ ମାନି ନେଉଛନ୍ତି ବୋଲି ଆଜି ଗୃହରେ ପ୍ରତିଶ୍ରୁତି ନ ଦିଅନ୍ତି ତାହାଲେ ମୁଁ ତାଙ୍କୁ କୁହାଇ ଦେବିନହିଁ । ମୋର ଏହି କଥାକୁ ଉପସ୍ଥିତ ସଦସ୍ୟମାନେ ଟେବୁଲ୍ ବାଡେଇ ସମର୍ଥନ ଜଣାଇଲେ । ଇନ୍ଦିରାଗାନ୍ଧୀ ସେତେବେଳକୁ ନୂଆ ନୂଆ ପ୍ରଧାନ ମନ୍ତ୍ରୀ । ମୋ ଜବାବ୍‌ରେ ସେ ହଠାତ୍ ଉଠିପଡ଼ିଲେ ଏବଂ କହିଲେ ''ଆପ୍ ହାମ୍‌କୋ ବୋଲ୍‌ନେ ନେହିଁ ଦେଙ୍ଗେ ?'' ମୁଁ ନିଠେଇ ନିଠେଇ କହିଲି "ମୈଁ ଆପ୍‌କୋ ବୋଲ୍‌ନେ ନହିଁ ଦୁଙ୍ଗା ।'' ଗୋଟାଏ କିଛି ଗଣ୍ଡଗୋଳ ଆଶଙ୍କା କରି ବାଚସ୍ପତି ସଞ୍ଜୀବ ରେଡ୍ଡୀ କିଛି ସମୟ ପାଇଁ ଲୋକସଭା ମୁଲତବୀ ରଖିଦେଲେ । ତା'ପରେ ଉଭୟ ସରକାରୀ ଦଳ ଓ ବିରୋଧୀଦଳ ସଭ୍ୟଙ୍କୁ ତାଙ୍କ ଚେମ୍ବରକୁ ଡକାଇଲେ । ସେଠି ସେ ବାରମ୍ବାର ଅନୁରୋଧ କରିବାରୁ ଇନ୍ଦିରା ଗାନ୍ଧୀଙ୍କୁ ବିନା ବାଧାରେ କହିବାକୁ ଦିଆଯିବା ସ୍ଥିର ହେଲା । ମାତ୍ର ଏହି ଘଟଣା ନେଇ ସେଦିନ ଗୃହରେ ହଇଚଇ ସୃଷ୍ଟି ହୋଇଯାଇଥିଲା । ପାର୍ଲାମେଣ୍ଟରେ ମୋପରି ଜଣେ ନୂତନ ସଭ୍ୟ ଇନ୍ଦିରାଗାନ୍ଧୀଙ୍କ ଭଳି ପ୍ରଧାନମନ୍ତ୍ରୀଙ୍କୁ ଏପରି କଡ଼ାଜବାବ୍ ଦେବା ଏକ ଅପ୍ରତ୍ୟାଶିତ ଘଟଣା ଥିଲା ସତ, ମାତ୍ର ପରମୁହୂର୍ତ୍ତରେ ଏହା ମୋ ଆତ୍ମବିଶ୍ୱାସକୁ ବହୁଗୁଣରେ ବଢ଼ାଇଦେଇଥିଲା ।

ସେ ସମୟର ଗୋଟାଏ ଅଭିଜ୍ଞତା ମୋ ମନରେ ଗଭୀର ରେଖାପାତ କରିଥିଲା । ଆମକୁ ଲଣ୍ଡନରୁ ପ୍ୟାରିସ୍ ଯିବାକୁ ଉଡାଜାହାଜରେ ମାତ୍ର ୨୦/୨୫ ମିନିଟ ଲାଗିଲା । ଇଂଲିସ୍ ଚାନେଲ୍‌ର ଏପଟେ ଇଂଲଣ୍ଡ, ସେପଟେ ଫ୍ରାନ୍ସ । ମାତ୍ର ପ୍ୟାରିସ୍‌ରେ ପହଞ୍ଚି ଯେତେବେଳେ ଜଳଖିଆ ଖାଇବାକୁ ଗୋଟାଏ ରେସ୍ତୋରାରେ ପଶିଲୁ ସେମାନେ କେହି ଇଂରାଜି କହୁନଥିଲେ । ହୁଏତ ଅନେକ ବୁଝୁଥିବେ । ମାତ୍ର ନବୁଝିପାରିବାର ଛଳନା କରୁଥିବେ । ଆମକୁ ସେଠି କାମ ଚଳାଇବା ପାଇଁ କେତୋଟି ଶବ୍ଦର ଫରାସୀ ପ୍ରତିଶବ୍ଦ ଶିଖିବାକୁ ପଡିଲା ଯଥା:- ଖାଇବାକୁ ଦିଅ, ପାଣି ଆଣ ଇତ୍ୟାଦି । ଶ୍ରଦ୍ଧାକର ବାବୁ ଜଣେ ସାହିତ୍ୟିକ । ମୁଁ ତାଙ୍କୁ କହିଲି, ଏଠାକାର ଅବସ୍ଥା ଆମ ବସ୍ତୁସ୍ଥିତି ସହିତ ତୁଳନା କରି ଦେଖନ୍ତୁ । ଆମ ଦେଶରେ ଜଣେ ଯଦି ଇଂରାଜି ଜାଣି ନାହିଁ ତାକୁ ଲାଜ ଲାଗୁଛି । ତାକୁ ଆମେ ତୃତୀୟ ଶ୍ରେଣୀ ନାଗରିକ ରୂପେ ଦେଖୁଛୁ । ଅଥଚ ଫ୍ରାନ୍ସରେ ନିଜ ଭାଷାକୁ ନେଇ ସେମାନଙ୍କର ଏତେ ସ୍ୱାଭିମାନ ଯେ ସେମାନଙ୍କ ଭିତରେ ଯେଉଁମାନେ ଇଂରାଜି ଜାଣନ୍ତି ସେମାନେ ମଧ ଫରାସୀ ଭାଷାରେ ବାର୍ତ୍ତାଳାପ କରନ୍ତି । ଆଜି ଫରାସୀ ଭାଷା ମଧ ଏକ ସ୍ୱୀକୃତ ଆନ୍ତର୍ଜାତିକ ଭାଷା । ଅଥଚ ଆମ ଭାଷା ହଜାର ହଜାର ବର୍ଷର ଐତିହ୍ୟ ବହନ କରୁଥିଲେ ମଧ ତା' ଦଶା କଣ ?

ଭାରତବର୍ଷର ସ୍କୁଲ, କଲେଜ, କୋର୍ଟ, କଚେରୀ, ସଚିବାଳୟ ଅଥବା ସର୍ବସାଧାରଣ ସ୍ଥାନମାନଙ୍କରେ ଭାରତୀୟ ଭାଷା ବ୍ୟବହାର କରାଯିବା ସପକ୍ଷରେ ଡଃ. ଲୋହିଆ ଆନ୍ଦୋଳନ କରିଥିଲେ । ଏହାର ପର୍ଯ୍ୟାଲୋଚନା ପାଇଁ ହାଇଦ୍ରାବାଦଠାରେ ୬୦ ଦଶକରେ ଏକ ଅଖିଳ ଭାରତୀୟ ଇଂରାଜି ହଟାଓ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଉକ୍ତ ସମ୍ମିଳନୀକୁ ରାଜନୈତିକ ଦଳମାନଙ୍କ ବାହାରେ କର୍ମରତ ସାହିତ୍ୟିକ, ଶିକ୍ଷୀ ତଥା ବୈଜ୍ଞାନିକମାନଙ୍କୁ

ନିମନ୍ତ୍ରଣ କରାଯାଇଥିଲା । ଏଥିରେ ବୋଷ୍-ଆଇନ୍‌ଷ୍ଟାଇନ୍ ତତ୍ତ୍ୱର ଅନ୍ୟତମ ସ୍ରଷ୍ଟା ବିଶ୍ୱବିଖ୍ୟାତ ପଦାର୍ଥ ବିଜ୍ଞାନୀ ଡଃ. ସତ୍ୟେନ୍ ବୋଷ ବିଶେଷ ଅତିଥି ରୂପେ ଯୋଗ ଦେଇଥିଲେ । ଡଃ. ବୋଷ ବିଶ୍ୱବିଦ୍ୟାଳୟ ଉଚ୍ଚ ଶ୍ରେଣୀମାନଙ୍କରେ ମଧ୍ୟ ପଦାର୍ଥ ବିଜ୍ଞାନ ବଙ୍ଗଳାଭାଷାରେ ପଢାଯିବାର ପକ୍ଷପାତୀ ଥିଲେ । ଏହାଛଡ଼ା ପିଲାଙ୍କ ପାଇଁ ଓ ସର୍ବସାଧାରଣଙ୍କ ପାଇଁ ସେ ଅନେକ ବିଜ୍ଞାନ ପୁସ୍ତକ ବଙ୍ଗଳା ଭାଷାରେ ଲେଖିଛନ୍ତି । ଡଃ. ବୋଷ ଜାପାନରେ ଅନୁଷ୍ଠିତ ଏକ ବିଜ୍ଞାନ ସମ୍ମିଳନୀରେ ଯୋଗଦେଇସାରି ସେହିଠାରୁ ସିଧା ଏ ସମ୍ମିଳନୀକୁ ଆସିଥାଆନ୍ତି । ସେ କହିଲେ ଯେ ଟୋକିଓରେ ଅନୁଷ୍ଠିତ ସେହି ସମ୍ମିଳନୀରେ ସବୁ ବୈଜ୍ଞାନିକ ନିଜ ମାତୃଭାଷାରେ କହିଲେ । ମାତ୍ର ଡଃ. ବୋଷଙ୍କୁ ଇଂରାଜୀରେ କହିବାକୁ ବାଧ୍ୟ କଲେ । ଅବଶ୍ୟ ତାହା ଅନ୍ୟାନ୍ୟ ଭାଷାରେ ଅନୂଦିତ ହୋଇଗଲା । ପ୍ରକାଶ ଥାଉକି, ସେତେବେଳେ ପ୍ରଧାନମନ୍ତ୍ରୀ ଥାଆନ୍ତି ଜବାହରଲାଲ ନେହେରୁ । ଶିକ୍ଷାୟତନମାନଙ୍କରେ, ବିଶେଷକରି ଉଚ୍ଚତର ଶିକ୍ଷାୟତନରେ ଇଂରାଜୀ ମାଧ୍ୟମରେ ଶିକ୍ଷା ଦିଆଯିବା ନିହାତି ଆବଶ୍ୟକ ବୋଲି ନେହେରୁଙ୍କ ମୁଣ୍ଡରେ ପଶିଯାଇଥାଏ । ଡଃ. ବୋଷ ନେହେରୁଙ୍କ ନାଁ ନ ନେଇ ତାଙ୍କୁ ଲକ୍ଷ୍ୟକରି ସମାଲୋଚନା କଲେ ଓ ଶିକ୍ଷାଦାନ ମାଧ୍ୟମରୂପେ ଇଂରାଜୀର ଅପରିହାର୍ଯ୍ୟତା ସପକ୍ଷରେ ଥିବା ଯୁକ୍ତିକୁ ଖଣ୍ଡନ କଲେ । ପ୍ରକାଶ ଥାଉକି, ସ୍ୱୟଂ ନେହେରୁଙ୍କ କାର୍ଯ୍ୟକାଳ ଭିତରେ ସତ୍ୟେନ୍ ବୋଷଙ୍କୁ ଜାତୀୟ ଅଧ୍ୟାପକରୂପେ ସମ୍ମାନୀତ କରାଯାଇଥିଲା ।

ଥରେ ବିଜୁପଟ୍ଟନାୟକଙ୍କ ଦିଲ୍ଲୀଘରେ ତାଙ୍କ ଝିଅ ଖ୍ୟାତନାମା ଆନ୍ତର୍ଜାତିକ ଲେଖିକା ଗୀତା ମେହେଟା ଙ୍କ ସହ ଦେଖାହେଲା । ମୁଁ ବିଜୁବାବୁଙ୍କ ସାମ୍ନାରେ ତାକୁ ପ୍ରଶ୍ନ କଲି, "ତମେ ଓଡ଼ିଆ ଜାଣିଛ ?" ସେ ମନା କଲା । ସେ ଓଲଟା ଅଭିଯୋଗ କଲା, "ବାପା କ'ଣ ମୋ ପାଇଁ ଓଡ଼ିଆ ଶିକ୍ଷକ ରଖିଥିଲେ କି ? ମୁଁ କିପରି ଏଠି ଓଡ଼ିଆ ଶିଖି ଥାଆନ୍ତି ?" ମୁଁ ବିଜୁବାବୁଙ୍କୁ ଚାହିଁ ପଚାରିଲି, "କିହୋ ବିଜୁବାବୁ, ତମେ ଗୀତାକୁ ଓଡ଼ିଆ ପଢ଼େଇ ନାହଁ ?" ସେ କହିଲେ, "ସେ ତ' ପଢ଼ିଲା ନାହିଁ । ମୁଁ କ'ଣ କରିବି ?" ମୁଁ ତାପରେ ମୋର ବନ୍ଧୁ ଡ. ଦେବୀ ପ୍ରସନ୍ନ ପଟ୍ଟନାୟକ ଓଡ଼ିଆ ଶିକ୍ଷା ସଂପର୍କରେ ଲେଖିଥିବା ବହି ଗୀତାକୁ ଦେଲି । ସେ ମଧ୍ୟ ମୋତେ ପ୍ରତିଶ୍ରୁତି ଦେଇଥିଲା ଓଡ଼ିଆ ଶିଖିବ ବୋଲି । ତେବେ ତା'ପରେ ପରେ ସେ ତା ସ୍ୱାମୀ (ଯେ କି ସେତେବେଳେ ବିଲାତର ଏକ ଖୁବ୍ ବଡ଼ ପ୍ରକାଶନ ସଂସ୍ଥାର ସଂଚାଳକ ଥିଲେ) ସହିତ ବିଲାତ ଚାଲିଗଲା । ସେ କେତେଦୂର ଓଡ଼ିଆ ଶିଖିଲା ମୁଁ ଆଉ ତା'ପରେ ଖବର ରଖିନାହିଁ ।

୧୯୫୭ ମସିହାର ଏକ ଘଟଣା ମୋର ଏବେ ମନେପଡୁଛି । ମୁଁ ଆମ ଗାଁ ଭାଁଅରାଗଡ଼ରେ ମଧୁଲିମାୟେଙ୍କୁ ନେଇ ଏକ ସଭା କରାଇଥିଲି । ସେଥିରେ ମଧୁଲିମାୟେ ତାଙ୍କର ଭାଷଣ ହିନ୍ଦୀରେ ଦେଇସାରିବା ପରେ ମୁଁ ତାଙ୍କ ଭାଷଣର ଓଡ଼ିଆ ଅନୁବାଦ କରୁଥାଏ । ତାଙ୍କ ମାତୃଭାଷା ହେଉଛି ମରାଠୀ । ସେ କିନ୍ତୁ ସେଦିନ ମୋ ଓଡ଼ିଆ ଭାଷଣରେ ସକାଳ' ଓ 'ଦେଉଳ' ପ୍ରଭୃତି ଶବ୍ଦ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଏବଂ ପଚାରିଥିଲେ ଏ

ସବୁ କ'ଣ ଓଡ଼ିଆ ? ମୁଁ କହିଲି ହଁ । ତା ପରେ ମରାଠୀ ଓ ଓଡ଼ିଆ ମଧ୍ୟରେ ଏପରି ସାମଞ୍ଜସ୍ୟ ଦେଖିବାକୁ ମିଳିବାର ବିଭିନ୍ନ କାରଣ ସଂପର୍କରେ ଆମ ଦୁହିଁଙ୍କ ଭିତରେ ବେଶ୍ ଆଲୋଚନା ହେଲା ଏବଂ ଆମେ ଏହି ସିଦ୍ଧାନ୍ତରେ ସେଦିନ ପହଞ୍ଚିଥିଲୁ ଯେ, ଯଦି ଇଂରେଜୀ ଭାଷା ବାଧ୍ୟତା ମୂଳକ ହୋଇ ନଥାନ୍ତା ତାହେଲେ ପ୍ରାଦେଶିକ ଭାଷାମାନଙ୍କ ମଧ୍ୟରେ ସାନ୍ନିଧ ଆହୁରି ବୃଦ୍ଧିପାଇଥାନ୍ତା । ସେଦିନ ମୁଁ ଆୟୋଜିତ କରିଥିବା ସେ ସଭାରେ ମୋ ବୋଉ ତଥା ଆମ ପରିବାରର ସମସ୍ତେ ଉପସ୍ଥିତ ରହି ମୋତେ ଯେପରି ଉତ୍ସାହିତ କରିଥିଲେ ତାହା ଆଜି ପର୍ଯ୍ୟନ୍ତ ମଧ୍ୟ ମୋର ସ୍ମୃତିପଟରେ ରହିଛି ।

ମୁଁ ଯେତେବେଳେ ପୁରୀରୁ ଲୋକସଭା ପ୍ରାର୍ଥୀ ହେଲି ସେତେବେଳେ ସଂଯୁକ୍ତ ସୋସାଲିଷ୍ଟ ଦଳ ଏକମାତ୍ର ରାଜନୈତିକ ଦଳ ଯେକି ସ୍ପଷ୍ଟ ଦାବୀ କରିଥିଲେ ଯେ କୋର୍ଟ, କଚେରୀ ଏବଂ ସ୍କୁଲ, କଲେଜରେ ଇଂରାଜୀ ଏକ ଇଚ୍ଛାଧୀନ ଭାଷା ହୋଇ ରହୁ । ବାଧ୍ୟତା ମୂଳକ ନ ହେଉ । ଏଥିପାଇଁ ୧୯୬୦ରେ ଆମେ ଦେଶବ୍ୟାପୀ ଆନ୍ଦୋଳନ କରିଥିଲୁ । ଆମେ ଠିକ୍ କଲୁ ଯେ ଯେଉଁ ସାଇନ୍‌ବୋର୍ଡ଼ରେ ଇଂରାଜୀ ଲେଖାଥିବ ଆମେ ସେଥିରେ କଳା ବୋଳିବୁ । ଏ ଆନ୍ଦୋଳନ ଓଡ଼ିଶାରେ ଏକ ନାଟକୀୟ ଢଙ୍ଗରେ ଆରମ୍ଭ ହେଲା ।

ଏ ଘଟଣା ମୋ ବାହାଘରର ଦୁଇମାସ ପରର ଘଟଣା । ଆମ ଗାଁରୁ ଭୁବନେଶ୍ୱର ୧୫ କିଲୋମିଟର । ସେ ଦିନ ମୂଷଳ ଧାରାରେ ବର୍ଷା । ଆମ ଗାଁରୁ ଆମେ ଛ'ଜଣ ଠିକ୍ କଲୁ ଯେ ସେ ଦିନ ସାଇକେଲରେ ଭୁବନେଶ୍ୱର ଆସିବୁ ଏବଂ ବାଟରେ ଯେତିକି ମାଇଲଖୁଣ୍ଟ ଅଛି ସେଥିରେ ଇଂରେଜୀରେ ଲେଖାଥିଲେ ସେଥିରେ କଳା ବୋଳିବୁ । ଗ୍ରାମାଞ୍ଚଳରେ ମାଇଲଖୁଣ୍ଟ, ସେଥିରେ ପୁଣି ଇଂରାଜୀ! ଗାଁ ଲୋକେ ସେଥିରୁ କ'ଣ ବୁଝିବେ ? ସେ ଖୁଣ୍ଟ ଗୁଡ଼ାକରେ କଳା ବୋଳିବୋଳି ଆସି ପହଞ୍ଚିଲୁ ଭୁବନେଶ୍ୱରରେ । ତାପରେ ଆରମ୍ଭ କଲୁ ସେକ୍ରେଟାରୀଏଟ୍‌ରୁ ଇଂରାଜୀ ହଟାଇବା ପାଇଁ ସତ୍ୟାଗ୍ରହ । ଆମେ ଧରିନେଇ ଥାଉ ଯେ ଯିଏ ସତ୍ୟାଗ୍ରହୀ ହେବ ସେ ଜେଲ୍ ଯିବାକୁ ପ୍ରସ୍ତୁତ ଥିବ ଏବଂ ଜେଲ୍‌ଗଲେ ଜାମିନ୍‌ରେ ଆସିବ ନାହିଁ । ଏପରିକି ମାଜିଷ୍ଟ୍ରେଟ୍ ଜାମିନ୍ ଦେଲେ ମଧ୍ୟ ସେ ଗ୍ରହଣ କରିବ ନାହିଁ । ଯେତେଦିନ କାରାଦଣ୍ଡ ହୋଇଥିବ ସେତକ ସେ ଭୋଗକରିସାରି ଆସିବ । ମୋର ମନେ ଅଛି ଆମେ ଭୁବନେଶ୍ୱରରେ ପହଞ୍ଚିଲା ବେଳକୁ ଭୋର ହୋଇଯାଇଥିଲା । ଆମେ ଯେଉଁ ଦିଗରୁ ଭୁବନେଶ୍ୱରରେ ପ୍ରବେଶ କଲୁ ଆରମ୍ଭରୁ ଯେଉଁ ବଡ଼ ସାଇନ୍‌ବୋର୍ଡ଼ ଦେଖିଲୁ ସେଥିରେ ଇଂରାଜୀରେ ଲେଖାଥିଲା ସେଥିରୁ ଆମ ଭିତରୁ ଜଣେ ଚଢ଼ି କଳା ବୋଳିଲା । ଉଦ୍ଦେଶ୍ୟ, ଭୁବନେଶ୍ୱରରେ ପ୍ରବେଶ କରୁ କରୁ ଜଣେ ବୁଝି ପାରିବ ଯେ ସହରରେ ସାଇନ୍‌ବୋର୍ଡ଼ କଳାବୋଳା ଆନ୍ଦୋଳନ ଚାଲିଛି । ଏମିତି କଳା ବୋଳି ବୋଳି ଆମେ ଦିନ ପ୍ରାୟ ୮ଟା ବେଳେ ଏମ୍.ଏଲ୍.ଏ. ନାରାୟଣ ସାହୁଙ୍କ କ୍ୱାର୍ଟରରେ ଆସି ପହଞ୍ଚିଲୁ । ସେଠି ଗାଧୋଇ ପାଧୋଇ ଆମେ ସେକ୍ରେଟେରୀଏଟ୍ ଅଭିମୁଖେ ଯିବା କଥା । ଆମେ ସେକ୍ରେଟେରୀଏଟ୍ ଅଭିଯାନରେ ଯିବୁ ବୋଲି ପୂର୍ବରୁ ନୋଟିସ୍ ଦେଇ ଦେଇଥିଲୁ । କାରଣ ସତ୍ୟାଗ୍ରହୀ କିଛି ଲୁଚାଛପା ବା ଅତର୍କିତ ଭାବେ କରିବା କଥା ନୁହେଁ । ଯାହା କରିବ ପ୍ରତିପକ୍ଷକୁ ଯଥେଷ୍ଟ

ସୂଚନା ଦେବା ଦରକାର । ଆମେ ସେକ୍ରେଟେରୀଏଟ୍ ପହଞ୍ଚିବା ପୂର୍ବରୁ ଆମକୁ ଗିରଫ କରି ନିଆଗଲା । ଆମେ ଜାମିନ୍ ନେବା ପାଇଁ ମନା କରିଦେଲୁ । ଖୋର୍ଦ୍ଧା ଜେଲ୍‌ରେ ତିନିମାସ କଟାଇ ଫେରିଲୁ ।

୧୯୬୦ରେ ଚାଲିଥିବା ଏହି 'ଇଂରାଜୀ'ହଟାଓ ଆନ୍ଦୋଳନର ପ୍ରବର୍ତ୍ତକ ମଧ ୧୯୬୭ରେ 'କଂଗ୍ରେସ ହଟାଓ' ଆନ୍ଦୋଳନର ପ୍ରବର୍ତ୍ତକ : ସେଇ ଜଣେ ଡଃ. ଲୋହିଆ । ଏ ଉଭୟ ଆନ୍ଦୋଳନ ପରସ୍ପରର ପରିପୂରକ ରୂପେ କାମ କଲା ।

୧୯୬୨ରେ ଚୀନ୍‌ର ଭାରତ ଆକ୍ରମଣକୁ ଓ ଭାରତ ସରକାରଙ୍କ ଚାଇନା ନୀତିକୁ କେବଳ ସମାଲୋଚନା କରି ନଥିଲେ । ସେ ତା'ର ଏକ ବିକଳ୍ପ ନୀତି ମଧ ପ୍ରଣୟନ କରିଥିଲେ । ସେତେବେଳେ ସମାଜବାଦୀ ଦଳ ତରଫରୁ ସେ "ଚୌଖମ୍ବା" ନାମରେ ଏକ ସାପ୍ତାହିକ ପତ୍ରିକା ମଧ୍ୟ ପ୍ରକାଶ କରୁଥିଲେ । ତା'ର ସମ୍ପାଦନା ଦାୟିତ୍ୱ ମୁଁ ଓ ମାମା ବେଲେଶ୍ୱରଂ ଦୟାଲ ନେଇଥାଉ । ସେ ହେଉଛନ୍ତି ଭାରତର ଏକ ମାତ୍ର ନେତା ଯେ କି ଗୁଜୁରାଟ, ମଧ୍ୟପ୍ରଦେଶ ଓ ରାଜସ୍ଥାନର ଆଦିବାସୀ ପୁଅ ଓ ଝିଅଙ୍କୁ ଶିକ୍ଷା ଦେଇ ରାଜନୀତିକୁ ଆଣିପାରିଥିଲେ । ସେମାନଙ୍କୁ ମଧ୍ୟରୁ ଅନେକ ବିଭିନ୍ନ ରାଜ୍ୟ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ରୂପେ କାମ କରିଛନ୍ତି । ତାଙ୍କୁ ଆଦିବାସୀମାନେ "ମାମା" ବା "ମାମୁ" ବୋଲି ସମ୍ବୋଧନ କରିଥାଆନ୍ତି । ତେଣୁ ସେ ମାମା ବେଲେଶ୍ୱର ରୂପେ ପରିଚିତ । ଭାରତ ସରକାରଙ୍କ ଚୀନ୍ ନୀତିକୁ ସମାଲୋଚନା କରି 'ଚୌଖମ୍ବା'ରେ ନିୟମିତ ବିଭିନ୍ନ ଲେଖା ପ୍ରକାଶ ପାଇଲା । ଫଳରେ ନେହେରୁ ପ୍ରତିଶୋଧ ପରାୟଣ ହୋଇ 'ଚୌଖମ୍ବା' ସମ୍ପାଦନାମଣ୍ଡଳୀ ବିରୁଦ୍ଧରେ ଭାରତ ରକ୍ଷା ଆଇନ୍‌କୁ ଭିତ୍ତିକରି ଏକ ମକଦ୍ଦମା କଲେ । ଚାଇନାର ଭାରତ ଆକ୍ରମଣ ର ବହୁଦିନ ପରେ ହଠାତ୍ ସେ ମକଦ୍ଦମାକୁ ନେଇ ଆମ ନାଁରେ ବାହାରି ଥିବା ୱାରେଣ୍ଟ କୁ କାର୍ଯ୍ୟକାରୀ କରାଗଲା ଆମେ ଅବଶ୍ୟ ସେତେବେଳକୁ ଭୁଲିଯାଇଥାଉ ଯେ ୱାରେଣ୍ଟ ଥିଲା ବୋଲି ଆମ ପତ୍ରିକା କାର୍ଯ୍ୟାଳୟ ଥିଲା ଇନ୍ଦୋରରେ । ଏଣୁ ମଧ୍ୟପ୍ରଦେଶ ପୋଲିସ ୱାରେଣ୍ଟ ଧରି ପହଞ୍ଚିଲେ ବ୍ରହ୍ମପୁରରେ । ସେତେବେଳେ ମୋ ସ୍ତ୍ରୀ ବ୍ରହ୍ମପୁର ଭେଷଜ ମହାବିଦ୍ୟାଳୟରେ ଅଧ୍ୟାପିକା ଥାଆନ୍ତି । ମୁଁ ସେଠୁ ଗିରଫ ହୋଇ ଇନ୍ଦୋର ଗଲି । ଇନ୍ଦୋର କୋର୍ଟରେ ମକଦ୍ଦମା ଫଏସଲା ହେବାପରେ ମୋତେ ଓ ମାମାଙ୍କୁ ଜେଲରୁ ଖଲାସ କରି ଦିଆଗଲା ।

ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ତରଫରୁ ଓଡ଼ିଶାରେ ଯେଉଁ ଚାଷୀ ଆନ୍ଦୋଳନ ଏକଦା କରାଯାଇଥିଲା, ତା'ର କେନ୍ଦ୍ରସ୍ଥଳ ଥିଲା ବରଗଡ଼ ଜିଲ୍ଲା । ସେ ଆନ୍ଦୋଳନରେ ଦୁଇଜଣ ମୁଖ୍ୟ କର୍ଣ୍ଣଧାର ଥିଲେ ଶ୍ରୀ ଗଣନାଥ ପ୍ରଧାନ ଓ ଶ୍ରୀ କିଷାନ୍ ପଟ୍ଟନାୟକ । ମୁଁ ପ୍ରାୟ ପ୍ରତି ମାସରେ ସେଠାକୁ ଯାଉଥିଲି । ଏହା ଭିତରେ ୧୯୬୨ ଲୋକସଭା ନିର୍ବାଚନ ଆସିଲା । ତା'ପୂର୍ବରୁ ବିଜୁ ପଟ୍ଟନାୟକ ବହୁ ଭୋଟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥାଆନ୍ତି । କଂଗ୍ରେସରୁ ବହୁ ପ୍ରାର୍ଥୀ ବିଧାନସଭାକୁ ଜିତିକରି ଆସି ଥାଆନ୍ତି । ବିଜୁବାବୁ କଂଗ୍ରେସର ନେତୃତ୍ୱ ନେଇ ୧୯୬୨ ଲୋକ ସଭା ନିର୍ବାଚନ ଦାୟିତ୍ୱରେ ଥାଆନ୍ତି ।

ସେତେବେଳେ ତାଙ୍କର ଅଖଣ୍ଡ ପ୍ରଭାବ । ସେ ଯେଉଁଠି କଂଗ୍ରେସ ପ୍ରାର୍ଥୀ

ଦେଉଥାଆନ୍ତି ତା' ବିରୁଦ୍ଧରେ ଅନ୍ୟ କୌଣସି ଦଳ ପ୍ରାର୍ଥୀ ଦେବାକୁ ଡରୁ ଥାଆନ୍ତି । ଏହାଭିତରେ ବରଗଡ଼ ଚାଷୀ ସମସ୍ୟା ବିଶେଷ କରି ଜଳକର ବୃଦ୍ଧି ସମସ୍ୟାକୁ ନେଇ କିଷନ୍ ଓ ବିଜୁବାବୁଙ୍କ ଭିତରେ ଖୁବ୍ ଯୁକ୍ତିତର୍କ, କଥା କଟାକଟି ହୋଇଥାଏ । ବିଜୁବାବୁ କିଷନ୍‌ଙ୍କ ପ୍ରତି ଦୁର୍ବ୍ୟବହାର କରିଥାଆନ୍ତି । ଏ କଥା ଚାରିଆଡ଼େ ପ୍ରଚାର ହୋଇଯିବା ପରେ କିଷନ୍ ପଟ୍ଟନାୟକଙ୍କ ପ୍ରତି ତାଙ୍କ ଅଞ୍ଚଳରେ ଲୋକସମର୍ଥନ ଖୁବ୍ ବଢ଼ିଗଲା । ବିଜୁବାବୁ ବଦ୍‌ନାମ୍ ହେଲେ । ଲୋକସଭା ନିର୍ବାଚନ ଆସିଲା । ମୁଁ ସେତେବେଳକୁ ନିର୍ବାଚନ ଲଢ଼ିବା ଚିନ୍ତା ମଧ କରି ନଥାଏ । ଆମେ କିଷନ୍‌ଙ୍କୁ ନିର୍ବାଚନରେ ଠିଆ କରିବା ସ୍ଥିର କଲୁ । ମୁଁ ଓ ଗଣନାଥ ବାବୁ ସେଠି ମୁଖ୍ୟ ଦାୟିତ୍ୱରେ ରହିଲୁ । ନିର୍ବାଚନ ପୂର୍ବରୁ କିଷନ୍ ସେଠି ସତ୍ୟାଗ୍ରହ କଲେ ଓ ଜେଲ୍ ଗଲେ । ଆମେ ସ୍ଥିର କରିଥାଉ ଯେ ଯିଏ ସତ୍ୟାଗ୍ରହ କରି ଜେଲ୍ ଯିବ ସେ ଜାମିନ୍‌ରେ ଆସିବ ନାହିଁ । କିଷନ୍ ଜେଲ୍‌ରେ ରହିଲେ ଓ ସେଉଠୁ ନିର୍ବାଚନ ଲଢିଲେ ।

ବିଜୁବାବୁ ସେତେବେଳେ ଯାହା ପାଖରେ ପଇସା ନାହିଁ ତାକୁ ତାଚ୍ଛଲ୍ୟ କରୁଥାଆନ୍ତି । କହିଲେ "କିଷନ୍ ପଟ୍ଟନାୟକ ପାଖରେ ପଇସା ନାହିଁ । ସିଏ କି ଭୋଟ୍ ଲଢ଼ିବ ?" ଆମେ ଏଇଟାକୁ ଗୋଟାଏ ଚାଲେଞ୍ଜ ରୂପେ ନେଇଗଲୁ ଓ ପୁରାଦମ୍‌ରେ ନିର୍ବାଚନ ପ୍ରଚାରରେ ଲାଗିଗଲୁ । ଆଶ୍ଚର୍ଯ୍ୟର କଥା, ବିଜୁବାବୁଙ୍କ ପ୍ରାଣ ମୂର୍ଚ୍ଛା ଚେଷ୍ଟା ସତ୍ତ୍ୱେ ତାଙ୍କ ପ୍ରାର୍ଥୀ ପରାଜୟ ସ୍ୱୀକାର କଲେ । କିଷନ୍ ଜେଲରେ ଥାଇ ନିର୍ବାଚିତ ହେଲେ । ଏହା ସେତେବେଳେ ରାଜନୈତିକ ମହଲରେ ଚହଳ ପକାଇଥିଲା । କିଷନ୍ ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇଗଲେ ଓ ସେଠି ୧୯୬୭ ସାଲ ପର୍ଯ୍ୟନ୍ତ ରହିଲେ । ଗଣନାଥ ବାବୁ ଆଉ କିଷନ୍ ଏବେ ଦିହେଁ ଯାକ ଆଗ ପଛ ହୋଇ ଆମ ଗହଣରୁ ବିଦାୟ ନେଇଗଲେ !

୧୯୬୭ରେ ମୁଁ ଯେତେବେଳେ ପାର୍ଲାମେଣ୍ଟ ସଭ୍ୟ ହେଲି ସେହି ଗୋଟିଏ ବର୍ଷ ଡ: ଲୋହିଆଙ୍କ ସହ ପାର୍ଲାମେଣ୍ଟରେ ବସିବାର ସୁଯୋଗ ପାଇଲି । ୧୯୬୮ରେ ତାଙ୍କର ମୃତ୍ୟୁ ହେଲା । ସେହି ବର୍ଷଟିଏ ତାଙ୍କ ସହିତ ସେଠି ସହକର୍ମୀ ରୂପେ କାମ କରିବାର ଯେଉଁ ସୌଭାଗ୍ୟ ମୋର ଜୁଟିଥିଲା ତାର ମୁଁ ପୂର୍ଣ୍ଣ ସଦ୍‌ବ୍ୟବହାର କରିଥିଲି । ସେ ବର୍ଷଟି ମୁଁ ତାଙ୍କ ସଂସ୍ପର୍ଶରେ ଆସି ସଂସଦୀୟ ପଦ୍ଧତି ସଂପର୍କରେ ଜ୍ଞାନ ଅର୍ଜନ କଲି ଓ ସେଠି ନିଜ ବକ୍ତବ୍ୟ କିପରି ନିର୍ଭୀକ ଭାବେ ଉପସ୍ଥାପନ କରିବାକୁ ହୁଏ ତାଙ୍କ ଠାରୁ ଶିଖିଲି । ତାଙ୍କ ଠାରୁ ପାଇଥିବା ଏହି ଶିକ୍ଷା ଏବଂ ଅନୁଭୂତି ମୋର ପରବର୍ତ୍ତୀ ଜୀବନରେ ଏକ ବହୁମୂଲ୍ୟ ପାଥେୟ ହୋଇ ପାରିଛି ।

ମୁଁ ଯେତେବେଳେ ଲୋକସଭାକୁ ପୁରୀରୁ ପ୍ରାର୍ଥୀ ହେଲି ମୋ ବିରୁଦ୍ଧରେ ପ୍ରାର୍ଥୀ ଥାଆନ୍ତି ଜଣେ ପୁରୁଖା କଂଗ୍ରେସ ନେତା, ସେ ସମୟର କେନ୍ଦ୍ରମନ୍ତ୍ରୀ ବିବୁଧେନ୍ଦ୍ର ମିଶ୍ର । ସେ ମନ୍ତ୍ରୀ ଥାଇ ନିର୍ବାଚନ ଲଢୁଥାଆନ୍ତି । ମୁଁ ଏକମାତ୍ର ବିରୋଧୀ ପ୍ରାର୍ଥୀ । ତାଙ୍କର ମୋର ସିଧା ଲଢ଼େଇ । ମୋର ବିଭିନ୍ନ ପ୍ରତିଶ୍ରୁତି ଭିତରେ ଥିଲା ଯେ ମୁଁ ନିର୍ବାଚିତ ହୋଇଗଲେ ଲୋକସଭାରେ ମୁଁ ମୋ ମାତୃଭାଷା ଓଡ଼ିଆରେ ଅଥବା ରାଷ୍ଟ୍ରଭାଷା ହିନ୍ଦିରେ ଭାଷଣ ଦେବି । ମୁଁ ନିର୍ବାଚିତ ହେଲି । ମୁଁ ଜିତିବି ବୋଲି ଭାବିଥିଲି । ମାତ୍ର ଏତେ ଭୋଟରେ ଜିତିବି ବୋଲି

ଆଶା କରି ନଥିଲି । ତେବେ "କଂଗ୍ରେସ ହଟାଓ" କଥାଟା ଲୋକଙ୍କ ମନକୁ ଏପରି ଭେଦି ଯାଇଥିଲା ଯେ ଲୋକେ ମୋତେ ବହୁଭୋଟରେ ଜିତାଇଲେ । 'ଇଂରାଜୀ ହଟାଓ' କଥାଟା ମଧ ଲୋକଙ୍କ ମନକୁ ପାଇଯାଇଥିଲା ଯେଉଁଥିପାଇଁ କି ମୋର ପାର୍ଲାମେଣ୍ଟରେ ଓଡ଼ିଆ ବା ହିନ୍ଦିରେ ଭାଷଣ ଦେବା କଥାଟା ମଧ ଲୋକଙ୍କୁ ଉଦ୍ଦୀପିତ କଲା ।

ଲୋହିଆଙ୍କ ସଂସ୍କାର ନେଇ ଆମେ ଯେଉଁମାନେ ରାଜନୀତି କରୁଥିଲୁ ଆମେ ସ୍ଥିର କରିଥିଲୁ ଯେ ଲୋକଙ୍କୁ କୌଣସି ମିଛ ପ୍ରତିଶ୍ରୁତି ଦେବୁନାହିଁ । ଯାହା ପ୍ରତିଶ୍ରୁତି ଦେଇଥିବୁ ତାକୁ ଯଥାସାଧ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିବୁ । ମୁଁ ପାର୍ଲାମେଣ୍ଟକୁ ଜିତିକରି ଆସିଲା ବେଳକୁ ମୋର ସୌଭାଗ୍ୟ ଯେ ଡଃ. ଲୋହିଆ ମଧ ପାର୍ଲାମେଣ୍ଟକୁ ଜିତିକରି ଆସିଥାଆନ୍ତି । ମଧୁଲିମାୟେ ଥାଆନ୍ତି ସେଠି ଆମର ନେତା । ମୁଁ ଯାଉ ଯାଉ ଉପନେତା ହୋଇଗଲି ଓ ଆଗଧାଡ଼ିରେ ବସିଲି । ପାର୍ଲାମେଣ୍ଟକୁ ପ୍ରଥମ କରି ସଭ୍ୟ ହୋଇ ଆସିଥିବା ପ୍ରତିନିଧି ଯେଉଁ ପ୍ରଥମ ଭାଷଣ ଦିଏ ତାକୁ କୁହାଯାଏ 'ମେଡେନ୍ ସ୍ପିଚ୍' । ସେଦିନ ସେ ଗେହ୍ଲାପୁଅ । ପାର୍ଲାମେଣ୍ଟରେ ଜଣେ ସଭ୍ୟ ଭାଷଣ ଦେଉଥିବା ବେଳେ ତାଙ୍କ ଭାଷଣରେ କାହାକୁ କିଛି ଖଟ୍‌କା ଲାଗିଲେ ସେ ସେହି ଭାଷଣ ମଝିରେ 'ପଏଣ୍ଟ ଅବ୍ ଅର୍ଡ଼ର' ଉଠାଇ ପାରିବେ ଓ ପୂର୍ବୋକ୍ତ ବକ୍ତାଙ୍କ ବକ୍ତବ୍ୟ ସଂପର୍କରେ ନିଜର ସଂଶୋଧନ ମୂଳକ ମନ୍ତବ୍ୟ ଦେଇ ପାରିବେ । କିନ୍ତୁ 'ମେଡେନ୍ ସ୍ପିଚ୍' ଚାଲିଥିବା ବେଳେ କେହି ସେପରି ମଝିରୁ ବାଧା ଦେଇପାରିବେ ନାହିଁ ।

ମୁଁ ଖୁବ୍ ଆତ୍ମବିଶ୍ୱାସ ନେଇ ଠିଆ ହେଲି କହିବା ପାଇଁ । ଆଦୌ ଡର ନଥାଏ । ବରଂ ମୁଁ ନିଜ ଭାଷାରେ କହିବି – ଏହା ମୋତେ ଗର୍ବିତ କରୁଥାଏ । ମୁଁ ଗୁରୁ ଗମ୍ଭୀର ସ୍ୱରରେ ଆରମ୍ଭ କଲି – 'ବାଚସ୍ପତି ମହାଶୟ' । ସେଠି ତ କରତାଳି ମନା । କିନ୍ତୁ ଟେବୁଲ୍ ବାଡ଼େଇ ଜଣକ କଥାକୁ ସମର୍ଥନ ଜଣାଇ ପାରିବ । ମୁଁ ଓଡ଼ିଆରେ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଟେବୁଲ୍ ବାଡ଼ିଆରେ ଲୋକସଭା ଉଚ୍ଛୁଳି ପଡ଼ିଲା । ଲୋକସଭାରେ ଏହା ପୂର୍ବରୁ କେହି କେବେ ନିଜ ମାତୃଭାଷାରେ ଭାଷଣ ଦେଇ ନଥିଲେ । ମାତ୍ର ମୁଁ ମୋର ମେଡେନ୍ ସ୍ପିଚ୍ ନିଜ ମାତୃଭାଷାରେ ଦେଉଥିବାରୁ ପ୍ରବୀଣ, ନବୀନ ସମସ୍ତ ପ୍ରତିନିଧି ଟେବୁଲ୍ ବାଡ଼େଇ ମୋତେ ଉତ୍ସାହିତ କଲେ । ମୋତେ ୬୦ ମିନିଟ୍ ସମୟ ମିଳିଥାଏ । ମୁଁ ପ୍ରଥମ ୩୦ ମିନିଟ୍ ଓଡ଼ିଆରେ ଏବଂ ପରବର୍ତ୍ତୀ ୩୦ ମିନିଟ୍ ହିନ୍ଦିରେ କହିଲି । ସେତେବେଳେ ମଧ ସେହିପରି ଟେବୁଲ୍ ବାଡ଼ିଆ ହେଲା । ମୁଁ କହି ସାରିବା ପରେ ମୋ ବନ୍ଧୁ ଜେ. ଏଚ୍. ପଟେଲ (ଯେ କି ପରେ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ହେଲେ) କନ୍ନଡ଼ ଭାଷାରେ ଭାଷଣ ଦେଲେ ।

୧୯୬୭ ବେଳକୁ ସମ୍ବିଧାନ ଲାଗୁହେବାର ୧୭ ବର୍ଷ ହୋଇଗଲାଣି । ସମ୍ବିଧାନରେ ଅଷ୍ଟମ ସୂଚୀରେ ସ୍ପଷ୍ଟ ଉଲ୍ଲେଖ ଅଛି ଯେ ଭାରତବର୍ଷର ୧୬ଟା ଯାକ ରାଜ୍ୟର ଭାଷା ଜାତୀୟ ଭାଷା । ଏଣୁ ଓଡ଼ିଆ ଏକ ଜାତୀୟ ଭାଷା । ଇଂରାଜୀ ଭାଷା ଜାତୀୟ ଭାଷା ରୂପେ ଗୃହୀତ ହୋଇନାହିଁ । ଅଥଚ ପାର୍ଲାମେଣ୍ଟରେ ସଭ୍ୟମାନେ ନିଃସଙ୍କୋଚରେ ଇଂରାଜୀରେ ଭାଷଣ ଦେଇ ଚାଲିଥିଲେ ଅଥଚ ସମ୍ବିଧାନ ସ୍ୱୀକୃତ ନିଜ ମାତୃଭାଷାରେ ଭାଷଣ

ଦେବାକୁ ସଂକୋଚ ବୋଧ କରୁଥିଲେ । ଏହାଠାରୁ ବଳି ବଡ଼ ବିଡ଼ମ୍ବନା କ'ଣ ଥାଇପାରେ! ମୁଁ ସାହସ କରି ଏ ଅସୁସ୍ଥ ପରମ୍ପରା ଭାଙ୍ଗିଲି । ଅଧିକ ସନ୍ତୋଷ ଲାଭ କଲି ଯେ ମୋ ନିର୍ବାଚନ ମଣ୍ଡଳୀର ଭୋଟଦାତାଙ୍କୁ ଦେଇଥିବା ଗୋଟିଏ ପ୍ରତିଶ୍ରୁତି ଅକ୍ଷରେ ଅକ୍ଷରେ ପାଳନ କରିପାରିଲି । ଏହି ଘଟଣା ପରେ ବାଚସ୍ପତି ଗୋଟିଏ ରୁଲିଂ ଦେଲେ ଯେ ସମ୍ବିଧାନ ସ୍ୱୀକୃତିପ୍ରାପ୍ତ କୌଣସି ଆଞ୍ଚଳିକ ଭାଷାରେ କେହି ସଭ୍ୟ ନିଜ ବକ୍ତବ୍ୟ ପେଶ୍ କରିବାକୁ ଚାହିଁଲେ ତାଙ୍କୁ ସେ ସୁଯୋଗ ଦିଆଯିବାର ବ୍ୟବସ୍ଥା କରାଯିବ । ଭାରତୀୟ ଭାଷା ଇତିହାସରେ ଏ କଥାଟି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ।

ତାପରେ ଆମେ ଯେତେବେଳେ ପାର୍ଲାମେଣ୍ଟ ପ୍ରତିନିଧି ଦଳରେ ଋଷିଆ ଗଲୁ ସେଠି କିପରି ସେମାନଙ୍କ ଲୋକ ପ୍ରତିନିଧି ସଭାରେ ସଭ୍ୟମାନେ ନିଜ ନିଜ ଆଞ୍ଚଳିକ ଭାଷାରେ ଭାଷଣ ଦେଉଥିଲେ ଓ ତାହା ଋଷୀୟ ଭାଷାରେ ଅନୂଦିତ ହୋଇଯାଉଥିଲା ସେ କଥା ତ କହିଛି । ତାପରେ ସେଠାରୁ ଫେରିଲା ପରେ ତତ୍କାଳୀନ ବାଚସ୍ପତି ସଞ୍ଜୀବ ରେଡ଼ି ଆମ ପାର୍ଲାମେଣ୍ଟରେ ସଙ୍ଗେ ସଙ୍ଗେ ଅନୁବାଦ ହୋଇଯିବାର ଅନୁରୂପ ଯାନ୍ତ୍ରିକ ବ୍ୟବସ୍ଥା ପ୍ରଚଳନ କଲେ । ଏବେ ମଧ୍ୟ ସେ ବ୍ୟବସ୍ଥା ରହିଛି । ମାତ୍ର ଅନେକଙ୍କର ଏବେ ମଧ ଇଂରାଜୀରେ କହିବାର ଗୋଟାଏ ବିଚିତ୍ର ସଉକ୍ ରହିଛି ।

ପାର୍ଲାମେଣ୍ଟରେ ଆଞ୍ଚଳିକ ଭାଷାରେ ଭାଷଣ ଦେବାର ଏହି ପରମ୍ପରା ଆରମ୍ଭ ହୋଇଯିବା ଫଳରେ ଆଉ ଏକ ସୁଫଳ ମିଳିଲା । ସେତେବେଳେ ମାନ୍ଦ୍ରାଜ୍‌ରେ ଡି.ଏମ୍.କେ ଦଳର ପ୍ରାଧାନ୍ୟ ଖୁବ୍ ବଢ଼ିଯାଇଥାଏ । ଡି.ଏମ୍.କେ. ନେତୃତ୍ୱରେ ହିନ୍ଦି ବିରୋଧୀ ଆନ୍ଦୋଳନ ପ୍ରବଳ ବେଗରେ ଦକ୍ଷିଣରେ ମାଡ଼ି ଚାଲିଥାଏ । ଆମ ଦଳ ଆଞ୍ଚଳିକ ଭାଷାର ଅଭିବୃଦ୍ଧି ଦିଗରେ ଗୁରୁତ୍ୱ ଦେଲା । ଆମେ ଦର୍ଶାଇ ଦେଲୁ ଯେ ଆଞ୍ଚଳିକ ଭାଷାମାନଙ୍କର ଅଭିବୃଦ୍ଧି ଦିଗରେ ବାସ୍ତବିକ୍ ଇଂରାଜୀ ଭାଷା ଉପରେ ଦିଆଯାଉଥିବା ମାତ୍ରାଧିକ୍ୟ ଗୁରୁତ୍ୱ ହିଁ ଅନ୍ତରାୟ ହେଉଛି । ପାର୍ଲାମେଣ୍ଟରେ ଯେତେବେଳେ ଆଞ୍ଚଳିକ ଭାଷାରେ ମୁଁ ଭାଷଣ ଦେଲି ଅନେକ ତାମିଲ୍ ଭାଷାଭାଷୀ ପ୍ରତିନିଧି ମୋତେ ବଧେଇ ଜଣେଇଲେ । ତାମିଲ୍ ଭାଷାରେ ସେମାନେ ନିଜ ବକ୍ତବ୍ୟ ପେଶ୍ କରିବାର ସ୍ୱାଧୀନତା ପାଇଯିବାପରେ ସେମାନଙ୍କର ହିନ୍ଦୀ ବିରୋଧୀ ମନୋଭାବ ମଧ୍ୟ ବହୁତ ହ୍ରାସ ହୋଇଗଲା ।

ସୋସାଲିଷ୍ଟ ପାର୍ଟି ସାପ୍ତାହିକ 'ଚୌଖମ୍ବା'ର ସଂପାଦନା ଦାୟିତ୍ୱରେ ଥିବାବେଳେ ମୋତେ ଗିରଫ କରାଯାଇଥିବା କଥା ପୂର୍ବରୁ କହିଛି । ମଧ୍ୟପ୍ରଦେଶ ପୋଲିସ ମୋତେ ବ୍ରହ୍ମପୁରରୁ ଗିରଫ କରି ମଧ୍ୟପ୍ରଦେଶ ନେଲେ । ମୋତେ ସେମାନେ ନେବାବାଟରେ ଗୋଟିଏ ରାତି ଧର୍ମଶାଳାରେ ରହିବାକୁ ପଡ଼ିଲା । ସମ୍ଭବତଃ ତାହା ମଧ୍ୟପ୍ରଦେଶର କୌଣସି ଗୋଟିଏ ଛୋଟ ସହର ଥିଲା । ପରଦିନ ସକାଳୁ ଉଠି ମୁଁ ବାହାରେ ବୁଲୁଥିବା ସମୟରେ ଜଣେ ଗ୍ରାମୀଣ ମହିଳାଙ୍କ ଭାଷା ଶୁଣିବାକୁ ପାଇଲି । ମହିଳା ଜଣଙ୍କ ସକାଳୁ ଉଠିଥିବା ତାଙ୍କ ପିଲାଙ୍କୁ କହୁଥିଲେ, "ତୁମ୍ ମୂତୋ ଗେ କ୍ୟା ?" ମୁଁ ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲି ଏ ଭାଷା ଶୁଣି । କାରଣ ମୋର ଦୃଢ଼ ଧାରଣ ଥିଲା ଯେ 'ମୂତିବା' ଶବ୍ଦଟି କେବଳ ଆମ ଓଡ଼ିଶାରେ ହି

ପ୍ରଚଳିତ । ଏହା ପୁଣି ଏଠାକୁ ଆସିଲା କିପରି ? କୌତୂହଳବଶତଃ ମୋ ସହିତ ଥିବା ପୋଲିସ୍ ବାଲାକୁ ପଚାରିଲି "ଆପ୍ 'ମୂତୋଗେ' ଶବ୍ଦ କା ଇସ୍ତମାଲ କରତେ ହେଁ ?" ସେ କହିଲା, "ହାଁ ସାହେବ ! ଏ ତୋ ବହୁତ ପୁରାନା ଶବ୍ଦ ହେଁ । ଇସ୍‌ସେ ଆଚ୍ଛା ଶବ୍ଦ୍ ତ ଆର୍ କୋଇ ହୋଇ ନହିଁ ।" ସେଦିନ ତା କଥା ଶୁଣି ମୁଁ ଆହୁରି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଏହାପରେ ମୁଁ ଯେତେବେଳେ ବିହାର, ମଧ୍ୟପ୍ରଦେଶ ଓ ଉତ୍ତରପ୍ରଦେଶ ପ୍ରଭୃତି ରାଜ୍ୟର ବିଭିନ୍ନ ଗ୍ରାମ ଗସ୍ତ କଲି ସେତେବେଳେ ଦେଖିଲି ପ୍ରାୟ ଅଧିକାଂଶ ଓଡ଼ିଆ ପ୍ରଚଳିତ ଶବ୍ଦ ହିନ୍ଦୀରେ ମଧ୍ୟ ପ୍ରଚଳିତ । ଏହାପରେ ହିନ୍ଦୀ ଭାଷା କହିପାରିବି ବୋଲି ମୋର ଆତ୍ମବିଶ୍ୱାସ ବୃଦ୍ଧି ପାଇଥିଲା ଏବଂ ହିନ୍ଦୀରେ ମୋର କୌଣସି ବିଧିବଦ୍ଧ ଶିକ୍ଷା ନ ଥିଲେ ମଧ୍ୟ ମୁଁ ହିନ୍ଦୀରେ ଅନର୍ଗଳ ଭାଷଣ ଦେଇଚାଲିଲି । କାରଣ ସେତେବେଳେ ମୁଁ ଏକପ୍ରକାର ଧରିନେଇଥିଲି ଯେ ଯେଉଁ ଶବ୍ଦ ଗୁଡ଼ିକ ଓଡ଼ିଆରେ ଅଛି ତାହା ନିଶ୍ଚୟ ହିନ୍ଦୀରେ ଥିବ । ଏପରିକି ମୋର ନିର୍ଭୁଲ ହିନ୍ଦୀ ଭାଷଣ ଶୁଣି ପାଟଣା, ଲକ୍ଷ୍ନୌ, ଭୋପାଳ ଏବଂ ଜୟପୁର ପ୍ରଭୃତି ଅଞ୍ଚଳର ଲୋକମାନେ ମୋତେ ବାରମ୍ବାର ପ୍ରଶ୍ନ କରିଛନ୍ତି, "ରବିରାୟ ଜୀ ! ଆପ୍ କହାଁକି ହୋ ?" ହସି ହସି ମୁଁ ସେମାନଙ୍କୁ ଉତ୍ତର ଦିଏ ଓଡ଼ିଶାର ଜଗନ୍ନାଥ ଧାମ ପୁରୀରେ ମୋ ଘର । ତଥାପି ସେମାନେ ମୋ କଥାକୁ ବିଶ୍ୱାସ କରିପାରନ୍ତି ନି । ସେମାନେ ଭାବନ୍ତି ମୁଁ ନିଶ୍ଚେ ଉତ୍ତର ପ୍ରଦେଶ କିମ୍ବା ବିହାର ଲୋକ ହୋଇଥିବି ବୋଲି । ସେତେବେଳେ ଏହି ଭାଷାକୁ ନେଇ ମୋ ମନ ଭିତରେ ମୁଁ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିଲି ଯେ, ପ୍ରାଦେଶିକ ବିଭିନ୍ନତା ଦୃଷ୍ଟିରୁ ଭାଷା ଗୁଡ଼ିକ ଭିନ୍ନ ଭିନ୍ନ ହୋଇଥିଲେ ହେଁ ମୂଳତଃ ଏଗୁଡ଼ିକର ଉତ୍ସ ଗୋଟିଏ । ସକଳ ପ୍ରକାର ବିଭେଦ ସତ୍ତ୍ୱେ ଏହି ଭାଷା ମାଧ୍ୟମରେ ହିଁ ଆମ ଦେଶରେ ଏକତା ପ୍ରତିଷ୍ଠା ସମ୍ଭବ ।

ମୋର ଓଡ଼ିଆ ଭାଷା ଭାଷଣ ପ୍ରସଙ୍ଗରେ ଆଉ ଏକ ମଜା ଘଟଣା ମନେ ପଡ଼ୁଛି । ଇନ୍ଦିରା ଗାନ୍ଧୀଙ୍କ ଜରୁରୀ କାଳୀନ ପରିସ୍ଥିତି ହଟିଗଲା ପରେ ନିର୍ବାଚନରେ ଇନ୍ଦିରା ମଧ୍ୟ ପରାଜିତ ହୋଇ ହଟିଗଲେ । ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେଲେ ଏବଂ ଅଧିକାଂଶ ରାଜ୍ୟରେ ଜନତା ଦଳ ସରକାର ଗଢ଼ିଲେ । ଆସାମରେ ମଧ୍ୟ ଜନତା ସରକାର ଆସିଲା ଓ ମୁଖ୍ୟମନ୍ତ୍ରୀ ହେଲେ ଗୁଲାମ୍ ବାର୍‌ବୋରା । ସେ ପୂର୍ବରୁ ଆମ ଦଳର ସଭ୍ୟଥିଲେ ଓ ମୋର ଅନ୍ତରଙ୍ଗ ବନ୍ଧୁ । ସେ ଆସାମର ମୁଖ୍ୟମନ୍ତ୍ରୀ ହେବାପରେ ଗୌହାଟୀ ଠାରେ ଏକ ଜନସଭାରେ ଉଦ୍‌ବୋଧନ ଦେବା ପାଇଁ ମୋତେ ନିମନ୍ତ୍ରଣ କଲେ । ସେତେବେଳେ ମୁଁ ଥାଏ ଅଖିଳ ଭାରତୀୟ ଜନତା ଦଳର ସାଧାରଣ ସଂପାଦକ । ମୁଁ ସେ ସଭାରେ ଯୋଗ ଦେଇଥିଲି । ଜନତା ଦଳର ଲୋକପ୍ରିୟତା ସେତେବେଳେ ଶୀର୍ଷ ଦେଶରେ । ସେ ସଭାରେ ମୁଁ ଓ ତାଙ୍କ ମୁଖ୍ୟମନ୍ତ୍ରୀ ଭାଷଣ ଦେବେ ଜାଣି ଲୋକେ ହଜାର ହଜାର ସଂଖ୍ୟାରେ ରୁଣ୍ଡ ହୋଇ ଥାଆନ୍ତି । ମୁଁ ଓଡ଼ିଶାର ବୋଲି ସେମାନେ ଜାଣିଥିଲେ । ଅନେକ ଓଡ଼ିଆ ମଧ୍ୟ ମଞ୍ଚ ଉପରକୁ ଆସି ମୋତେ ନମସ୍କାର କଲେ । ମୁଁ କହିବାକୁ ଉଠନ୍ତେ ଚାରିଆଡ଼ୁ ଦାବୀ ହେଲା , "ରବି ରାୟ ଓଡ଼ିଆରେ କୁହନ୍ତୁ ।" ମୁଁ ଓଡ଼ିଆରେ ଭାଷଣ ଦେଲି । ସେଠି ମୋ ଭାଷଣ ସମୟରେ ଓ ପରେ ଯେପରି ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱସିତ କରତାଳି ମିଳିଥିଲା ତାପୂର୍ବରୁ ଏତେ ବଡ଼ ସଭାରେ ଏ

ଭଳି ସମ୍ବର୍ଦ୍ଧନା କେବେ ମୋତେ ମିଳି ନଥିଲା । ମୋର ସମ୍ଭାଷଣ ଭାଷଣ ଥିଲା ଓଡ଼ିଆରେ । ମୁଁ ମଞ୍ଚରୁ ଓହ୍ଲାଇ ଆସି ଯେତେବେଳେ ମୋର ଜଣେ ଆସାମୀ ବନ୍ଧୁଙ୍କୁ ସେ ମୋ ଭାଷଣରୁ କିଛି ବୁଝି ପାରିଲେ କି ପଚାରିଲି ସେ ଗଡ଼ଗଡ଼ ମୋ ବକ୍ତବ୍ୟର ସାରାଂଶ ଆସାମୀରେ କହିଗଲେ । ସେ ଦିନ ମୁଁ ବାର୍‌ବାରାଙ୍କୁ ଥଟ୍ଟାରେ କହିଲି, "ତୁ ସଭା ଡାକିଲୁ ଆଉ ଓଡ଼ିଆରେ କହି ସବୁ ଯାକ ତାଳି ମୁଁ ନେଇଗଲି ।"

ଓଡ଼ିଆ ଆସାମୀ ଭାଷା ଭିତରେ ରହିଥିବା ସୌସାଦୃଶ୍ୟ ସଂପର୍କରେ ଆଉ କେତେକ ମଜା କଥା ଜାଣିଲି । ଯଥା: ଆମର 'ଭିଣୋଇ' ଓ 'ଜ୍ୱାଇଁ' ଏଭଳି ଦୁଇଟି ଶବ୍ଦ ଅଛି । ଶଳା ଡାକିବ ଭିଣୋଇ ଓ ଶ୍ୱଶୁର ଡାକିବ 'ଜ୍ୱାଇଁ' । ମାତ୍ର ବଙ୍ଗଳାରେ ଉଭୟ ଡାକିବେ 'ଜାମାଇ' । କିନ୍ତୁ ଆସାମୀରେ ଆମଭଳି ଖାଲି ଦୁଇଟି ଶବ୍ଦ ନାହିଁ । ସେମାନେ ମଧ୍ୟ ଠିକ୍ ଆମଭଳି ଡାକନ୍ତି 'ଭିଣୋଇ' ଓ 'ଜ୍ୱାଇଁ' । ଓଡ଼ିଶାରୁ ବଙ୍ଗ ଟପିଲେ ଯାଇ ଆସାମ । ଅଥଚ ଓଡ଼ିଆ ଓ ଆସାମୀ ଭାଷା ଭିତରେ ଏତେ ସାମଞ୍ଜସ୍ୟ କିପରି ଦେଖାଦେଲା ? ହୁଏତ ଗୋଟାଏ ବଡ଼ କାରଣ ହୋଇଥାଇପାରେ ଶ୍ରୀ ଶଙ୍କର ଦେବଙ୍କ ମାଧ୍ୟମରେ ଆସାମ ଏବଂ ଓଡ଼ିଶା ଭିତରେ ବହୁ କାଳରୁ ସୃଷ୍ଟି ହୋଇଥିବା ଭାବଗତ ସଂପର୍କ ।

ଶଙ୍କର ଦେବ ପୁରୀ ଆସି ଅତିବଡ଼ି ଜଗନ୍ନାଥ ଦାସଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ପୁରୀରେ ଏବେ ବି ଶଙ୍କର ଦେବଙ୍କ ମଠ ରହିଛି । ଆସାମୀ ଅକ୍ଷରର ବଙ୍ଗଳା ଅକ୍ଷର ସହିତ ଅଧିକ ସୌସାଦୃଶ୍ୟ ଥିବା ବେଳେ ଭାଷାରେ ଓଡ଼ିଆ ସହିତ ଅଧିକ ସାଦୃଶ୍ୟ ରହିଛି । ଭାରତୀୟ ଭାଷାମାନଙ୍କ ଭିତରେ ରହିଥିବା ଏହି ସାଦୃଶ୍ୟମାନ ଇଂରାଜୀ ଭାଷାର ପ୍ରାବଲ୍ୟ ହେତୁ ଘୋଡ଼ାଇ ହୋଇ ପଡ଼ିଥିଲା । ଭାରତୀୟ ଭାଷାମାନଙ୍କର ପ୍ରାଧାନ୍ୟ ବଢ଼ିବାପରେ ସେମାନଙ୍କ ଭିତରେ ରହିଥିବା ସାଦୃଶ୍ୟ ଅଧିକରୁ ଅଧିକ ଲୋକ ଲୋଚନକୁ ଆସୁଛି । ମାତ୍ର ପରିତାପର ବିଷୟ, କିଛି ଇଂରାଜୀ ପ୍ରେମୀଙ୍କର ଇଂରାଜୀ ମୋହ ଏବଂ ଉଦାରୀକରଣ ଦ୍ୱାରା ପ୍ରଭାବରୁ ଭାଷା ସମନ୍ୱୟ ପ୍ରକ୍ରିୟା ଧିମେଇ ଯାଇ ପୁଣି ଭାଷା ବିଭେଦ ମୁଣ୍ଡ ଟେକୁଛି ।

ସୋଭିଏତ୍ ଇଉନିୟନ୍‌ରୁ ଫେରିବା ପରେ ପାର୍ଲାମେଣ୍ଟରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ନେତା ମଧୁଲିମାୟେ ମୋତେ କହିଲେ ଯେ, "ମୁଁ ଇସ୍ତଫା ଦେଇ ଦେଉଛି । ତୁମେ ନେତା ହୁଅ ।" ମୁଁ କାକୁତି ମିନତି ହୋଇ ତାଙ୍କର ଏପ୍ରସ୍ତାବକୁ ଅସ୍ୱୀକାର କଲି । ମୁଁ ନୂଆ ହୋଇ ପାର୍ଲାମେଣ୍ଟକୁ ଆସିଥିବା ଦୃଷ୍ଟିରୁ ଏ ଗୁରୁ ଦାୟିତ୍ୱ ମୁଣ୍ଡାଇ ପାରିବି ନାହିଁ ବୋଲି ତାଙ୍କୁ ବୁଝାଇଲି । ମାତ୍ର ତାଙ୍କର ଏକା ଜିଦ୍ । ସେ କହିଲେ "ମୁଁ ତୁମ ନାଁ ଘୋଷଣା କରି ସାରିଛି । ତୁମକୁ ଏ ଦାୟିତ୍ୱ ନେବାକୁ ହିଁ ପଡ଼ିବ ।" ଏଣୁ ରୁଷ୍ ଗସ୍ତରୁ ଫେରିବା ପରେ ମୋତେ ସଂଯୁକ୍ତ ସୋସାଲିଷ୍ଟ ଦଳର ପାର୍ଲାମେଣ୍ଟରେ ନେତୃତ୍ୱ ନେବାକୁ ପଡ଼ିଲା । ମଜାର ବିଷୟ ହେଲା ସେତେବେଳେ ତିନୋଟି ଯାକ ମୁଖ୍ୟ ବିରୋଧୀଦଳ ପାର୍ଲାମେଣ୍ଟରେ ନେତା ଥିଲୁ ଆମେ ତିନି ଓଡ଼ିଆ । ସୁରେନ୍ଦ୍ର ଦ୍ୱିବେଦୀ ଓ ପି. କେ. ଦେଓ ଥାଆନ୍ତି ଯଥାକ୍ରମେ ପ୍ରଜା ସୋସାଲିଷ୍ଟ ଦଳର ଓ ସ୍ୱତନ୍ତ୍ର ଦଳର ନେତା । ତାଙ୍କ ସାଙ୍ଗକୁ ମୁଁ ଆସିଗଲି ।

ସେହି ସମୟର ଗୋଟିଏ ଘଟଣା ମୋର ମନେ ପଡୁଛି । ସେତେବେଳେ ସିଧା

ଓଡ଼ିଶାକୁ କୌଣସି ଟ୍ରେନ୍ ଚାଲୁ ନଥିଲା । ରେଳବଜେଟ୍ ଆଲୋଚନା ଚାଲିଥାଏ । ମୁଁ ବାଚସ୍ପତିଙ୍କ ଅନୁମତି ନେଇ ସେ ଆଲୋଚନାରେ ଭାଗନେଲି । ମୁଁ କହିଲି "ଓଡ଼ିଶାର ଲୋକେ କ'ଣ ନିଆଁରେ ମୁତିଛନ୍ତି ? ରେଳ ବିଭାଗର ଓଡ଼ିଶା ପ୍ରତି ଏ ବୈମାତୃକ ମନୋଭାବ କାହିଁକି ?" ସେତେବେଳେ ରେଳବିଭାଗ ମନ୍ତ୍ରୀ ଥାଆନ୍ତି ରାମସେବକ ସିଂହ । ସେ ମୋର ଦାବୀ ପରେ ଓଡ଼ିଶାକୁ ଗୋଟିଏ ଟ୍ରେନ୍ ଚାଲିବ ବୋଲି ଘୋଷଣା କଲେ । ଉତ୍କଳ ଏକ୍ସପ୍ରେସ୍ ନାମରେ ଗୋଟିଏ ଟ୍ରେନ୍ ପ୍ରଥମ କରି ନୂଆଦିଲ୍ଲୀରୁ ପୁରୀ ଚାଲିଲା ।

ସେ ସମୟର ଆଉ ଏକ ଘଟଣା ମନେ ପଡୁଛି । ରନ୍ତଲେଇ ହୁକୁମ୍ ଘଟଣା । 'ନେପାଳୀ ବାବା' ରୂପେ ପରିଚିତ ଗୋଟିଏ ଷୋହଳ ବର୍ଷର ପିଲା ବିଭିନ୍ନ ଅସାଧ ରୋଗ ଭଲ କରି ଦେଇ ପାରୁଛି ବୋଲି ଚାରିଆଡ଼େ ପ୍ରଚାରିତ ହୋଇଗଲା । ଏପରିକି ଭାରତର କେଉଁ ଅନ୍ଦିବିକନ୍ଦିରୁ ଆତୁର ରୋଗୀ ଚିକିତ୍ସା ପାଇଁ ଅନୁଗୁଳ ନିକଟସ୍ଥ ରନ୍ତଲେଇକୁ ଧାଇଁଲେ । ସେତେବେଳେ ଗୌରୀଶଙ୍କର ପାର୍କ ପାଖରେ ରହୁଥାଆନ୍ତି ସ୍ୱନାମଧନ୍ୟ ସାହିତ୍ୟିକ ବିଞ୍ଛନ୍ଦ ଚରଣ ପଟ୍ଟନାୟକ । ସେ ଛୋଟା ଥିଲେ । ପ୍ରଚାରିତ ହୋଇଗଲା ଯେ ରନ୍ତଲେଇ ବାବାଙ୍କ କୃପାରୁ ତାଙ୍କ ପାଦ ସିଧା ହୋଇଯାଇଛି ଓ ସିଧା ଚାଲୁଛନ୍ତି । ଅବଶ୍ୟ ଅତିଶୀଘ୍ର ତାହା ମିଥ୍ୟା ବୋଲି ପ୍ରମାଣିତ ହେଲା । ସେତେବେଳେ ନବକୃଷ୍ଣ ଚୌଧୁରୀ ଥାଆନ୍ତି ମୁଖ୍ୟମନ୍ତ୍ରୀ । ହଠାତ୍ ଓଡ଼ିଶା ବାହାରୁ ଏତେ ସଂଖ୍ୟାରେ ଲୋକ ଆସି ସେଇ ଛୋଟିଆ ଗାଁରେ ପହଞ୍ଚିବେ ବୋଲି କେହି ଜାଣି ନଥିଲେ । ଫଳରେ ସ୍ୱାସ୍ଥ୍ୟ ସଂପର୍କୀୟ ଉପଯୁକ୍ତ ସତର୍କତା ମଧ୍ୟ ଅବଲମ୍ବନ କରାଯାଇପାରିଲା ନାହିଁ । ବେଶୀ ଯାତ୍ରୀ ଆସୁଥାଆନ୍ତି ପଡ଼ୋଶୀ ମଧ୍ୟପ୍ରଦେଶରୁ । ହଠାତ୍ ହଇଜା ଲାଗିଗଲା ଓ ଯାତ୍ରୀମାନେ ପୋକମାଛି ପରି ମରିବାକୁ ଲାଗିଲେ । ଦେବତା ପରି ପୂଜା ପାଉଥିବା ସେହି ବାବାଙ୍କୁ ମହାସାହସୀ ପୂଜ୍ୟା ମାଳତୀ ଦେବୀ (ଚୌଧୁରୀ) ଯାଇ ମୁକାବିଲା କଲେ ଓ ସେ ବାବା କ'ଣ ମୁହଁ ହୁଡ଼ି କହିବାରୁ ମାଳତୀ ଦେବୀଙ୍କ ସହ ଯାଇଥିବା ତାଙ୍କର ଜଣେ ସହକର୍ମୀ ଶିକ୍ଷୀ ଶ୍ରୀ ଜଗନ୍ନାଥ ଦାସ ସେ ବାବାଙ୍କୁ ଗୋଟିଏ ଶକ୍ତ ଚଟକଣି ପକାଇଲେ । ଏ ସମ୍ବାଦ ଦେଶବ୍ୟାପୀ ଗଣମାଧ୍ୟମରେ ପ୍ରଚାରିତ ହୋଇଯାଇଥିଲା । ବୈଜ୍ଞାନିକ ସି.ଭି. ରମଣ ଓ ଡଃ. ଲୋହିଆ ଇତ୍ୟାଦି ଏହି ଅନ୍ଧବିଶ୍ୱାସର ଘୋର ସମାଲୋଚନା କରି ବକ୍ତବ୍ୟମାନ ଦେଲେ ।

୧୯୬୭ ସାଲରେ ମୁଁ ଲୋକସଭାକୁ ନିର୍ବାଚିତ ହେଲାପରେ ଉଡାଜାହାଜରେ ଦିଲ୍ଲୀ ଯାଉଥାଏ । ପାଖ ସିଟ୍‌ରେ ବସିଥାଆନ୍ତି ନନ୍ଦିନୀ ଶତପଥୀ । ଷ୍ଟୁଡେଣ୍ଟସ୍ ଫେଡେରେସନ୍‌ର କର୍ମୀ ହିସାବରେ ମୁଁ ତାଙ୍କୁ କଲେଜ ଜୀବନରେ ଜାଣିଥିଲି । ତାଙ୍କ ସହିତ କଥାବାର୍ତ୍ତା ପ୍ରସଙ୍ଗରେ ସେ କହିଲେ ଆଗରେ ବିଜୁ ପଟ୍ଟନାୟକ ବସିଛନ୍ତି । ଆପଣଙ୍କର ତାଙ୍କ ସହିତ ପରିଚୟ ନାହିଁ କି ? ମୁଁ ମୁଣ୍ଡ ହଲାଇ ନାଁ ବୋଲି କହିଲି । ସେ କହିଲେ ମୁଁ ପରିଚୟ କରାଇ ଦେଉଛି । ମୁଁ ବାରଣ କଲି । ମାତ୍ର ସେ କେତେବେଳେ ଯାଇ ବିଜୁବାବୁଙ୍କୁ କହି ଦେଇଛନ୍ତି ଯେ ମୁଁ ସେହି ପ୍ଲେନ୍‌ରେ ଯାଉଛି । ସେତେବେଳେ ବିଜୁବାବୁଙ୍କ ସରକାର ଚାଲି ଯାଇଥାଏ । ସେ ଆଉ ମୁଖ୍ୟମନ୍ତ୍ରୀ ନଥାଆନ୍ତି । ହଠାତ୍ ଦେଖେତ ବିଜୁବାବୁ ଆସି

ମୋ ପାଖରେ ହାଜିର । ତାପରେ ସେ ତାଙ୍କର ସ୍ୱଭାବସୁଲଭ ଢଙ୍ଗରେ ମୋତେ କହିଲେ, 'Congratulations'। ମୁଁ ଠିଆ ହୋଇପଡ଼ି ତାଙ୍କ ସହିତ ହାତ ମିଳାଇଲି । ସେ ହଠାତ୍ ବଡ଼ପାଟି କରି ବାହାରକୁ ଦେଖାଇ କହିଲେ, 'ହେଇ ଦେଖ! ପାରାଦ୍ୱୀପ!' ସେତେବେଳେ ପ୍ଲେନ୍ ପାରାଦ୍ୱୀପ ଉପର ଦେଇ ଉଡୁଥାଏ । ସେ କହିଲେ "ସବୁ କହୁଛନ୍ତି ମୁଁ କୁଆଡ଼େ ପାରାଦ୍ୱୀପ ବନ୍ଦର କରି ସବୁ ଖାଇଗଲି ।" ସେ ଚିଲେଇକରି ଏହିପରି କହୁଥାଆନ୍ତି । ସବୁ ସିଟ୍‌ରୁ ଲୋକେ ମୋଡ଼ି ହୋଇ ଆମ ଆଡ଼କୁ ଚାହିଁ ଥାଆନ୍ତି । ଏଣୁ ମୁଁ ଅଧିକ କିଛି କଥା ନ ବଢ଼େଇ ତାଙ୍କୁ ତାଙ୍କ ସିଟ୍‌ରେ ନେଇ ବସେଇ ଦେଇ ଆସିଲି । ଇଏ ହେଉଛି ବିଜୁ ପଟ୍ଟନାୟକଙ୍କ ସହିତ ମୋର ପ୍ରଥମ ପରିଚୟ ।

ତାପରେ ୧୯୬୮ରେ ପୁନଶ୍ଚ ତାଙ୍କ ସହିତ ଦେଖା ଏକ ଡାକ୍ତରଖାନାରେ । ଡଃ. ଲୋହିଆ ଗୁରୁତର ଅସୁସ୍ଥ ହୋଇ ଦିଲ୍ଲୀର ୱେଲିଙ୍ଗଟନ୍ ଡାକ୍ତରଖାନାରେ ଚିକିତ୍ସିତ ହେଉଥାଆନ୍ତି । ଡଃ. ଲୋହିଆ, ଜୟପ୍ରକାଶ ଏବଂ ଅରୁଣା ଆସଫ୍‌ଅଲ୍ଲୀ ଏ ତିନିଜଣଙ୍କ ସଂପର୍କ ୧୯୪୨ ଆନ୍ଦୋଳନ ବେଳୁ । ବିଜୁବାବୁଙ୍କର ସଂପର୍କ ଏ ତିନିଜଣଙ୍କ ସହିତ ସେବେଠାରୁ । ସେ ହସ୍‌ପିଟାଲ ଆସିଥାଆନ୍ତି ଡଃ. ଲୋହିଆଙ୍କୁ ଦେଖିବାକୁ । ସେ ପ୍ରତ୍ୟେକଦିନ ଆସି ୨/୩ଘଣ୍ଟା ସେଠାରେ ରହୁଥିଲେ । ସେଠି ମୋର ତାଙ୍କ ସହିତ ଦ୍ୱିତୀୟବାର ସାକ୍ଷାତ୍ ହେଲା ।

୧୯୭୧ ସାଲରେ ବିଜୁବାବୁ କଂଗ୍ରେସ ବିରୁଦ୍ଧରେ ଏକ ମୋର୍ଚ୍ଚା (front) ଗଢ଼ିବା ପାଇଁ ଚିନ୍ତା କରୁଥାଆନ୍ତି । ସେତିକି ବେଳେ କଟକ ଜିଲ୍ଲାର କୌଣସି ଏକ ସ୍କୁଲ (ବୋଧେ ଚିତ୍ତ ମହାନ୍ତିଙ୍କ ଗାଁ ସ୍କୁଲ) ତରଫରୁ ଭାଷଣ ଦେବା ପାଇଁ ବିଜୁବାବୁଙ୍କୁ ଓ ମୋତେ ଡକା ହୋଇଥାଏ । ସେଇଠି କଥାବାର୍ତ୍ତା ଛଳରେ ମୁଁ ତାଙ୍କୁ କହିଲି, "ବିଜୁବାବୁ, ଯୁବକମାନେ ଯେତେବେଳେ ଆପଣଙ୍କୁ ଭେଟୁଛନ୍ତି ସେମାନଙ୍କୁ ଆଦର୍ଶବାଦ ଓ ମୂଲ୍ୟବୋଧ ସଂପର୍କରେ କିଛି କୁହନ୍ତୁ । କେବଳ କ୍ଷମତା ହାସଲ ପାଇଁ ସେମାନଙ୍କୁ ଅସ୍ତ୍ରରୂପେ ବ୍ୟବହାର କରା ନଯାଉ । ମୋତେ ଲାଗୁଛି, ଆପଣ ଭଲ ମଣିଷ ଗଢ଼ିବା କଥା ଏ ଯାଏ ଚିନ୍ତା କରି ନାହାନ୍ତି ।" ସେ ମୋ ସହିତ ଏକମତ ହେଲେ ଓ କହିଲେ "ଏଥର ମୁଁ ସେ କାମ କରିବି ।" ଏଇଟା ମୋର ତାଙ୍କ ସହିତ ପ୍ରଥମ ଅନ୍ତରଙ୍ଗ କଥାବାର୍ତ୍ତା । ସେଠି ଚିତ୍ତ ମହାନ୍ତି ଓ କିଛି ସ୍ଥାନୀୟ ମୁରବୀ ଉପସ୍ଥିତ ଥିଲେ । ତା ପରେ ହଠାତ୍ ଥରେ ସେ ଡଃ. ଲୋହିଆଙ୍କ ଜୟନ୍ତୀ ସଭାରେ ଆସି ପହଞ୍ଚିଗଲେ । ତାଙ୍କ ସହିତ ସଂପର୍କ ଆଉ ଟିକେ ବଢ଼ିଲା ।

ସେତେବେଳେ ଇନ୍ଦିରା ଗାନ୍ଧୀ ପୂର୍ବବଙ୍ଗ ସ୍ୱାଧୀନତା ଆନ୍ଦୋଳନରେ ସାହାଯ୍ୟ କରି ବାଙ୍ଗଲା ଦେଶ' ଗଠନରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବାରୁ ତାଙ୍କର ଲୋକ ପ୍ରିୟତା ସର୍ବୋଚ୍ଚ ସୀମାରେ ପହଞ୍ଚି ଯାଇଥାଏ । ଏଣୁ କୌଣସି ଗୋଟିଏ ବିରୋଧୀ ଦଳ ତାଙ୍କୁ ସଫଳ ଭାବେ ମୁକାବିଲା କରିପାରିବ ବୋଲି ମୋର ବିଶ୍ୱାସ ହେଉ ନଥାଏ । ବିଜୁବାବୁ ସେ ଯାଏ ନିଜକୁ ଓଡ଼ିଶା ରାଜନୀତି ଭିତରେ ସୀମିତ ରଖିଥିବାରୁ ସର୍ବଭାରତୀୟ ଦଳ ଓ ନେତାମାନଙ୍କ ସହିତ ତାଙ୍କର ମଧ ବିଶେଷ ପରିଚୟ ନଥାଏ । ସେହି ସମୟରେ ଆମର ପଡ଼ୋଶୀ ପଶ୍ଚିମବଙ୍ଗ ମେଦିନାପୁରର ଝାଡ଼ଗ୍ରାମଠାରେ ସଂଯୁକ୍ତ ସମାଜବାଦୀ ଦଳର ଏକ ଅଖିଳ

ଭାରତୀୟ ଶିବିର ଅନୁଷ୍ଠିତ ହେବାକୁ ଯାଉଥାଏ । ସେଥିରେ ରାଜନାରାୟଣ, କର୍ପୂରୀ ଠାକୁର, ମଧୁଲିମାୟେ ଇତ୍ୟାଦି ଆମର ସର୍ବଭାରତୀୟ ନେତାମାନେ ଆସୁଥାଆନ୍ତି । ମୁଁ ସେ ଶିବିରରେ ଯୋଗ ଦେବାପାଇଁ ବିଜୁବାବୁଙ୍କୁ ପ୍ରସ୍ତାବ ଦେଲି ଓ ସେ ସଙ୍ଗେସଙ୍ଗେ ରାଜି ହୋଇଗଲେ । ତାଙ୍କର ଏକ ଛୋଟ ଉଡ଼ାଜାହାଜରେ ଯାଇ ସେ ଆମ ଶିବିରସ୍ଥଳୀରେ ପହଞ୍ଚିଲେ । ସେଠି ତାଙ୍କ ସହିତ ଆମ୍ଭମାନଙ୍କର ଯେଉଁ ଆଲୋଚନା ହେଲା ତାହା ଏକ ଐତିହାସିକ ଆଲୋଚନା କୁହାଯାଇପାରେ ।

ବିଜୁବାବୁଙ୍କର ଦୋସ୍ତି କରିବାର ଏକ ସ୍ୱାଭାବିକ୍ ଢଙ୍ଗଥିଲା । ସେ ସେଠି ସଙ୍ଗେସଙ୍ଗେ ମଧୁଲିମାୟେ, ରାଜନାରାୟଣ ଓ କର୍ପୂରୀ ଠାକୁର ଇତ୍ୟାଦିଙ୍କ ସହିତ ବନ୍ଧୁତ୍ୱ ଜମାଇ ଦେଲେ । ସେତେବେଳେ ଇନ୍ଦିରା ଗାନ୍ଧୀ ଯେପରି ଏକଛତ୍ରବାଦୀ ମନୋବୃତ୍ତି ଦେଖାଉଥାଆନ୍ତି ତାକୁ କିପରି ପ୍ରତିହତ କରାଯାଇପାରିବ ସେ ସଂପର୍କରେ ରାଜ୍ୟସ୍ତରରେ ତଥା ରାଷ୍ଟ୍ରୀୟ ସ୍ତରରେ କିପରି କାର୍ଯ୍ୟ କରିବାକୁ ହେବ ସେ ସଂପର୍କରେ ବିଶଦ୍ ଆଲୋଚନା ହେଲା । ସଂଯୁକ୍ତ ସୋସାଲିଷ୍ଟ ଦଳ ଏକ ଛୋଟିଆ ଦଳ ହୋଇଥିଲେ ମଧ ଏହାର ନୀତି, ଆଦର୍ଶ ଦୃଷ୍ଟିରୁ ସିଏ ଯେ ଏ ଇନ୍ଦିରା ବିରୋଧୀ ଆନ୍ଦୋଳନରେ ଆଗୁଆ ହୋଇପାରିବ ବିଜୁବାବୁଙ୍କର ଏ ବିଶ୍ୱାସ ଜନ୍ମିଲା । ଏହାପରେ ବିଜୁବାବୁ ଉତ୍ସାହିତ ହୋଇ ଅନ୍ୟାନ୍ୟ ଇନ୍ଦିରା ବରୋଧୀ ଦଳମାନଙ୍କ ସହିତ ଆଲୋଚନା କରିବାକୁ ବାହାରିଲେ । ଏପରିକି କଂଗ୍ରେସ ଭିତରେ ଥିବା କାମରାଜ ନାଦରଙ୍କ ସହିତ ମଧ ଏ ସଂପର୍କରେ ଆଲୋଚନା କଲେ । ଏହି କାର୍ଯ୍ୟକ୍ରମକୁ ଭିତ୍ତିକରି ବିଜୁବାବୁଙ୍କ ସହିତ ମୋର ସଂପର୍କ ଗାଢ଼ରୁ ଗାଢ଼ତର ହେଲା ।

ଓଡ଼ିଶାର ରାଜ୍ୟସଭା ନିର୍ବାଚନ ଆସିଲା । ସେତେବେଳକୁ ବିଜୁବାବୁଙ୍କ ପ୍ରଚେଷ୍ଟାରେ ରାଜନାରାୟଣ ସିଂହ ଦେଓଙ୍କ ସ୍ୱତନ୍ତ୍ରପାର୍ଟି, ବିଜୁବାବୁଙ୍କ ଉତ୍କଳ କଂଗ୍ରେସ ଏବଂ ଆମ ସଂଯୁକ୍ତ ସୋସାଲିଷ୍ଟ ପାର୍ଟି ମଧରେ ଘନିଷ୍ଠ ସଂପର୍କ ହୋଇସାରିଥାଏ । ମହତାବ ବାବୁଙ୍କ ସହିତ ମଧ ମୁଁ ଓ ବିଜୁ ବାବୁ ସଂପର୍କ ରଖିଥାଉ । ଏ ସଂପର୍କ ରାଜନୈତିକ ସ୍ତରରେ ରହିଥାଏ । ଏ ସବୁ କଂଗ୍ରେସ ବିରୋଧି ଦଳମାନଙ୍କୁ ନେଇ ଅର୍ଥାତ୍, ସଂଯୁକ୍ତ ସୋସାଲିଷ୍ଟ, ସ୍ୱତନ୍ତ୍ର, ଉତ୍କଳ କଂଗ୍ରେସ ଏବଂ ମହତାବଜୀଙ୍କୁ ନେଇ 'ପ୍ରଗତିଦଳ' ଗଢ଼ାଗଲା । ସେତେବେଳେ ନନ୍ଦିନୀ ଶତପଥି ମୁଖ୍ୟମନ୍ତ୍ରୀ । ପ୍ରଗତିଦଳ ଓଡ଼ିଶା ବିଧାନ ସଭାର ମୁଖ୍ୟ ବିରୋଧୀଦଳ ରୂପେ କାର୍ଯ୍ୟକଲା । ଯେତେବେଳେ ରାଜ୍ୟସଭା ନିର୍ବାଚନ ଆସିଲା ମୋତେ ପ୍ରଗତି ଦଳ ତରଫରୁ ପ୍ରାର୍ଥୀ କରାଗଲା । ମୁଁ ମଧ ବହୁ ଭୋଟରେ ବିଜୟଲାଭ କଲି ।

ମୁଁ ରାଜ୍ୟସଭାକୁ ଯିବାପରେ ଗୋଟିଏ ଘଟଣା ଘଟିଲା । ବିଶେଷ କରି ଏ ଘଟଣା ମାଧମରେ ମୁଁ ଇନ୍ଦିରା ଗାନ୍ଧୀଙ୍କର କ୍ରମଶଃ ବଢ଼ୁଥିବା ଏକଛତ୍ରବାଦୀ କାର୍ଯ୍ୟପଦ୍ଧତିକୁ ଲୋକଲୋଚନକୁ ଆଣିଲି । ଏହା ପରେ ପରେ ମଧ ଏପରି ଆଉ କେତେକ ଘଟଣା ଘଟିଲା ଯେଉଁଥିପାଇଁ ଜୟପ୍ରକାଶ ଇନ୍ଦିରାଙ୍କ ଏକଛତ୍ରବାଦ ବିରୁଦ୍ଧରେ ସଂଗ୍ରାମ ଡାକରା ଦେଲେ ଏବଂ ଇନ୍ଦିରା ଏହି ଡାକରାର ଜବାବ୍ ଦେବାକୁ ଯାଇ ଜରୁରୀ ପରିସ୍ଥିତି ମାଧମରେ ନିଜର ଏକଛତ୍ରବାଦୀ ନଗ୍ନରୂପ ଇତିହାସ ଆଗରେ ଛାଡ଼ି ଦେଇ ଗଲେ ।

ଘଟଣାଟି ଘଟିଲା ଦିଲ୍ଲୀରେ ବିଜୁବାବୁଙ୍କୁ ନେଇ । ଦିନେ ବିଜୁବାବୁ ତାଙ୍କ ଦିଲ୍ଲୀ ଘରେ ଅନୁପସ୍ଥିତ ଥିବାବେଳେ ହଠାତ୍ ଆୟକର ବିଭାଗବାଲା ତାଙ୍କ ଘର ଉପରେ ଚଢ଼ାଉ କଲେ । ସବୁ ନୀତି ନିୟମକୁ ଜଳାଞ୍ଜଳି ଦେଇ ତାଙ୍କ ଘର ଉପରେ ହୋଇଥିବା ଚଢ଼ାଉରୁ କିଛି ବାହାରିଲା ନାହିଁ । କ'ଣ ୧୦୦/୨୦୦ଟଙ୍କା ବାହାରିଲା । ମୁଁ ତାଙ୍କ ଘରେ ପହଞ୍ଚି ଯାହା ହୃଦୟଙ୍ଗମ କଲି ସେ 'ରେଡ୍'ର କୌଣସି ଯୁକ୍ତିଯୁକ୍ତ କାରଣ ନଥିଲା । ବିଜୁବାବୁ ବିରୋଧୀଦଳଙ୍କୁ ଇନ୍ଦିରାଙ୍କ ବିରୁଦ୍ଧରେ ଏକଜୁଟ କରୁଥିବାରୁ ଏହା ସଂପୂର୍ଣ୍ଣ ଭାବେ ଇନ୍ଦିରାଙ୍କର ଏକ ଆକ୍ରୋଶ ମୂଳକ ପଦକ୍ଷେପ ଥିଲା । ଏ ଘଟଣା ଦିଲ୍ଲୀରେ ଚହଳ ପକାଇ ଦେଲା । ପରଦିନ ସବୁ ଖବର କାଗଜରେ ସଂବାଦ ବାହାରି ପଡ଼ିଲା । ମୁଁ ସେଇଦିନ ଏହା ରାଜ୍ୟସଭାରେ ଆଲୋଚନା କଲି । ସେତେବେଳେ ରାଜ୍ୟସଭାର ଚେୟାରମ୍ୟାନ୍ ଥାଆନ୍ତି ବି. ଡି. ଜତ୍ତି, ଯେ କି ପୂର୍ବରୁ ଓଡ଼ିଶାର ରାଜ୍ୟପାଳ ଥିଲେ । ତାପରେ ସେ ଉପରାଷ୍ଟ୍ରପତି ହେଲେ । ମୁଁ ସେଦିନ ଇନ୍ଦିରାଙ୍କର କଡ଼ା ସମାଲୋଚନା କଲି । ମୁଁ ତଥ୍ୟ ସହ ପ୍ରମାଣ କଲି ଯେ ବିଜୁବାବୁଙ୍କ ଘରେ ହୋଇଥିବା ଉକ୍ତ ଚଢ଼ାଉ ଆକ୍ରୋଶମୂଳକ ଥିଲା । ଯିଏ ଇନ୍ଦିରାଙ୍କୁ ବିରୋଧ କରିବ ତାକୁ ଏହି ଦଶା ଭୋଗିବାକୁ ପଡ଼ିବ – ଏହିଭଳି ଇନ୍ଦିରାଙ୍କର ଏହା ବିରୋଧୀ ଦଳମାନଙ୍କୁ ଏକ ପରୋକ୍ଷ ଚେତାବନୀ ବୋଲି ମୁଁ ଦର୍ଶାଇଲି । ଦେଶରେ ସାମ୍ବିଧାନିକ ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଖତମ କରି ନିଜର ଏକଛତ୍ରବାଦୀ ଶାସନ ଜାହିର କରିବା ପାଇଁ ଇନ୍ଦିରାଗାନ୍ଧୀଙ୍କର ଏହା ଏକ ଅପଚେଷ୍ଟା ବୋଲି ସାବଧାନ କରି ଦେଇଥିଲି । ଏହା ୧୯୭୪ ସାଲ ଘଟଣା । ଏହା ପରେ ପରେ ଏଲାହାବାଦ ହାଇକୋର୍ଟଙ୍କ ରାୟକୁ ଇନ୍ଦିରାଙ୍କ ଅବମାନନା, ଜେ. ପି. ଙ୍କ ବିହାର ଆନ୍ଦୋଳନ ଏବଂ ଇନ୍ଦିରାଙ୍କ ଜରୁରୀ ପରିସ୍ଥିତି ଜାରୀ ଇତ୍ୟାଦି କ୍ରମାନ୍ୱୟରେ ଘଟିଥିଲା ।

ରାଜ୍ୟସଭାରେ ମୁଁ ଯେଉଁଦିନ ଏହି ମର୍ମରେ ଭାଷଣ ଦେଲି ସେ ଦିନ ସନ୍ଧ୍ୟାରେ ହଠାତ୍ ବିଜୁବାବୁଙ୍କ ଫୋନ୍ ଆସିଲା, "ରବି, ଜଲ୍‌ଦି ମୋ ଘରକୁ ଆସ ।" କାରଣ ପଚାରନ୍ତେ ସେ ପୁଣି ଥରେ ଦୋହରାଇଲେ, "ଓହୋ, ଆସ, ଏଇଠି କହିବି ।" ମୁଁ ତାଙ୍କ ଘରେ ପହଞ୍ଚନ୍ତେ ସେ ଆନନ୍ଦରେ ମୋତେ କୋଳାଗ୍ରତ କଲେ । ଜ୍ଞାନ ପଟ୍ଟନାୟକ ମିଠାଇ ଆଣି ମୋତେ ଖୁଆଇଲେ । ମୁଁ ରାଜ୍ୟସଭାରେ ଭାଷଣ ଦେଉଥିବା ବେଳେ କୁଆଡ଼େ ଜ୍ଞାନ ପଟ୍ଟନାୟକ ଓ ଗୀତା (ବିଜୁ ପଟ୍ଟନାୟକଙ୍କ ଝିଅ) ଦର୍ଶକ ଗ୍ୟାଲେରୀରେ ଉପସ୍ଥିତ ଥିଲେ । ଏହା ସେଇଠି ସେମାନଙ୍କ ଠାରୁ ଜାଣିବାକୁ ପାଇଲି ।

ଏ ଘଟଣା ପରେ ଇନ୍ଦିରାଗାନ୍ଧୀଙ୍କୁ ସମସ୍ତେ ଛି ଛା କଲେ । ଏହି ଘଟଣା ପରେ ବିଜୁବାବୁଙ୍କ ୩, ଆଉରଙ୍ଗଜେବ୍ ରୋଡ୍ ଘର ସବୁ ବିରୋଧୀ ଦଳ ନେତାମାନଙ୍କ ମିଳନ ସ୍ଥଳୀ ହୋଇଗଲା । ୧୯୭୫ ଜୁନ୍ ୨୬ରେ ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀ ପରିସ୍ଥିତି ଜାରି କରିବା ପର୍ଯ୍ୟନ୍ତ ବିରୋଧୀ ଦଳମାନଙ୍କୁ ଏକତାବଦ୍ଧ କରିବା ପାଇଁ ବିଜୁବାବୁଙ୍କ ଏହି ଘର ହିଁ ଆଲୋଚନା ଆସର ପାଇଁ ବ୍ୟବହୃତ ହେଉଥିଲା ।

୧୯୭୧ ସାଲର ଗୋଟିଏ ମଜା ଘଟଣା । ସେତେବେଳେକୁ ପ୍ରଧାନମନ୍ତ୍ରୀ ଥାଆନ୍ତି

ଇନ୍ଦିରାଗାନ୍ଧୀ। ପାର୍ଲାମେଣ୍ଟ ଅଧିବେଶନ ଚାଲିଥାଏ । ଠିକ୍ ତା ସରିବାଦିନ ଇନ୍ଦିରାଜୀ ଏକ ନୈଶ୍ୟ ଭୋଜିର ଆୟୋଜନ କରିଥିଲେ। ମୁଁ ମଧ ସେଠାକୁ ନିମନ୍ତ୍ରିତ ହୋଇଥିଲି । ମୁଁ ମୋର ଅନ୍ୟାନ୍ୟ କେତେକ ବନ୍ଧୁମାନଙ୍କ ସହିତ ସେ ଭୋଜି ସଭାରେ ଯୋଗଦେଇଥିଲି । ଇନ୍ଦିରାଗାନ୍ଧୀ ପ୍ରାୟ ନିଜେ ବୁଲି ବୁଲି ନିମନ୍ତ୍ରିତ ସଭ୍ୟମାନଙ୍କର ଖାଇବା ଖବର ବୁଝୁଥାନ୍ତି। ହଠାତ୍ ସେ ଆସି ମୋ ପାଖରେ ପହଞ୍ଚିଗଲେ । ସେତେବେଳକୁ ମୁଁ ପ୍ରାୟ କେତେଗୁଡ଼ିଏ ଖାଇବା ପଦାର୍ଥରେ ହାତ ମଧ ମାରିନଥାଏ । ସେ ଆସି ମୋ ପାଖରେ ବସିଗଲେ ଏବଂ କହିବାକୁ ଲାଗିଲେ, "ରବିରାୟଜୀ ! ଆପଣ ଏଇଟା ଖାଇନାହାଁନ୍ତି, ସେଇଟାକୁ କାହିଁକି ଖାଉନାହାନ୍ତି।" ମୁଁ ତେଣୁ ସୌଜନ୍ୟତା ସ୍ୱରୂପ ତାଙ୍କୁ କହିଲି, "ଆଚ୍ଛା ହେଉ, ମୋର ତ ଏତେଗୁଡ଼ିଏ ଖାଇବା ପଦାର୍ଥ ଖାଇବାକୁ ପ୍ରାୟ ମନେପଡୁ ନାହିଁ। ଯଦି ଆପଣ କହିଲେଣି ତାହାଲେ ମୁଁ ଖାଇବି ।" ଏବଂ ଖାଇଲି ମଧ । ତାପରେ ଇନ୍ଦିରାଜୀ ଖୁବ୍ ଖୁସି ହୋଇ ମୋ ନିକଟରୁ ବିଦାୟ ନେଇଚାଲିଗଲେ । ସେତେବେଳକୁ ତ ପାର୍ଲାମେଣ୍ଟ ଅଧିବେଶନ ସରିଯାଇଥିଲା । ତା' ପରଦିନ ମୁଁ ପ୍ରାୟ ଓଡିଶା ଫେରିଆସିବା କଥା । କିନ୍ତୁ ଆମ ପାର୍ଟିର ଅଖିଳ ଭାରତୀୟ ସମ୍ମିଳନୀରେ ଯୋଗ ଦେବାପାଇଁ ମୋତେ ପୁନା ଯିବାକୁ ପଡ଼ିଲା । ସେଠାକୁ ଯିବାର ପ୍ରାୟ ୨/୩ ଦିନ ପରେ ହଠାତ୍ ରେଡିଓ ରୁ ଶୁଣିଲି ଯେ ପାର୍ଲାମେଣ୍ଟ ଭଂଗ ହୋଇଗଲା।ନିର୍ଦ୍ଧାରିତ ସମୟ ପୂର୍ବରୁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ପାର୍ଲାମେଣ୍ଟ ଭାଂଗିବା ଘଟଣା ଶୁଣି ମୁଁ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲି ଏବଂ ମନେ ମନେ ଭାବୁଥିଲି ବୋଧେ ସେଇଥିପାଇଁ ସମ୍ଭବତଃ ଇନ୍ଦିରାଜୀ ଏଭଳି ଏକ ଭୋଜିସଭାରେ ସମସ୍ତଙ୍କୁ ଆପ୍ୟାୟିତ କରିଥିଲେ। କେହି କେହି ଏହି ଘଟଣାକୁ ଲକ୍ଷ୍ୟ କରି ପରିହାସ ଛଳରେ କହିଲେ, "ଦେଖିଲ ? ଏଣେ ଘରକୁ ଡାକି ଭୋଜି ଦେଲା । ତେଣେ ରାତି ନ ପାହୁଣୁ ପାର୍ଲାମେଣ୍ଟକୁ ଭାଂଗିଦେଲା ।"

୧୯୭୫ ସାଲ ଜୁନ୍ ୨୫ ତାରିଖରେ ଇନ୍ଦିରା ଗାନ୍ଧୀ ଦେଶର ଜରୁରୀ ପରିସ୍ଥିତି ଜାରୀ କଲେ । ଜରୁରୀ ପରିସ୍ଥିତି ଘୋଷଣା ହେଲାଣି ବୋଲି ମୁଁ ଜାଣି ନଥାଏ । ହଠାତ୍ ଫୋନ୍ ଉଠାଇ ଦେଖେ ତ ଫୋନ୍ ଡେଡ୍ । କାମ କରୁନାହିଁ । ତାପରେ କନଟ୍ ପ୍ଲେସ୍‌କୁ ବାହାରି ପଡ଼ିଲି । ସେଠି ଦେଖା ହୋଇଗଲା ବିଖ୍ୟାତ ସାମ୍ବାଦିକ ଓ କାର୍ଟୁନିଷ୍ଟ ରାଜେନ୍ଦ୍ର ପୁରୀ ଙ୍କ ସାଥିରେ। ତାଙ୍କରି ଠାରୁ ଜାଣିବାକୁ ପାଇଲି ଯେ ଇନ୍ଦିରାଗାନ୍ଧୀ ଜରୁରୀ ପରିସ୍ଥିତି ଘୋଷଣା କରି ସାରିଛନ୍ତି । ମୁଁ ସେଠାରୁ ମୋରାରଜୀ ଭାଇଙ୍କ ଘରକୁ ଗଲାବେଳକୁ ସେ ଗିରଫ ହୋଇ ଗଲେଣି । ତାପରେ ମୁଁ ଘରକୁ ଫେରି ଆସିଲି । ଘରେ ପହଞ୍ଚି ହଠାତ୍ ମୋ ମୁଣ୍ଡକୁ ଚୁକିଲା ଯେ ମୁଁ ରାଷ୍ଟ୍ରପତି ଫକୀରୁଦ୍ଦିନ୍ ଅଲ୍ଲୀ ଅହମ୍ମଦଙ୍କୁ ଭେଟିବା ଉଚିତ୍ । ମୁଁ ରାଷ୍ଟ୍ରପତିଙ୍କ ଘରକୁ ଫୋନ୍ କଲି । ତାଙ୍କ ପି.ଏ.କୁ ଜଣାଇଲି ଯେ ମୁଁ କେତେକ ଏମ୍.ପି.ଙ୍କୁ ଧରି ତାଙ୍କୁ ସାକ୍ଷାତ୍ କରିବାକୁ ଚାହେଁ । ସେ ସମ୍ମତି ଦେଲେ ଓ ଏକ ସମୟ ମଧ ଦେଲେ । ମୁଁ ଶ୍ରୀ ପ୍ରକାଶବୀର ଶାସ୍ତ୍ରୀ, ମହାବୀର ତ୍ୟାଗୀ, ସୁରେନ୍ଦ୍ର ମହାନ୍ତି ଇତ୍ୟାଦିଙ୍କୁ ନେଇ ରାଷ୍ଟ୍ରପତିଙ୍କୁ ଦେଖାକଲି । ତାଙ୍କ ସହିତ ଆଗରୁ ମୋର ଭଲ ସଂପର୍କ ଥିଲା । ତାଙ୍କୁ ଆବେଗଭରା ସ୍ୱରରେ ପଚାରିଲି, "ଇନ୍ଦିରାଗାନ୍ଧି ଏହି ଯେଉଁ ଅଗଣତାନ୍ତ୍ରିକ କାର୍ଯ୍ୟ କରିଲେ ସେଥିରେ ଆପଣ

କିପରି ସମ୍ମତି ଦେଲେ । କିପରି ଆପଣ ସେହି ଅନ୍ୟାୟ ଘୋଷଣାପତ୍ରରେ ଦସ୍ତଖତ କଲେ ?" ସେ କିନ୍ତୁ ଧୀର ସ୍ଥିର ଭାବେ ତାଙ୍କର ଯାହା ଉତ୍ତର ଦେବା କଥା ଆଶା କରୁଥିଲୁ ତାହାହିଁ କହିଲେ । ତା'ପରେ ମୁଁ ଶ୍ରୀ ମହାବୀର ତ୍ୟାଗୀଙ୍କ ଆଡ଼କୁ ଚାହିଁ କହିଲି, "ଇଏ ଶାସନ ବିଧାୟକ ସଭାର ସଭ୍ୟ ଥିଲେ । ଜବାହର ଲାଲଙ୍କ ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀ ଥିଲେ । ତାଙ୍କ ମତ ଶୁଣନ୍ତୁ ।" ମହାବୀର ତ୍ୟାଗୀ ଦୃଢ଼ ଭାବେ ରାଷ୍ଟ୍ରପତିଙ୍କୁ କହିଲେ, "ଆପଣଙ୍କର ଦସ୍ତଖତ ଦେବା ଠିକ୍ ହୋଇନାହିଁ ।" ରାଷ୍ଟ୍ରପତି ସେଇଥିରୁ ଆମ ମାନସିକତା ଠିକ୍ ବୁଝିପାରିଥିବେ । ତା'ପରେ ସେ କହିଲେ, "ମୁଁ ବିରୋଧୀ ଦଳମାନଙ୍କୁ କହିବି ଯେ ସେମାନେ ତାଙ୍କ ସୀମା ଭିତରେ ରହନ୍ତୁ ଓ ସରକାର ଦଳକୁ ମଧ୍ୟ କହିବି ଯେ, ସେମାନେ ମଧ୍ୟ ତାଙ୍କ ସୀମା ଭିତରେ ରୁହନ୍ତୁ ।" ମୁଁ ତାଙ୍କୁ କହିଦେଇ ଆସିଲି ଯେ "ଆପଣ ଯାହା କହିଲେ ମୁଁ ପ୍ରେସବାଲାଙ୍କୁ ସେ କଥା ଆପଣ କହିଲେ ବୋଲି କହିବି ।" ମୁଁ ସେକଥା ପ୍ରେସ୍ ବାଲାଙ୍କୁ କହିଲି । ରାଷ୍ଟ୍ରପତି ଭବନରୁ ମଧ୍ୟରୁ ସେହି ମର୍ମରେ ଏକ ବିଜ୍ଞପ୍ତି ବାହାରିଲା । ଏ ଖବରଟା ଖବରକାଗଜ ମାନଙ୍କରେ ମଧ୍ୟ ବାହାରିଗଲା । ପରେ ଶୁଣିଲି ରାଷ୍ଟ୍ରପତି ଉଭୟ ଶାସକଦଳ ଓ ବିରୋଧୀଦଳଙ୍କୁ ସମାନ ଆସନରେ ରଖିଦେଲେ ବୋଲି ଅଭିଯୋଗ କରି କୁଆଡ଼େ ଇନ୍ଦିରାଗାନ୍ଧୀ ତାଙ୍କ ଉପରେ ବହୁତ ଖପା ହୋଇଯାଇଥିଲେ । ପ୍ରଧାନମନ୍ତ୍ରୀଙ୍କ ରାଷ୍ଟ୍ରପତି ଉପରେ ଅସନ୍ତୁଷ୍ଟ ହେବାର ମୁଖ୍ୟ କାରଣ ଥିଲା ଯେ, ସେ ମୋତେ ଓ ତାଙ୍କୁ ଭେଟିବାକୁ ଯାଇଥିବା ଏମ୍.ପି.ମାନଙ୍କୁ କାହିଁକି ସାକ୍ଷାତ ପାଇଁ ଅନୁମତି ଦେଲେ ।

ତାପରେ ମୁଁ ଦିଲ୍ଲୀରୁ ବୁର୍ଲା ଆସିଲି । ମୋ ସ୍ତ୍ରୀ ଡ: ସରସ୍ୱତୀ ସ୍ୱାଇଁ ବୁର୍ଲା ମେଡ଼ିକାଲ କଲେଜରେ ପ୍ରଫେସର ଥାଆନ୍ତି । ମୋ ବଡ଼ଭାଇ, ଯେ କି କ୍ୟାନ୍ସରରେ ପୀଡ଼ିତ ଥିଲେ, ତାଙ୍କ ପାଖରେ ରହି ଚିକିତ୍ସିତ ହେଉଥାଆନ୍ତି । ଭାଇଙ୍କୁ ଦେଖିସାରି ମୁଁ ପୁଣି ଦିଲ୍ଲୀ ଫେରିଗଲି । ସେଠି ବିଭିନ୍ନ ବିରୋଧୀଦଳ ନେତାଙ୍କ ଭିତରେ ଆମର ପ୍ରାୟ ପ୍ରତିଦିନ ମିଟିଂ ହେଉଥାଏ । ପ୍ରତିଦିନ ମୁଁ ଭାବୁଥାଏ ଯେ ପୋଲିସ ଯେ କୌଣସି ମୁହୂର୍ତ୍ତରେ ଆସି ମୋତେ ଗିରଫ କରିନେବ । କିନ୍ତୁ ପ୍ରାୟ ୨୦ ଦିନ ପରେ ମୋର ମିନାବାଗ୍ ବାସଭବନରେ ପୋଲିସ ଆସି ପହଞ୍ଚିଲା ଭୋର ୪ଟା ବେଳେ । ସେତେବେଳେ ମୋ ଭାଣିଜୀ ମୋ ପାଖରେ ରହୁଥାଏ । ସେ କାନ୍ଦିବାକୁ ଲାଗିଲା । ମୁଁ ତାକୁ ବୁଝାଇ ଶୁଝାଇ ମୋ ନିତ୍ୟକର୍ମ ସାରିଲି । କେତେଜଣ ଏମ୍.ପି.ଙ୍କୁ ଫୋନ୍ କଲି । ତା'ପରେ ପୋଲିସ୍ ମୋତେ ନେଇ ଦିଲ୍ଲୀସ୍ଥ ତିହାର ଜେଲ୍‌ରେ ରଖିଲା ।

ସେଠି ପୂର୍ବରୁ ରାଜନାରାୟଣ ବନ୍ଦୀ ହୋଇ ରହିଥାଆନ୍ତି । ସ୍ମରଣ କରାଇ ଦିଆଯାଇ ପାରେ ଯେ ରାଜନାରାୟଣ ଥିଲେ ଏହି ଜରୁରୀ ପରିସ୍ଥିତିର ହିରୋ । କାରଣ ସେ ନିର୍ବାଚନ କେସ୍‌ରେ ଇନ୍ଦିରାଙ୍କୁ ହରାଇଲେ ଓ ଏଲାହାବାଦ୍ ହାଇକୋର୍ଟଙ୍କ ରାୟ ହେତୁ ଇନ୍ଦିରାଙ୍କ ସିଂହାସନ ଟଳମଳ ହେଲା । ତେଣୁ ସେଥିରୁ ସେ ନିଜକୁ ରକ୍ଷା କରିବା ପାଇଁ ଜରୁରୀ ପରିସ୍ଥିତି ଜାରୀ କଲେ । ସେଠି ୨/୩ ଦିନ ରହିବା ପରେ ମୋତେ ଅମ୍ବାଲା ଜେଲ୍‌କୁ ସ୍ଥାନାନ୍ତରିତ କରାଗଲା । ତିହାର ଜେଲ୍ ଛାଡ଼ିବା ବେଳେ ରାଜନାରାୟଣ ମୋତେ

ଜେଲ୍‌ଗେଟ୍ ଯାଏ ଛାଡ଼ିବାକୁ ଆସିଲେ । ସେ ଦିନ ରାଜନାରାୟଣଙ୍କ ଚେହେରାରେ ମୁଁ ଯେଉଁ କରୁଣଭାବ ଲକ୍ଷ୍ୟ କରିଥିଲି ତାହା କେବେ ବି ଭୁଲି ପାରିବି ନାହିଁ ।

ଅମ୍ବାଲା ଜେଲ୍‌ରେ ମୁଁ ଯେଉଁ ଦୁଇ ତିନି ମାସ ରହିଲି ତା'ଭିତରେ ପ୍ୟାରୋଲ ରେ ଭାଇଙ୍କୁ ଦେଖିବା ପାଇଁ ବୁର୍ଲା ଯାଇଥିଲି । କାରଣ ସେତେବେଳେ ତାଙ୍କ ଅବସ୍ଥା ଖୁବ୍ ଗୁରୁତର ହୋଇଯାଇଥିଲା । ସେଠି ମୋ ରହିବା ଭିତରେ ହିଁ ସେ ଦେହତ୍ୟାଗ କଲେ । ପ୍ରାୟ ମାସେ କାଳ ପ୍ୟାରଲରେ ରହିବା ପରେ ମୁଁ ପୁଣି ଅମ୍ବାଲା ଜେଲ୍‌କୁ ଫେରିଗଲି ।

ସେଠି ହଠାତ୍ ଦିନେ ଦେଖେତ ଆମ ଗହଣରେ ଶ୍ରୀ ଭୀମସେନ୍ ସାଚାର ବନ୍ଦୀ ହିସାବରେ ହାଜର୍ । ସେତେବେଳକୁ ବୋଧେ ତାଙ୍କୁ ୭୮ ବର୍ଷ ହୋଇଗଲାଣି । ସେ ପୂର୍ବରୁ କଂଗ୍ରେସ ନେତା ଥିଲେ । ପଞ୍ଜାବର ମୁଖ୍ୟମନ୍ତ୍ରୀ ଥିଲେ । କିଛି କାଳ ଓଡ଼ିଶାର ମଧ ରାଜ୍ୟପାଳ ଥିଲେ । ତାଙ୍କ ପୁଅ ଓ ଜ୍ୱାଇଁ ଉଭୟ ପ୍ରସିଦ୍ଧ ବ୍ୟକ୍ତି । ତାଙ୍କ ପୁଅ ରାଜେନ୍ଦ୍ର ସାଚାର ସମାଜବାଦୀ ଥିଲେ ଓ ମୁଖ୍ୟ ବିଚାରପତି ହୋଇ ଅବସର ନେଲେ । ସାଂବାଦିକ କୁଲ୍‌ଦୀପ୍ ନାୟାର୍ ତାଙ୍କର ଜ୍ୱାଇଁ । ଉଭୟ ମୋର ଘନିଷ୍ଠ ବନ୍ଧୁ ।

ଇନ୍ଦିରା ଗାନ୍ଧୀ ଯେତେବେଳେ ଜରୁରୀ ପରିସ୍ଥିତି ଜାରୀ କଲେ ଭୀମସେନ ସାଚାର ତା'ର ପ୍ରତିବାଦ କରି କହିଲେ, "ତୁମେ ଯଦି ଅମୁକ ତାରିଖ ଭିତରେ ଜରୁରୀ ପରିସ୍ଥିତି ନ ଉଠାଅ ତେବେ ମୁଁ ସତ୍ୟାଗ୍ରହ କରିବି ।" ସେ ସତ୍ୟାଗ୍ରହ ଆରମ୍ଭ କରିବା ପୂର୍ବରୁ ତାଙ୍କୁ ଗିରଫ କରାଗଲା । ତାପରେ ତାଙ୍କୁ ଅମ୍ବାଲା ଜେଲ୍‌ରେ ରଖାଗଲା । ଭୋର୍ ପାଞ୍ଚଟାବେଳେ ତାଙ୍କୁ ସେଠି ଦେଖି ପଚାରିଲି "ଆପଣ ଏଠି କେମିତି ?" ସେ ହସି ହସି ଯାହା ଉତ୍ତର ଦେଲେ ଏବେ ବି ମନେ ଅଛି । ସେ କହିଲେ, "ରବିରାୟ, ମନେରଖ ମୁଁ ଜଣେ ୭୮ ବର୍ଷର ଯୁବକ ।"

ସେ ସାଥିରେ ପୁରା ଟ୍ରଙ୍କ୍ ଭର୍ତ୍ତି ବହି ଆଣି ଥିଲେ । ମୁଁ ଖୁସି ହୋଇଯାଇ କହିଲି, "ବାସ୍, ଏତିକି ଦରକାର ଥିଲା ।" ତେବେ ସରକାରଙ୍କ ଉପରେ ଚାପ ପଡ଼ିବାରୁ ୮/୧୦ ଦିନ ପରେ ତାଙ୍କୁ ଖଲାସ କରିଦିଆଗଲା । ସେ ଯେତେବେଳେ ଖଲାସ ହେଉଥିଲେ ମୁଁ ତାଙ୍କୁ ଜଣାଇଥିଲି ଯେ ମୋ ସ୍ତ୍ରୀ ଡ: ସରସ୍ୱତୀ ସ୍ୱାଇଁ ବୁର୍ଲାରୁ ଆସିବେ ମୋତେ ଭେଟିବା ପାଇଁ । କେବଳ ଏତିକି କହିଥିଲି । ଶ୍ରୀ ସାଚାର ନିଜେ ଲୋକ ପଠାଇ ମୋ ସ୍ତ୍ରୀଙ୍କୁ ଅମ୍ବାଲା ଆଣିଲେ । ସେଠି ତାଙ୍କର ରହିବାର ସମସ୍ତ ସୁବ୍ୟବସ୍ଥା କରିଦେଲେ । ପୁଣି ସେ ଯେପରି ଭଲରେ ଫେରି ନିରାପଦରେ ବୁର୍ଲାରେ ପହଞ୍ଚନ୍ତି ତା'ର ସମସ୍ତ ବ୍ୟବସ୍ଥା ନିଜେ କରିଦେଲେ । ଏହା ଜୀବନରେ ମୋର କେବେ ଭୁଲିବାର ନୁହେଁ । ଜରୁରୀ ପରିସ୍ଥିତି ଉଠିବାକୁ ଅଳ୍ପ କିଛି କାଳ ଥାଏ ମୁଁ ଜେଲ୍‌ରୁ ଖଲାସ ହେଲି ।

ଏହାପରେ ଜୟପ୍ରକାଶଜୀଙ୍କ ନେତୃତ୍ୱରେ ଯେଉଁ ଆନ୍ଦୋଳନ ଚାଲିଲା ତାକୁ ଓଡ଼ିଶାରୁ ପ୍ରଗତି ଦଳ ପୂର୍ଣ୍ଣ ସମର୍ଥନ ଜଣାଇଲା । ସେ ସମୟରେ ଏହି ଇନ୍ଦିରା ବିରୋଧୀ ଆନ୍ଦୋଳନରେ ବିରୋଧୀ ରାଜନୈତିକ ଦଳମାନଙ୍କୁ ଏକତାବଦ୍ଧ କରିବା ଦିଗରେ ବିଜୁବାବୁହିଁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସଂଯୁକ୍ତ ସୋସାଲିଷ୍ଟ ଦଳ ନେତାମାନଙ୍କ ସହିତ ତାଙ୍କର

ବ୍ୟକ୍ତିଗତ ବନ୍ଧୁତ୍ୱ ଏହି ସମୟରେ ଦୃଢ଼ୀଭୂତ ହୋଇଥିଲା । ସେ ଓ ମୁଁ ବିରୋଧୀଦଳମାନଙ୍କୁ ଏକଜୁଟ କରିବା ଦିଗରେ ରାତିଦିନ ଲାଗି ପଡ଼ିଥାଉ । ଇନ୍ଦିରାଗାନ୍ଧୀ ମଧ୍ୟ ସେହି ଅନୁପାତରେ ବିରୋଧୀଦଳମାନଙ୍କ ଭିତରେ ଫାଟ ସୃଷ୍ଟି କରିବାକୁ ଓ ସେମାନଙ୍କୁ ଦବାଇବା ପାଇଁ ତାଙ୍କ ଚେଷ୍ଟା ଅବ୍ୟାହତ ରଖିଥାଆନ୍ତି । ଏହାରି ଭିତରେ ଆମ ଦଳର ରାଜନାରାୟଣ ଇନ୍ଦିରାଙ୍କ ବିରୁଦ୍ଧରେ ଏଲ୍‌ହାବାଦ ହାଇକୋର୍ଟରେ କରିଥିବା ନିର୍ବାଚନ ମକଦ୍ଦମାର ରାୟ ବାହାରିଲା । ଇନ୍ଦିରାଗାନ୍ଧୀ କୋର୍ଟ ଦ୍ୱାରା ଦୋଷୀ ସାବ୍ୟସ୍ତ ହେଲେ ଏବଂ ତାଙ୍କ ନିର୍ବାଚନ ଅସିଦ୍ଧ ବୋଲି ଘୋଷିତ ହେଲା । ଇନ୍ଦିରା ଭ୍ରଷ୍ଟାଚାର ମାଧ୍ୟମରେ ନିର୍ବାଚନ ଜିତିଥିଲେ ବୋଲି ଉକ୍ତ ହାଇକୋର୍ଟର ବିଚାରପତି ଶ୍ରୀ ଜଗମୋହନ ଲାଲ୍ ସିହ୍ନା ସ୍ପଷ୍ଟରାୟ ଦେଇସାରିଲା ପରେ ମଧ୍ୟ ଇନ୍ଦିରା ଗାନ୍ଧୀ ନିଜ ପଦବୀରୁ ଇସ୍ତଫା ଦେଲେ ନାହିଁ । ସେ ତ ନିଜର ଏକଛତ୍ରବାଦ ପ୍ରତିଷ୍ଠା କରିବା ପାଇଁ ସ୍ଥିର କରି ସାରିଥିଲେ । ଏଣୁ ଉଗ୍ରମୁଖୀ ହୋଇ ଯାଇଥିଲେ । ୧୯୭୫ ଜୁନ୍ ୨୫ରେ ସେ ଦେଶରେ ଜରୁରୀ ପରିସ୍ଥିତି ଜାରୀ କଲେ ଓ ବିରୋଧୀ ଦଳର ନେତାମାନଙ୍କୁ ଗିରଫ କରିନେଲେ । ବିଜୁବାବୁ ଗିରଫ ହୋଇଗଲେ । ତା'ର ୧୫/୧୬ ଦିନ ପରେ ମୁଁ ଗିରଫ ହେଲି । ମୁଁ ହରିୟାନାର ଅମ୍ବାଲା ଜେଲ୍‌ରେ ରହିଲି । ବିଜୁବାବୁ ସେଇ ହରିୟାନାର ରୋହତାକ ଜେଲ୍‌ରେ ରହିଲେ । ଜରୁରୀ ପରିସ୍ଥିତି ଜାରି କରି ଇନ୍ଦିରା ଗାନ୍ଧୀ ଦେଶ ଭିତରେ ଓ ବାହାରେ ବେଶ୍ ନିନ୍ଦିତ ହେଲେ । ଜରୁରୀ ପରିସ୍ଥିତି ଉଠିଯିବା ପରେ ଯେଉଁ ନିର୍ବାଚନ ହେଲା ସେଥିରେ ଇନ୍ଦିରାଙ୍କର ଶୋଚନୀୟ ପରାଜୟ ହେଲା ।

ଇଏ ୧୯୭୭ ସାଲର ଏ ଘଟଣା । ଜନତାଦଳ ବିପୁଳ ଭୋଟରେ ବିଜୟ ଲାଭ କରିଥିଲା । ପରମ୍ପରାକ୍ରମେ ନୂତନ ପାର୍ଲାମେଣ୍ଟ ଗଠନ ପାଇଁ ଦଳର ନବନିର୍ବାଚିତ ସଦସ୍ୟମାନଙ୍କର ଏକ ଅଧିବେଶନ ଦିଲ୍ଲୀରେ ଡକାଯାଇଥିଲା । ଉକ୍ତ ଅଧିବେଶନ ଆରମ୍ଭ ହେବା ପୂର୍ବରୁ ଲୋକନାୟକ ଜୟପ୍ରକାଶ ସମସ୍ତ ନୂତନ ସଭ୍ୟମାନଙ୍କୁ ଦିଲ୍ଲୀସ୍ଥ ଗାନ୍ଧୀ ସମାଧିସ୍ଥଳରେ ଜନତା ଦଳର ଆଦର୍ଶ ଓ କାର୍ଯ୍ୟକ୍ରମ ସଂପର୍କରେ ଶପଥ ଦିଆଇଥିଲେ । ପରେ ପରେ ନବ ନିର୍ବାଚିତ ସଭ୍ୟମାନେ ଗାନ୍ଧି ଶାନ୍ତି ପ୍ରତିଷ୍ଠାନ (Gandhi Peace Foundation) ନିକଟରେ ଥିବା ସ୍ଥାନରେ ଏକଜୁଟ ହୋଇଥିଲେ । ଭବିଷ୍ୟତ ସରକାର କିପରି ଗଠନ କରାଯିବ ଏବଂ ପ୍ରଧାନମନ୍ତ୍ରୀ କାହାକୁ କରାଯିବ ଏହି ବିଷୟ ଉକ୍ତ ଅଧିବେଶନରେ ଆଲୋଚିତ ହେବାର କାର୍ଯ୍ୟକ୍ରମ ରହିଥିଲା । ଅଧିବେଶନ ଆରମ୍ଭ ପୂର୍ବରୁ ଭାବି ପ୍ରଧାନମନ୍ତ୍ରୀ ପଦପାଇଁ ମୋରାରଜୀ ଦେଶାଇ, ଚରଣ ସିଂ ଓ ଜଗଜ୍ଜୀବନ ରାମ ପ୍ରମୁଖ ଆଶାୟୀ ପ୍ରାର୍ଥୀ ଥାଆନ୍ତି । ଅଧିବେଶନ ଆରମ୍ଭ ପୂର୍ବରୁ ମଧ୍ୟ ଏହି ତିନିଜଣଙ୍କ ପ୍ରଧାନମନ୍ତ୍ରୀତ୍ୱକୁ ନେଇ ବେଶ୍ ବଳ କଷାକଷି ଆରମ୍ଭ ହୋଇଯାଇଥିଲା । ଏପରିକି ସେମାନେ ତିନୋଟି ଦଳରେ ବିଭକ୍ତ ହୋଇ ପରସ୍ପର ମଧ୍ୟରେ ମନ୍ତ୍ରଣା କରୁଥିବାର ମୁଁ ସ୍ପଷ୍ଟ ଲକ୍ଷ୍ୟ କରିଥିଲି । କିଛି ସମୟ ପୂର୍ବରୁ ଗାନ୍ଧୀ ସମାଧି ସ୍ଥଳରେ ନେଇଥିବା ଶପଥକୁ ସେମାନେ ସତେ ଯେପରି ଜଳାଞ୍ଜଳି ଦେଇସାରିଥିଲେ କ୍ଷମତା ଲାଳସାଯୋଗୁଁ । ସେଦିନ ଅଧିବେଶନର ଘଟଣାବଳୀକୁ ଲକ୍ଷ୍ୟ କରି ମୁଁ ନୂତନ ସରକାର ସଂପର୍କରେ ଯେଉଁ ଆକଳନ କରିଥିଲି ତାହା ପରେ ସତ୍ୟରେ

ପରିଣତ ହୋଇଥିଲା । ଜନତା ଦଳ ମଧ୍ୟରେ ଏ ଯେଉଁ କ୍ଷମତା କନ୍ଦଳ ପ୍ରାଥମିକ ଅବସ୍ଥାରୁ ଆରମ୍ଭ ହୋଇଥିଲା ତାହା ଫଳରେ ଖୁବ୍ କମ୍ ଦିନ ମଧ୍ୟରେ ସେ ସରକାର ଭାଙ୍ଗିଯାଇଥିଲା ଏବଂ ପୁନଶ୍ଚ ଇନ୍ଦିରାଗାନ୍ଧୀ ସରକାର କ୍ଷମତାକୁ ପ୍ରତ୍ୟାବର୍ତ୍ତନ କରିଥିଲା । କ୍ଷମତା ଯୋଗୁଁ ବହୁ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ କିପରି ନୀତି ଓ ଆଦର୍ଶକୁ ପାଦରେ ଦଳି ଦେଇପାରନ୍ତି ତାହା ସେହି ଘଟଣା ମୋତେ ମନେ ପକାଇଦିଏ ।

ଏହି ନିର୍ବାଚନରେ ବିଜୁବାବୁ ଲୋକସଭା ପାଇଁ ପ୍ରାର୍ଥୀ ହୋଇ ବହୁସଂଖ୍ୟାରେ ଭୋଟ ପାଇ ଜିତିଲେ । ମୁଁ ତ ଆଗରୁ ରାଜ୍ୟସଭାରେ ସଭ୍ୟଥିଲି । ଜନତା ସରକାର ଗଢ଼ାଗଲା । ବିଜୁବାବୁ କେନ୍ଦ୍ରରେ ଇସ୍ପାତ ବିଭାଗ ମନ୍ତ୍ରୀ ହେଲେ । ସେତେବେଳେ ଓଡ଼ିଶାରୁ ସେ ଏକମାତ୍ର ମନ୍ତ୍ରୀ ଥିଲେ । ମୁଁ ସେତେବେଳେ ଅଖିଳ ଭାରତୀୟ ଜନତା ଦଳର ସାଧାରଣ ସଂପାଦକ ଥିଲି । କିଛିକାଳ ପରେ ମୁଁ ମଧ୍ୟ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ଯୋଗ ଦେଲି ଓ ସ୍ୱାସ୍ଥ୍ୟ ବିଭାଗ ଦାୟିତ୍ୱରେ ରହିଲି । ଓଡ଼ିଶାରୁ ଦୁଇଜଣ ଏକାଥରେ କେନ୍ଦ୍ରମନ୍ତ୍ରୀ ରହିବା ବୋଧହୁଏ ସିଏ ପ୍ରଥମ ଘଟଣା । ବିଜୁବାବୁଙ୍କ ସହିତ ଏହି ସମୟରେ ବହୁ କ୍ଷେତ୍ରରେ ମୋର ମତଭେଦ ହୋଇଛି ମାତ୍ର ମତାନ୍ତର ହୋଇନାହିଁ ।

କେନ୍ଦ୍ରରେ ଜନତା ସରକାର ଥାଏ । ମୋରାରଜୀ ଭାଇ ଦେଶାଇ ଥାନ୍ତି ପ୍ରଧାନମନ୍ତ୍ରୀ । ମୁଁ ଏବଂ ବିଜୁବାବୁ ଉଭୟ କେନ୍ଦ୍ରମନ୍ତ୍ରୀ ମଣ୍ଡଳରେ ମନ୍ତ୍ରୀ ଥାଉ । ସେତିକିବେଳେ ଥରେ କଳାହାଣ୍ଡିର ଇନ୍ଦ୍ରାବତୀ ନଦୀ ବନ୍ଧ ଯୋଜନା ଉଦ୍‌ଘାଟନ ପାଇଁ ପ୍ରଧାନମନ୍ତ୍ରୀ ଓଡ଼ିଶା ଆସିଲେ ଏବଂ ସ୍ୱାଭାବିକ ଭାବେ ମୁଁ ଏବଂ ବିଜୁବାବୁ ମଧ୍ୟ ତାଙ୍କ ସହିତ ଓଡ଼ିଶା ଆସିଥିଲୁ । ମାତ୍ର ଗୋଟିଏ ଦିନର କାର୍ଯ୍ୟକ୍ରମ । ତେଣୁ ସେହି ବିମାନରେ ପୁନଶ୍ଚ ଦିଲ୍ଲୀ ପ୍ରତ୍ୟାବର୍ତ୍ତନର ମଧ୍ୟ ଯୋଜନା ପ୍ରସ୍ତୁତ ହୋଇଥିଲା । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କାର୍ଯ୍ୟସାରି ଆମେ ଦିଲ୍ଲୀକୁ ଫେରିବା ବାଟରେ ମୋରାରଜୀ ଭାଇ ମୋତେ ଏବଂ ବିଜୁବାବୁଙ୍କୁ ଡାକି କହିଲେ —"ତମ ଦୁଇଜଣଙ୍କୁ ମୁଁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଦେବି, ଯେପରି ହେଉ ସେ କାର୍ଯ୍ୟଟି ହେବା ଦରକାର ।" ସେତେବେଳକୁ କୌଣସି ନା କୌଣସି କାରଣରୁ ତତ୍‌କାଳୀନ ଉପପ୍ରଧାନମନ୍ତ୍ରୀ ଚୌଧୁରୀ ଚରଣ ସିଂ ତାଙ୍କ ପଦବୀରୁ ଇସ୍ତଫା ଦେଇଥାଆନ୍ତି, କିନ୍ତୁ ସେହି ଇସ୍ତଫା ପତ୍ରକୁ ମୋରାରଜୀ ଭାଇ ଗ୍ରହଣ କରି ନଥାନ୍ତି । ତାଙ୍କ ଇସ୍ତଫା ପତ୍ର ଗ୍ରହଣ ନ କରିବାର ମଧ୍ୟ ଯଥେଷ୍ଟ କାରଣ ରହିଥିଲା । ମୋରାରଜୀ ଭାଇ ଭଲ ରୂପେ ଜାଣିଥିଲେ ଯେ ଚରଣ ସିଂଙ୍କ ଇସ୍ତଫା ଗ୍ରହଣ କରିବା ଅର୍ଥ ସରକାରର ପତନ ଘଟାଇବା । ଅନ୍ୟପକ୍ଷରେ ଚରଣ ସିଂ ଇସ୍ତଫା ଦେଇଥିଲେ ସୁଦ୍ଧା ସେ ମାନସିକ ସ୍ତରରେ ଆଦୌ ଚାହୁଁ ନଥିଲେ ଯେ ଇସ୍ତଫା ପତ୍ର ଗୃହୀତ ହେଉବୋଲି । କେବଳ ବାହ୍ୟ ଅଭିମାନ ପ୍ରଦର୍ଶନ ପାଇଁ ସେ ଇସ୍ତଫା ନାଟକ ପ୍ରସ୍ତୁତ କରିଥିଲେ । ମାତ୍ର ଆନ୍ତରିକତାରେ ସେ ସେହି ଉପପ୍ରଧାନମନ୍ତ୍ରୀ ପଦ ବଜାୟ ରଖିବାକୁ ଅନ୍ତର ଭିତରେ ଚାହୁଁଥିଲେ । ମୁଁ ଓ ବିଜୁବାବୁ ଉଭୟ ପୁରୁଣା ଲୋକଦଳର ସଦସ୍ୟ । ଆମେ ସେହି ଦଳରୁ ଜନତା ଦଳକୁ ଆସିଥିଲୁ । ସେ ସମୟର ଅବସ୍ଥାକୁ ଉପଲବ୍ଧି କରି ମୋରାରଜୀ ଭାଇ ମୋତେ ଏବଂ ବିଜୁବାବୁଙ୍କୁ ଦାୟିତ୍ୱ ଦେଲେ ଯେ ଆମେ

ଦୁହେଁ ଦିଲ୍ଲୀରେ ପହଞ୍ଚି ପ୍ରଥମେ ଚରଣ ସିଂଙ୍କ ବାସଭବନକୁ ଯିବୁ ଏବଂ ସେଠାରେ ତାଙ୍କୁ ତାଙ୍କର ଇସ୍ତଫା ପତ୍ର ଓ୍ୱାପସ କରାଇ ପୁନଶ୍ଚ ମୋରାରଜୀ ଭାଇଙ୍କୁ ଖବର ଜଣାଇବୁ । ଏପରିକି, ଯେତେ ରାତି ହେଉ ପଛକେ ଜଣାଇବୁ । ଆମେ ତେଣୁ ଦିଲ୍ଲୀରେ ପହଞ୍ଚିବା କ୍ଷଣି ବିମାନରୁ ଓହ୍ଲାଇ ସିଧା ଚାଲିଲୁ ଚରଣ ସିଂଙ୍କ ବାସଭବନକୁ । ପୂର୍ବରୁ ଚରଣ ସିଂଙ୍କ ମୁଡ୍ ମୋତେ ବେଶ୍ ଜଣାଥିଲା । ଆମେ ତାଙ୍କ ଘରେ ପହଞ୍ଚିଲା ପରେ ପ୍ରଥମେ ପ୍ରଧାନମନ୍ତ୍ରୀଙ୍କ ସହିତ ଓଡ଼ିଶା ଗସ୍ତରେ ଯାଇଥିବା କଥା କହିଲୁ । କିଛି ସମୟ ସେହି ବିଷୟରେ ସେ ବିଜୁବାବୁଙ୍କ ସହିତ ଆଲୋଚନା କରୁଥିବା ବେଳେ ମୁଁ ତାଙ୍କୁ ତାଙ୍କ ଇସ୍ତଫା ପତ୍ରର କପି ମାଗିଲି । ସେ ମୋତେ ଆଶ୍ଚର୍ଯ୍ୟ ହୋଇ ହିନ୍ଦୀରେ ପଚାରିଲେ 'କ୍ୟୋଁ ?' ମୁଁ କହିଲି, "ଆପଣ ଆଗେ ଆଣନ୍ତୁ ନା!" ସେତେବେଳକୁ ଚରଣ ସିଂ ଆମ ଠାରେ ଏକ ଉଦ୍ଦେଶ୍ୟପୂର୍ଣ୍ଣ ଭାବ ଅବଶ୍ୟ ଲକ୍ଷ୍ୟ କରିସାରିଥାନ୍ତି । ଆମେ ମଧ୍ୟ ସେତେବେଳକୁ ଖୁବ୍ କମ୍ ସମୟ ବ୍ୟବଧାନରେ ପ୍ରଧାନମନ୍ତ୍ରୀଙ୍କ ନିକଟରୁ ଫେରିଥାଉ । ତେଣୁ ସେ ମନେ ମନେ ଧରିନେଇଥିଲେ ଯେ ତାଙ୍କ ଇସ୍ତଫା ସଂପର୍କରେ ନିଶ୍ଚିତ କିଛି ଗୋଟିଏ ପଦକ୍ଷେପ ନିଆଯାଉଛି । ତାପରେ ସୁନାପିଲାଟି ପରି ସେ ନିଜର ଇସ୍ତଫା ପତ୍ରଟି ଆଣି ମୋ ହାତକୁ ବଢ଼ାଇଦେଲେ ଏବଂ ପଚାରିଲେ "କ'ଣ କରିବ ?" ମୁଁ କହିଲି, "ପ୍ରଧାନମନ୍ତ୍ରୀ ଆମ ଦୁଇଜଣଙ୍କୁ ସେଇଥିପାଇଁ ଆପଣଙ୍କ ନିକଟକୁ ପଠାଇଥିଲେ । ଏବେ ଆପଣଙ୍କ ଇସ୍ତଫା ପତ୍ର ଫେରାଇ ନିଆଗଲା ।" ଏହାପରେ ମୁଁ ଚରଣ ସିଂଙ୍କ ମୁଖମଣ୍ଡଳରେ ଏକ ସ୍ମିତହସର ଝଲକ ବେଶ୍ ଲକ୍ଷ୍ୟ କରିଥିଲି । ବିଜୁବାବୁ ମଧ୍ୟ ସେହି ମୁହୂର୍ତ୍ତରେ କହିଉଠିଲେ, "ରବି ! ଦିଆସିଲିଟା ଆଣ ।" ତାପରେ ଆମେ ତାଙ୍କର ସମ୍ମୁଖରେ ତାଙ୍କ ଇସ୍ତଫା ପତ୍ରକୁ ପୋଡ଼ିଦେଲୁ । ଚରଣ ସିଂ ମଧ୍ୟ ଆମର ଏ କାର୍ଯ୍ୟରେ ଖୁବ୍ ଉଲ୍ଲସିତ ହେଲେ ଓ ଆମକୁ ଅନ୍ୟଭାବରେ ପ୍ରଶଂସା ମଧ୍ୟ କଲେ । ଏହାପରେ ପୂର୍ବ ଯୋଜନା ଅନୁଯାୟୀ ଆମେ ପ୍ରଧାନମନ୍ତ୍ରୀଙ୍କ ବାସଭବନକୁ ଫେରିଲୁ । ସେତେବେଳକୁ ରାତି ପ୍ରାୟ ୧୧ଟା ହେଲାଣି । ଆମେ ଯାଇ ସିଧା ପହଞ୍ଚିଗଲୁ ପ୍ରଧାନମନ୍ତ୍ରୀଙ୍କ ଶୟନକକ୍ଷ ନିକଟରେ । ତାପରେ ତାଙ୍କୁ ଏ ସମୟରେ ନିଦରୁ କିଏ ଡାକିବ ସେ କଥା ଉଠିଲା । ବିଜୁବାବୁ କହିଲେ, "ରବି ! ତମେ ଡାକ, ମୁଁ ଡାକିପାରିବି ନାହିଁ ।" ଅଗତ୍ୟା ମୋତେ କବାଟ ଠକ୍ ଠକ୍ କରିବାକୁ ପଡ଼ିଲା । ପ୍ରାୟ ୨ ସେକେଣ୍ଡ ମଧ୍ୟରେ ମୋରାରଜୀ ଭାଇ ତାଙ୍କ ଶୋଇଥିବା ପୋଷାକ (ଧୋତି ଓ ଫତେଇ) ରେ ଆସି କବାଟ ଖୋଲିଲେ । ସାମନାରେ ମୋତେ ଦେଖି ପଚାରିଲେ, "ଆରେ ରବି ? କ୍ୟା ହୁଆ ?" ଆମେ କହିଲୁ କାମ ହୋଇଗଲା । ଚରଣ ସିଂ ଶେଷରେ ତାଙ୍କର ଇସ୍ତଫା ଫେରାଇ ନେଲେ । ମୋରାରଜୀ ଭାଇ ଖୁସିରେ ଗଦ୍‌ଗଦ୍ ହୋଇ କହି ଉଠିଲେ ଯାହା ହେଉ ଖୁବ୍ ଭଲ ହେଲା । ତେବେ ମୋରାରଜୀ ଭାଇଙ୍କର ସେ ଖୁସି ମୁହୂର୍ତ୍ତକୁ ଲକ୍ଷ୍ୟ କରି କୌତୂହଳ ବଶତଃ ମୁଁ ତାଙ୍କୁ ଗୋଟିଏ ପ୍ରଶ୍ନ କଲି । ମୁଁ କହିଲି, "ଆଜ୍ଞା କହିଲେ ଦେଖି, ଆଜି ଯଦି ଭାରତ ପାକିସ୍ଥାନ ଯୁଦ୍ଧ ଆରମ୍ଭ ହୋଇଥାନ୍ତା ଆପଣ କ'ଣ ସବୁଦିନ ପରି ଆଜି ମଧ୍ୟ ଠିକ୍ ରାତି ୧୦ଟାରେ ଶୋଇଥାଆନ୍ତେ ?" ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ମୋରାରଜୀ ଭାଇ ପ୍ରତ୍ୟହ ଠିକ୍ ରାତି ୧୦ଟାରେ ଶୟନ କକ୍ଷକୁ ଯାଆନ୍ତି । ମୋ ପ୍ରଶ୍ନ ଶୁଣି ମୋରାରଜୀ ଭାଇ ଉତ୍ତର ଦେଲେ, "ହଁ ମୁଁ ଠିକ୍ ୧୦ଟା ବେଳେ ଘଣ୍ଟା

ଦେଖି ଶୋଇବାକୁ ଯାଇଥାନ୍ତି ଏବଂ ୧୦ଟା ୫ମିନିଟ୍ ରେ ନିଦରୁ ଉଠିଯାଇଥାନ୍ତି ।" ମୋରାରଜୀ ଭାଇଙ୍କ ଏହି ଉତ୍ତରରୁ ସେଦିନ ମୁଁ ତାଙ୍କର ଦୃଢ଼ ଇଚ୍ଛାଶକ୍ତି ଓ ସମୟାନୁବର୍ତ୍ତିତାର ଯେଉଁ ନିଦର୍ଶନ ପାଇଥିଲି ତାହା ଆଜି ପର୍ଯ୍ୟନ୍ତ ଭୁଲିନାହିଁ ।

୧୯୭୮ ସାଲରେ ଯେଉଁ ସାଧାରଣ ନିର୍ବାଚନ ଅନୁଷ୍ଠିତ ହୋଇଥିଲା, ସେଥିରେ ଓଡ଼ିଶାରେ ଜନତା ସରକାର ଯେ ଶାସନ କ୍ଷମତାକୁ ଆସିବ ଏହା ନିର୍ବାଚନର ବହୁପୂର୍ବରୁ ମଧ୍ୟ ସ୍ପଷ୍ଟ ହୋଇଯାଇଥିଲା । ସେତେବେଳକୁ ମୁଁ ରାଜ୍ୟସଭାର ମେମ୍ବର ଥାଏ ଏବଂ ନୀଳମଣି ବାବୁ ମଧ୍ୟ ରାଜ୍ୟସଭାକୁ ମନୋନୀତ ହୋଇଆସିଥାଆନ୍ତି । ସେହି କାରଣରୁ ଉଭୟଙ୍କ ମଧ୍ୟରେ ସଂପର୍କ ମଧ୍ୟ ଖୁବ୍ ଘନିଷ୍ଠ ହୋଇଯାଇଥାଏ । ବିଜୁବାବୁଙ୍କର ସେହି ସମୟରେ ଏକଦା ଓଡ଼ିଶା ଆସିବାର ଥାଏ । ମୁଁ ତାଙ୍କ ଦିଲ୍ଲୀ ବାସଭବନରୁ ତାଙ୍କୁ ବିମାନ ବନ୍ଦରରେ ଛାଡ଼ିବା ନିମନ୍ତେ ତାଙ୍କ ସହିତ ଯାଉଥାଏ, ସେ ହଠାତ୍ ଆରମ୍ଭ କଲେ, "ରବି ! ଏଥର ତମେ ଓଡ଼ିଶାକୁ ମୁଖ୍ୟମନ୍ତ୍ରୀ ହୋଇ ଆସ ।" ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼କୁ ଅନାଇଲି ଏବଂ ପ୍ରଶ୍ନ କଲି, "ମୋତେ କ'ଣ ଏକଥା କହୁଛନ୍ତି ? ଆପଣ ତ ବହୁ ପୂର୍ବରୁ ନୀଳମଣି ବାବୁଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ତାଙ୍କୁ ମୁଖ୍ୟମନ୍ତ୍ରୀ କରିବା ପାଇଁ । ତାହାକୁ ରକ୍ଷା କରିବା ପରିବର୍ତ୍ତେ ଆପଣ ମୋତେ କିପରି କହୁଛନ୍ତି ମୁଖ୍ୟମନ୍ତ୍ରୀ ହେବାପାଇଁ !" କିଛି ସମୟ ନୀରବ ରହିବା ପରେ ସେ ମୋତେ ପୁଣି କହିଲେ "ତମର ତ ଚୌଧୁରୀ ଚରଣ ସିଂହଙ୍କ ସହିତ ସଂପର୍କ ଖୁବ୍ ଭଲ (ସେତେବେଳକୁ ଚରଣ ସିଂହ ଉପପ୍ରଧାନମନ୍ତ୍ରୀ) । ତାଙ୍କୁ କହି ନୀଳମଣି ବାବୁଙ୍କୁ ଘରୋଇ ବିଭାଗର ଗୋଟାଏ ରାଷ୍ଟ୍ରମନ୍ତ୍ରୀ ନ ହେଲେ କରାଇ ଦିଅ । ପୂର୍ବରୁ ନୀଳମଣି ବାବୁ ଓଡ଼ିଶାରେ ରାଜ୍ୟ ଗୃହମନ୍ତ୍ରୀ ଭାବରେ ବହୁଦିନ କାମ କରିଥାଆନ୍ତି । ତେଣୁ ବିଶେଷ କିଛି ଅସୁବିଧା ହେବ ନାହିଁ ।" ମୋ କଥା ଉପରେ ମୁଁ ଟିକେ ଜୋର୍ ଦେଇ କହିଲି, "ବିଜୁବାବୁ ! ସେ ଲୋକ ମୁଁ ନୁହେଁ । ମୋର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାର ଲାଳସା ନାହିଁ କିମ୍ବା ଏଥିନେଇ ମୁଁ ମଧ୍ୟ ବ୍ୟସ୍ତ ନୁହେଁ । ଆପଣ ଯେହେତୁ ନୀଳମଣି ବାବୁଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ତେଣୁ ତାଙ୍କୁ ହିଁ ମୁଖ୍ୟମନ୍ତ୍ରୀ କରାଇ ଆପଣଙ୍କ ପ୍ରତିଶ୍ରୁତି ରକ୍ଷା କରନ୍ତୁ ।" ମୋର ଏ ସିଧାସଳଖ ଉତ୍ତର ଶୁଣି ବିଜୁବାବୁ ସେଦିନ ନୀରବ ହୋଇଯାଇଥିଲେ । ପରେ ସେହି ନୀଳମଣି ବାବୁ ହିଁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ ।

ସେ ଘଟଣା ପରେ ବିଜୁବାବୁଙ୍କ ସହିତ ଆଉଥରେ ସେହି ଓଡ଼ିଶାର ମୁଖ୍ୟମନ୍ତ୍ରୀ କରାଯିବା ପ୍ରସଙ୍ଗରେ ଆଲୋଚନା ହୋଇଥିଲା । ସେଥର ମୁଁ ତାଙ୍କୁ ପ୍ରହ୍ଲାଦ ମଲ୍ଲିକଙ୍କ ନାମ ପ୍ରସ୍ତାବ କରିଥିଲି କାରଣ ପ୍ରହ୍ଲାଦ ବାବୁ ଜଣେ ହରିଜନ, ଭଲକର୍ମୀ ଓ ସର୍ବୋପରି ଅଭିଜ୍ଞ ମଧ୍ୟ ଥିଲେ । ସେଥିପାଇଁ ମୁଁ ବିଜୁବାବୁଙ୍କୁ କହିଥିଲି, "ଆପଣ ଯଦି ପ୍ରକୃତରେ ମୁଖ୍ୟମନ୍ତ୍ରୀ ପରିବର୍ତ୍ତନ କରିବା ପାଇଁ ଚାହୁଁଛନ୍ତି ତାହେଲେ ପ୍ରହ୍ଲାଦ ମଲ୍ଲିକଙ୍କୁ ହିଁ ମୁଖ୍ୟମନ୍ତ୍ରୀ ବାଛିଲେ ଭଲ ହେବ ।" ସେ ସମୟରେ ବିଜୁବାବୁ ମୋ କଥା ସହିତ ସହମତ ହୋଇଥିଲେ ସତ, ମାତ୍ର ପରେ କୌଣସି ନା କୌଣସି ଦୃଷ୍ଟିରୁ ତାଙ୍କୁ ମୁଖ୍ୟମନ୍ତ୍ରୀ କରାଯାଇ ନଥିଲା (କିମ୍ବା କରାଇଦିଆଯାଇ ନଥିଲା) ।

ମୁଁ କେନ୍ଦ୍ରରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ଥରେ ଆଚାର୍ଯ୍ୟ କୃପାଳିନୀଙ୍କ ଦେହ ଅସୁସ୍ଥ ଥିବାର ଖବର ପାଇଲି । ସେ ସେତେବେଳକୁ ହସ୍‌ପିଟାଲରେ ଭର୍ତ୍ତି ହୋଇଥାନ୍ତି । ଗୁଜୁରାଟର ଅହମଦାବାଦ ଗସ୍ତ କରୁଥିବା ସମୟରେ ତାଙ୍କ ଦେହ ହଠାତ୍ ଅସୁସ୍ଥ ହୋଇପଡ଼ିଥିବା କଥା ମୁଁ ପରେ ଜାଣିବାକୁ ପାଇଲି । ସେଠାରେ ତାଙ୍କର ଚିକିତ୍ସା କରୁଥିବା ଡାକ୍ତରଙ୍କ ସହିତ ମୁଁ ପରାମର୍ଶ କରିବା ପରେ ତାଙ୍କୁ ଦିଲ୍ଲୀ ସ୍ଥିତ ଅଖିଳ ଭାରତୀୟ ଆର୍ୟୁବିଜ୍ଞାନ ସଂସ୍ଥା (AIIMS) କୁ ଆଣିବାର ବ୍ୟବସ୍ଥା କରିଦେଲି । ସେଠାରେ ତାଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ରଖାଯାଇ ଚିକିତ୍ସା କରାଗଲା । ସେଥିରେ ସେ ସଂପୂର୍ଣ୍ଣ ଆରୋଗ୍ୟ ଲାଭ କରିବା ପରେ ପୁନର୍ବାର ଗୁଜୁରାଟ ଯାଇଥିଲେ ଏବଂ ସେହିଠାରେ ହିଁ ସେ ପରଲୋକ ଗମନ କରିଥିଲେ ।

ମୁଁ କେନ୍ଦ୍ରରେ ସ୍ୱାସ୍ଥ୍ୟ ମନ୍ତ୍ରୀ ଥିବା ସମୟରେ ଆମ ରାଜ୍ୟ ଓଡ଼ିଶା ପାଇଁ ଯେଉଁ ସବୁ ଉନ୍ନତିମୂଳକ କାର୍ଯ୍ୟକ୍ରମ ହାତକୁ ନେଇଥିଲି, ତାହା ମଧ୍ୟରୁ 'ୟୁନାନୀ' ଡାକ୍ତରଖାନା ପ୍ରତିଷ୍ଠା ଅନ୍ୟତମ । ଏଥି ପୂର୍ବରୁ ଓଡ଼ିଶାରେ 'ୟୁନାନୀ' ହସ୍‌ପିଟାଲ ନଥିଲା । ଆମ ସ୍ୱାସ୍ଥ୍ୟସେବା ବ୍ୟବସ୍ଥାରେ କିନ୍ତୁ ବିଭିନ୍ନ ପ୍ରକାର ସ୍ୱାସ୍ଥ୍ୟ ସୁବିଧା ଯଥା – ଏଲୋପାଥିକ, ହୋମିଓପାଥିକ, ଆର୍ୟୁବେଦ ତଥା ୟୁନାନୀ କଥା ଉଲ୍ଲେଖ ରହିଛି । ଜନସାଧାରଣ ନିଜ ପସନ୍ଦମୁତାବକ ଉପରୋକ୍ତ ଯେ କୌଣସି ଗୋଟିଏ ଚିକିତ୍ସା ପଦ୍ଧତିକୁ ମଧ୍ୟ ଗ୍ରହଣ କରିପାରିବେ । ମୋର ଧାରଣା ହେଲା ଯେ, ଓଡ଼ିଶାରେ କେବଳ ୟୁନାନୀ କୁ ଛାଡ଼ିଦେଲେ ପ୍ରାୟ ଅନ୍ୟାନ୍ୟ ସମସ୍ତ ସ୍ୱାସ୍ଥ୍ୟ ସୁବିଧା ରହିଛି । ମୁଁ ତେଣୁ ଓଡ଼ିଶାରେ ଏହି ୟୁନାନୀ ଡାକ୍ତରଖାନା ପ୍ରତିଷ୍ଠା ଦିଗରେ ବିଶେଷ ମନବଳାଇଲି ଓ ଏ ସଂକ୍ରାନ୍ତରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ଚିଠି ମଧ୍ୟ ଲେଖିଲି । ଶେଷରେ ଆମ ରାଜ୍ୟ ଓଡ଼ିଶାର ଭଦ୍ରଖ ଠାରେ ୟୁନାନୀ ଡାକ୍ତରଖାନା ପ୍ରତିଷ୍ଠା ହେବାର ଯୋଜନା ପ୍ରସ୍ତୁତ ହେଲା । ସେତେବେଳକୁ ଅବଶ୍ୟ ଜନତା ସରକାରର ପତନ ପ୍ରାୟ ଆସନ୍ନ ହୋଇଯାଇଥାଏ ।

ତେବେ ସରକାର ପତନ ହେବାର ସାମାନ୍ୟ କିଛି ଦିନ ପୂର୍ବରୁ ମୁଁ ଭଦ୍ରଖ ଠାରେ ସେହି ଚିକିତ୍ସାଳୟ ଉଦ୍‌ଘାଟନ କରିବାର ସୁଯୋଗ ଲାଭ କରିଥିଲି । ଓଡ଼ିଶାରେ ଏହି ଡାକ୍ତରଖାନା ପ୍ରତିଷ୍ଠା ହେବାର ବହୁ ପୂର୍ବରୁ ମୁଁ ହାଇଦ୍ରାବାଦସ୍ଥିତ ଭାରତର ସବୁଠାରୁ ବଡ଼ ୟୁନାନୀ ହାସପାତାଳ ବୁଲିବାକୁ ଯାଇଥିଲି । ସେଠାକାର ଚିକିତ୍ସା ବ୍ୟବସ୍ଥା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଜଣେ ଦଶବର୍ଷର ଝିଅ କିପରି ସବୁ ପ୍ରକାର ଚିକିତ୍ସା ପଦ୍ଧତିରୁ ବିଫଳ ହୋଇ ଶେଷରେ ୟୁନାନୀ ଚିକିତ୍ସା ଦ୍ୱାରା ଆରୋଗ୍ୟ ଲାଭ କରିଥିଲା ତାହାର ଏକ ଫଟୋଚିତ୍ର ଦେଖି ମୁଁ ଅଭିଭୂତ ହୋଇପଡ଼ିଥିଲି । ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଆକବର ଆଲ୍ଲୀ ଖାଁ ହାଇଦ୍ରାବାଦର ବାସିନ୍ଦା ହୋଇଥବାରୁ ସେଦିନଟି ଯାକ ମୋ ସହ ରହିଲେ ଓ ମୋ ସହ ଉକ୍ତ ହସ୍‌ପିଟାଲକୁ ମଧ୍ୟ ଯାଇଥିଲେ ।

ଓଡ଼ିଶାରେ ଆଞ୍ଚଳିକ ଆର୍ୟୁବେଦ କେନ୍ଦ୍ର ପ୍ରତିଷ୍ଠା ମଧ୍ୟ ସେହି ସମୟର ଅନ୍ୟ ଏକ ପରିଚିତ ଘଟଣା । କେନ୍ଦ୍ର ସରକାରଙ୍କ ତରଫରୁ ବିଭିନ୍ନ ରାଜ୍ୟରେ ଆଞ୍ଚଳିକ ଆର୍ୟୁବେଦ କେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ଏକ ଯୋଜନା ରହିଥିଲା । ତାହାରି ମାଧମରେ ମୁଁ ଓଡ଼ିଶାର

ରାଜଧାନୀ ଭୁବନେଶ୍ୱରରେ ଜାତୀୟ ଆୟୁର୍ବେଦ କେନ୍ଦ୍ର ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲି । ଶେଷରେ ମୋ ଉଦ୍ୟମ ଫଳବତୀ ହୋଇଥିଲା ଓ ଭୁବନେଶ୍ୱରରେ National Centre of Ayurved ପ୍ରତିଷ୍ଠା ତଥା ଉଦ୍‌ଘାଟିତ ହେଲା । ସୌଭାଗ୍ୟର କଥା ଭାରତର ଅନ୍ୟାନ୍ୟ ରାଜ୍ୟ ପରି ଏହି ପ୍ରତିଷ୍ଠାନ ଏବେ ଖୁବ୍ ପ୍ରଶଂସନୀୟ କାର୍ଯ୍ୟରେ ଆଗେଇ ଚାଲିଛି ।

ଏକଦା ଇଂଲଣ୍ଡ ସରକାରଙ୍କ ତରଫରୁ ଭାରତକୁ ୩୦୦ ଟି ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ଭ୍ୟାନ୍ (Mobile Helath Van) ଆସିବା ଥିଲା ମୋ ସ୍ୱାସ୍ଥ୍ୟମନ୍ତ୍ରୀ କାଳର ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା । ଇଂଲଣ୍ଡ ସରକାର ସେତେବେଳେ ଭାରତର ବିଭିନ୍ନ ରାଜ୍ୟରେ ଅବସ୍ଥାପିତ ମେଡ଼ିକାଲ କଲେଜମାନଙ୍କୁ ଏହିପରି ୩୦୦ଟି ଭ୍ୟାନ୍ ଯୋଗାଇ ଦେବାର ଏକ ଯୋଜନା ପ୍ରସ୍ତୁତ କରିଥିଲେ । ସେହି ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ମୁଁ ବିଲାତ ଯାଇଥିଲି । ପୂର୍ବରୁ ସେଠାରେ ମୋ ସ୍ତ୍ରୀ ଡଃ. ସରସ୍ୱତୀ ସ୍ୱାଇଁ ଭାରତ ସରକାରଙ୍କ ଅନୁମତି କ୍ରମେ ଲିଭରପୁଲ୍ ବିଶ୍ୱବିଦ୍ୟାଳୟରେ ପାଠ ପଢ଼ାଉଥାନ୍ତି । ମୁଁ ସେଠାରେ ପହଞ୍ଚି ଭାରତକୁ ସେହି ଭ୍ୟାନ୍ ଗୁଡ଼ିକ ଅଣାଯିବା ସଂପର୍କରେ ଆନୁଷଙ୍ଗିକ କାର୍ଯ୍ୟ ପ୍ରସ୍ତୁତ କରିଦେଲି । ତେବେ ଏହି ସମୟରେ ଆମ ଭାରତୀୟ ଦୂତାବାସର ହାଇକମିଶନରଙ୍କ ଠାରୁ ମୁଁ ଜାଣିବାକୁ ପାଇଲି ଯେ ଇଂଲଣ୍ଡର ଯେଉଁ କମ୍ପାନୀ ଆମକୁ ଏହି ଭ୍ୟାନ୍ ଗୁଡ଼ିକ ଯୋଗାଇବେ ସେ ସୌଜନ୍ୟତା ସ୍ୱରୂପ ମୋତେ ଏକ ଚା' ଭୋଜିରେ ଆପ୍ୟାୟିତ କରିବାକୁ ଚାହାନ୍ତି । ମୁଁ କିନ୍ତୁ ହାଇକମିଶନରଙ୍କ ସହିତ ଆଲୋଚନା କରି ସ୍ଥିର କଲି ଯେ ସେଥିରେ ଯୋଗଦେବା ମୋ ପାଇଁ ଉଚିତ୍ ହେବ ନାହିଁ । ସେ ଗାଡ଼ିଗୁଡ଼ିକ ଇଂଲଣ୍ଡରୁ ପାଣି ଜାହାଜରେ ଭାରତକୁ ଆସିଲା । ମୁଁ ସେତେବେଳେ ଏହି ଗାଡ଼ିଗୁଡ଼ିକୁ ଗ୍ରହଣ କରିବା ପାଇଁ ବମ୍ବେ ଡକ୍‌କୁ ଯାଇଥାଏ । ସେଠାରେ ମୋ ସହିତ ମହାରାଷ୍ଟ୍ରର ସ୍ୱାସ୍ଥ୍ୟମନ୍ତ୍ରୀ (ଯେ କି ଜଣେ ମହିଳା ଓ ଡାକ୍ତର) ମଧ୍ୟ ଉପସ୍ଥିତ ଥାଆନ୍ତି । ସେ ମହିଳା ସ୍ୱାସ୍ଥ୍ୟମନ୍ତ୍ରୀ ଜଣକ ଉକ୍ତ ଭ୍ୟାନ୍ ଗୁଡ଼ିକୁ ଲକ୍ଷ୍ୟ କରି କହିଥିଲେ, "ସାର୍! ଏ ବସ୍ ଗୁଡ଼ିକୁ ଦେଖି ମୋତେ ପୁଣି ଥରେ ଡାକ୍ତରାଣୀ ହୋଇ ଫେରିଯିବାକୁ ଇଚ୍ଛା ହେଉଛି ।" ସେହି ବସ୍‌ଗୁଡ଼ିକ ମଧ୍ୟରୁ ୩ଟି ବସ୍ ଓଡ଼ିଶାର ତିନୋଟି ମେଡ଼ିକାଲ କଲେଜ (କଟକ, ବ୍ରହ୍ମପୁର ଓ ବୁର୍ଲା) କୁ ଅଣାଗଲା । ସେ ବସ୍ ଗୁଡ଼ିକ ଏପରି ଭାବରେ ନିର୍ମିତ ହୋଇଥିଲା ଯେ ତା ମଧ୍ୟରେ ସକଳ ପ୍ରକାର ଚିକିତ୍ସା ଉପଲବ୍ଧ କରାଇବାର ବ୍ୟବସ୍ଥା ରହିଥିଲା । ଏପରିକି ସେ ସମୟରେ ମେଡ଼ିକାଲ କଲେଜରେ ମଧ୍ୟ ଲପଲବ୍ଧ ହେଉ ନଥିବା ଅତ୍ୟାଧୁନିକ ଚିକିତ୍ସା ଯନ୍ତ୍ରପାତିମାନ ସେଥିରେ ଖଞ୍ଜା ଯାଇଥିଲା । ସେତେବେଳେ ଏହାକୁ 'ଭ୍ରାମ୍ୟମାଣ ସ୍ୱାସ୍ଥ୍ୟକେନ୍ଦ୍ର' ବା Mobile Health Centre ବୋଲି କୁହାଯାଉଥିଲା । କିନ୍ତୁ ପରିତାପର ବିଷୟ ଏହିକି ଯେ, ଓଡ଼ିଶା ସରକାର ସେ ଭ୍ୟାନ୍ ଗୁଡ଼ିକୁ ଚଳାଇବାରେ ସକ୍ଷମ ହୋଇ ପାରିଲେ ନାହିଁ । ସେଗୁଡ଼ିକ ଅବ୍ୟବହୃତ ଅବସ୍ଥାରେ ପଡ଼ି ପଡ଼ି କେବଳ ନଷ୍ଟ ହୋଇଗଲା । ଆବଶ୍ୟକୀୟ ଅର୍ଥ ବ୍ୟବସ୍ଥା ଏବଂ ଉପଯୁକ୍ତ ଡ୍ରାଇଭର ଅଭାବରୁ ସେଗୁଡ଼ିକୁ ଚଳାଇବା ସମ୍ଭବ ହେଲା ନାହିଁ ବୋଲି ସେତେବେଳେ ସରକାରଙ୍କ ତରଫରୁ ଯେତେ ସଫେଇ ଦିଆଯାଇଥିଲେ ମଧ୍ୟ ମୋତେ ଏହି ଘଟଣା ଖୁବ୍ ମର୍ମାହତ କରିଥିଲା ।

ଚୌଧୁରୀ ଚରଣ ସିଂହ ପ୍ରଧାନ ମନ୍ତ୍ରୀ ହୋଇଥାଆନ୍ତି । ବିଜୁବାବୁ ସେତେବେଳେ ଦୋଦୁଲ୍ୟମାନ ଅବସ୍ଥାରେ ଥାଆନ୍ତି । ସେ ଠିକ୍ କରି ପାରୁ ନଥାଆନ୍ତି ସେ ମୋରାରଜୀ ଭାଇଙ୍କ ସହିତ ରହିବେ କି ଚରଣ ସିଂହଙ୍କ ସହିତ । ମୁଁ ସେତେବେଳେ ଚରଣ ସିଂହଙ୍କ ସହିତ ଯୋଗ ଦେଇଥାଏ । ଭାରତର ପ୍ରତିରକ୍ଷାମନ୍ତ୍ରୀ ହେବା ବିଜୁବାବୁଙ୍କର ବହୁ କାଳ ଧରି ଗୋଟାଏ ସ୍ୱପ୍ନଥିଲା । ଏପରିକି ଚୀନ୍‌ର ଭାରତ ଆକ୍ରମଣ ବେଳେ ସେ ଆମେରିକା ଯାଇ ସେଠି ନିଜକୁ ଭାରତର ଭବିଷ୍ୟତ ପ୍ରତିରକ୍ଷାମନ୍ତ୍ରୀ ବୋଲି ପରିଚୟ ଦେଇଥିଲେ । ଏଥିପାଇଁ ସେତେବେଳେ ପାର୍ଲାମେଣ୍ଟରେ ବହୁତ ପାଟିତୁଣ୍ଡ ହୋଇଥିଲା । ଅବଶ୍ୟ ଏହି ଗୋଳମାଳ ପରେ ବିଜୁବାବୁଙ୍କୁ ସଫେଇ ଦେବାକୁ ପଡ଼ିଥିଲା ଯେ ସେ ଏପରି କଥା କୌଣସିଠାରେ କହି ନାହାନ୍ତି । ବିଜୁବାବୁ ଜାଣିଥିଲେ ଯେ ଚରଣ ସିଂହଙ୍କୁ ମୁଁ ଯାହା କହିବି ସେ ନିଶ୍ଚୟ ସେ କଥା ରଖିବେ । ଭାରତର ପ୍ରତିରକ୍ଷା ମନ୍ତ୍ରୀ ହେବା ପାଇଁ ଥିବା ତାଙ୍କର ଆକାଂକ୍ଷା କଥା ବିଜୁବାବୁ ମୋ ଆଗରେ କହିଲେ । ତାପରେ ଅବିକଳ ଏହି ଭାଷାରେ ମୋତେ ଅନୁରୋଧ କଲେ, "ତୁମେ ମୋତେ defence minister କରାଅ ।" ତାପରେ ମୁଁ ଆସି ଚରଣ ସିଂହଙ୍କୁ ମୋ ଢଙ୍ଗରେ ବୁଝାଇଲି ଯେ ଆପଣ ବିଜୁବାବୁଙ୍କୁ ପ୍ରତିରକ୍ଷା ମନ୍ତ୍ରୀ କରନ୍ତୁ ନ ହେଲେ ସେ ଆପଣଙ୍କ ସହିତ ରହିବେ ନାହିଁ । ଅବଶ୍ୟ ଚରଣ ସିଂହ ପୂର୍ବରୁ ବିଜୁବାବୁଙ୍କୁ କିଛି ଗୋଟାଏ ଭଲ ମନ୍ତ୍ରଣାଳୟ ଦେବା ପାଇଁ ସ୍ଥିର କରିସାରିଥିଲେ । କିନ୍ତୁ ମୋ ତାଙ୍କୁ ଜବାବ ଦେଇ ସାରିଥିଲେ । ସୁବ୍ରମନ୍ୟମ୍, ୱାଇ. ବି. ଚଭନ୍ ଇତ୍ୟାଦି ସେତେବେଳକୁ ଇନ୍ଦିରା ଗାନ୍ଧିଙ୍କୁ ବିରୋଧ କରି ତାଙ୍କ ଦଳ ଛାଡ଼ି ଆମ ଦଳରେ ଥାଆନ୍ତି । ତାପରେ ମୁଁ ଯେତେବେଳେ ଯାଇ ବିଜୁବାବୁଙ୍କୁ ଚରଣ ସିଂହଙ୍କ ପୂର୍ବ ନିଷ୍ପତ୍ତି ବିଷୟ ଜଣାଇଲି ସେ କହିଲେ, "ତେବେ ମୋତେ କୋଇଲା ବିଭାଗ ଦିଅ ।" ମୋତେ ତେଣୁ ପୁନର୍ବାର ବିଜୁବାବୁଙ୍କ ପ୍ରସ୍ତାବ ନେଇ ଚରଣ ସିଂହ ଙ୍କ ପାଖକୁ ଯିବାକୁ ପଡ଼ିଲା । ସେ ପ୍ରସ୍ତାବରେ ମଧ ଚରଣ ସିଂହ ଟିକେ ଦ୍ୱିଧାରେ ପଡ଼ିଲେ । କାରଣ ସେତେବେଳେ କୋଇଲା ଶକ୍ତିବିଭାଗ ସହିତ ରହିଥାଏ ଏବଂ ସେ ବିଭାଗ କେ.ସି. ପନ୍ତଙ୍କୁ ଦେବା ପାଇଁ ଚରଣ ସିଂହ ପ୍ରତିଶ୍ରୁତି ଦେଇସାରି ଥାଆନ୍ତି । ତାପରେ ଶ୍ରୀ ପନ୍ତଙ୍କୁ ପ୍ରଧାନମନ୍ତ୍ରୀଙ୍କ ବାସ ଭବନକୁ ଡକାଗଲା । ସେଠି ଚରଣ ସିଂହ, ମୁଁ ଓ ପନ୍ତ ବସି ଦୀର୍ଘ ଆଲୋଚନା କଲୁ ଓ ଶେଷରେ ପନ୍ତ କୋଇଲା ବିଭାଗ ଛାଡ଼ିବାକୁ ରାଜିହେଲେ । ଭାଇଭାଗ ହେଲାବେଳେ ଜମି ଜମା ଯେପରି ଖାତାଫଡ଼ା ହୁଏ ସେହିପରି କୋଇଲାକୁ ଶକ୍ତି ବିଭାଗରୁ ଅଲଗା କରି ଏହାକୁ ଏକ ସ୍ୱତନ୍ତ୍ର ବିଭାଗ କରାଗଲା । ବିଜୁବାବୁ ତାଙ୍କର ମନୋବାଞ୍ଛା ପୂରଣ ହୋଇଛି ବୋଲି ମୋଠାରୁ ଶୁଣି ମୋତେ କୋଳାଗ୍ରତ କଲେ । ତା'ପରେ ସେ ଚରଣ ସିଂହଙ୍କ ମନ୍ତ୍ରୀମଣ୍ଡଳରେ ଇସ୍ପାତ ସହିତ କୋଇଲା ବିଭାଗର ମଧ ମନ୍ତ୍ରୀ ହେଲେ ।

କେନ୍ଦ୍ରରେ ହେଉ ଅଥବା ରାଜ୍ୟରେ ହେଉ ମନ୍ତ୍ରୀ ହେବା ପାଇଁ ଲୋକେ କିପରି ଲବି କରନ୍ତି ତାହା ନିଜେ ଅଙ୍ଗେ ନ ଲିଭାଇଲେ କେହି ବିଶ୍ୱାସ କରିପାରିବେ ନାହିଁ । ମୁଁ କେବେ ମୋ ଜୀବନରେ ଏଥିପାଇଁ ଲବି କରି ନାହିଁ । ଏ ପ୍ରଶ୍ନ ମୋ ଅଭିଧାନରେ ହିଁ ନାହିଁ । ଦିନକର ଘଟଣା । ମୁଁ ସେତେବେଳେ ରାଜ୍ୟସଭା ସଭ୍ୟ ଥାଏ । ୧୯୭୮ ମସିହା କଥା ।

ମୋରାରଜୀ ଦେଶାଇଙ୍କ ସରକାର ଚାଲିଥାଏ । ପାର୍ଲାମେଣ୍ଟ ଅଧିବେଶନ ସରିଯିବା ପରେ ମୁଁ ଓଡ଼ିଶା ଆସିବା ପାଇଁ ପ୍ରସ୍ତୁତ ହେଉଥାଏ । ମୋ ସହିତ ଯୁଧିଷ୍ଠିର ଦାସ (ବିଶିଷ୍ଟ ସମାଜବାଦୀ ନେତା ଯେ କି ପରବର୍ତ୍ତୀ କାଳରେ ଓଡ଼ିଶା ବିଧାନସଭାର ବାଚସ୍ପତି ହେଲେ ) ଥାଆନ୍ତି । ଆମେ ରେଳ ଷ୍ଟେସନରେ ଗାଡ଼ି ଅପେକ୍ଷାରେ ଅଛୁ । ଜଣେ ବ୍ୟକ୍ତି ରାଜନାରାୟଣଙ୍କ ପାଖରୁ ଧଇଁ ସଇଁ ହୋଇ ଆସି ଷ୍ଟେସନରେ ପହଞ୍ଚିଲେ । କହିଲେ "ରବି ରାୟଜୀ ! ରାଜନାରାୟଣଜୀ ବୁଲା ରହେ ହେଁ ।" ସେ କହିଲେ "ରାଜନାରାୟଣଜୀ କହିଛନ୍ତି ଆପଣ ଓଡ଼ିଶା ଗସ୍ତ ବାତିଲ୍ କରି ଫେରି ଚାଲନ୍ତୁ ଓ ତାଙ୍କୁ ଶୀଘ୍ର ଦେଖା କରନ୍ତୁ ।" ଯୁଧିଷ୍ଠିର ବାବୁଙ୍କ ସହିତ ମୋ ଜିନିଷପତ୍ର ମୋ ଘରକୁ ପଠାଇଦେଇ ମୁଁ ସିଧା ରାଜନାରାୟଣଙ୍କ ଘରକୁ ଚାଲିଲି । ରାଜନାରାୟଣ ସେତେବେଳେ ମୋରାରଜୀ ଭାଇଙ୍କ ସରକାରରେ ଥାଆନ୍ତି ସ୍ୱାସ୍ଥ୍ୟମନ୍ତ୍ରୀ । ସେ ପୁଣି ସେତେବେଳେ ମୋରାରଜୀଙ୍କର ଗୋଟିପୁଅ ଓ ଇନ୍ଦିରାଗାନ୍ଧୀ ତାଙ୍କଠାରୁ ପରାସ୍ତ ହୋଇ ଜରୁରୀ ପରିସ୍ଥିତି ଜାରି କରିଥିବାରୁ ତାଙ୍କୁ ସମସ୍ତେ ଜଣେ 'ହିରୋ' ଆଖିରେ ଦେଖୁଥାଆନ୍ତି । ରାଜନାରାୟଣ ମୋତେ ଡାକି କହିଲେ, ଲୋକଦଳ ତରଫରୁ ତମକୁ ସାଧାରଣ ସଂପାଦକ କରିବା ଚୌଧୁରୀ ଚରଣ ସିଂହଙ୍କ ଇଚ୍ଛା । ସେତେବେଳେ ଜନତାଦଳର ସଭାପତି ଥାଆନ୍ତି ଚନ୍ଦ୍ର ଶେଖର । ସବୁ ଦଳର ଜଣେଜଣେ ସଭ୍ୟ ସେ ମିଳିତ ସରକାରରେ ରହିବା କଥା । ମଧୁଲିମାୟେ ସମାଜବାଦୀ ଦଳର ଓ ନାନା ଦେଶମୁଖ ହେଲେ ଜନସଂଘର । ଏହିପରି ଅନ୍ୟାନ୍ୟ ସମସ୍ତ ସହଯୋଗୀ ଦଳରୁ ଜଣେଜଣେ ସଂପାଦକ ରହିଲେ । ମୁଁ ସେତେବେଳକୁ ମୋ ସଂପର୍କରେ ନିଆଯାଇଥିବା ସିଦ୍ଧାନ୍ତ ସଂପର୍କରେ କିଛି ଜାଣିନଥିଲି । ଏହିପରି ଘଟଣାଚକ୍ରରେ ମୁଁ ଶାସକ ଦଳର ସାଧାରଣ ସଂପାଦକ ହୋଇଗଲି ।

ଇତି ମଧ୍ୟରେ ଖବରକାଗଜରେ ବାହାରିଥାଏ ଯେ ରବି ରାୟ ରାଷ୍ଟ୍ରମନ୍ତ୍ରୀ ହେବେ । ସେ ପୁଣି ବାଣିଜ୍ୟ ବିଭାଗର । ମୋ ପାଖକୁ ଏ ଖବରର ସତ୍ୟାସତ୍ୟ ବୁଝିବା ପାଇଁ ବିଭିନ୍ନ ଆଡୁ ଘନଘନ ଫୋନ୍ ଆସୁଥାଏ । ମୁଁ ଏ ସଂପର୍କରେ କିଛି ଜାଣିନଥାଏ । ମୋର ସେ ପର୍ଯ୍ୟନ୍ତ ଧାରଣା ଥାଏ ଯେ ଏଭଳି ସବୁ ଖବର ଖବରକାଗଜମାନଙ୍କୁ ବୋଧେ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରୁ ଯାଏ । ପ୍ରଧାନମନ୍ତ୍ରୀ ମୋରାରଜୀ ଭାଇଙ୍କ ସହିତ ମୋର ଖୁବ୍ ଭଲ ସଂପର୍କ ଥାଏ । ମୁଁ ଏ ଖବରର ସତ୍ୟାସତ୍ୟ ଜାଣିବା ପାଇଁ ତାଙ୍କୁ ଭେଟିଲି । ଏହା ପୂର୍ବରୁ ସମରେନ୍ଦ୍ର କୁଣ୍ଡୁ ଓଡ଼ିଶାରୁ ବୈଦେଶିକ ବିଭାଗର ରାଷ୍ଟ୍ରମନ୍ତ୍ରୀ ଥିଲେ । ମୋରାରଜୀ ଭାଇ ମୋ ପ୍ରଶ୍ନରେ ଆଶ୍ଚର୍ଯ୍ୟ ହୋଇ ଏପରି କିଛି ପ୍ରସ୍ତାବ ତାଙ୍କ ପାଖରେ ନାହିଁ ଓ ଏହା ଏକ ଉଡ଼ା ଖବର ବୋଲି ମୋତେ କହିଲେ । ସେ କହିଲେ, "ହଁ ଅବଶ୍ୟ ମୁଁ ଏବେ ରାଷ୍ଟ୍ରମନ୍ତ୍ରୀଙ୍କ ସଂଖ୍ୟା ବଢ଼ାଇବା ସ୍ଥିର କରିଛି । କିନ୍ତୁ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀଙ୍କ ସଂଖ୍ୟା ଏବେ ବଢ଼ାଉ ନାହିଁ । ସେ କାମ ଯେତେବେଳେ ହାତକୁ ନେବି ସେତେବେଳେ ଆପଣଙ୍କୁ ମନେ ପକାଇବି । ଏବେ ନୁହେଁ ।" ମୁଁ ତାଙ୍କ ଠାରୁ ଏତେ କଥା ଶୁଣିବା ଆଶା କରିନଥିଲି । ମୁଁ କେବଳ ମୋ ରାଷ୍ଟ୍ରମନ୍ତ୍ରୀ ହେଉଥିବା ଖବର କେଉଁଠାରୁ କିପରି ଉଦ୍ଭବ ହେଲା ସେତିକି ଜାଣିବାକୁ ଚାହିଁଥିଲି । ମୁଁ ତାଙ୍କୁ ନମସ୍କାର କରି ଫେରିଲି ।

ପରେ ମୋରାରଜୀ ଭାଇ ତାଙ୍କ କଥା କିପରି ରକ୍ଷା କଲେ ସେ କଥା ମଧ ମୋ ପାଇଁ କୁତୂହଳ ଉଦ୍ଦୀପକ ଥିଲା । ରାଜନାରାୟଣ ଲୋକଦଳ କ୍ଵୋଟାରେ ମନ୍ତ୍ରୀ ହୋଇଥାନ୍ତି । ମୋରାରଜୀ ଭାଇଙ୍କ ନିର୍ଦ୍ଦେଶରେ ରାଜନାରାୟଣ ଇସ୍ତଫା ଦେଇଦେଲେ । ସେତେବେଳେ କଥା ପଡ଼ିଲା ତାଙ୍କ ସ୍ଥାନରେ ଲୋକଦଳରୁ ପୁଣି କିଏ ମନ୍ତ୍ରୀ ହେବ ? ସେତେବେଳେ ଲୋକଦଳ ନେତା ଥାଆନ୍ତି ଚୌଧୁରୀ ଚରଣ ସିଂହ । ସିଏ ମନେ ମନେ ସ୍ଥିର କରିନେଲେ ଯେ, ମୁଁ ରାଜନାରାୟଣଙ୍କ ସ୍ଥାନରେ ମନ୍ତ୍ରୀ ହେବି । ମୁଁ ଏ ବିଷୟ ବିନ୍ଦୁ ବିସର୍ଗ କିଛି ଜାଣି ନଥାଏ । ଚରଣ ସିଂହଙ୍କୁ ମୁଁ ଦିନେ ମଧ ଏକଥା କହିନାହିଁ । ସେ ଭଳି ଲବିକରିବା ତ କହିଛି, ମୋ ଜାତକରେ ନାହିଁ । ଏହାପରେ ବିଜୁ ପଟ୍ଟନାୟକ, ଅଟଳବିହାରୀ ବାଜପେୟୀ, ଆଡଭାନୀ ଓ ମଧୁ ଦଣ୍ଡବତେ ପ୍ରମୁଖ ମୋତେ ରାଜ ନାରାୟଣଙ୍କ ସ୍ଥାନରେ ନେବା ପାଇଁ ପ୍ରସ୍ତାବ ଦେଇଛନ୍ତି ମୋରାରଜୀ ଦେଶାଇଙ୍କ ଆଗରେ । ମୋରାରଜୀ ଭାଇଙ୍କର ଅନ୍ୟନାମ 'ହେଡ୍ ମାଷ୍ଟର' । ସେ ତାଙ୍କ ସହକର୍ମୀମାନଙ୍କୁ ହେଡମାଷ୍ଟର ସୁଲଭ ଭଙ୍ଗୀରେ ବ୍ୟବହାର କରନ୍ତି । ଏ ଦଳଟି ତାଙ୍କ ପାଖରେ ପହଞ୍ଚନ୍ତେ ସେ ଛାତ୍ରଙ୍କୁ ଦାଣ୍ଡିବା ଭଙ୍ଗୀରେ ସେମାନଙ୍କୁ କହିଲେ "ତମେମାନେ କାହିଁକି ଆସିଛ ? ମନ୍ତ୍ରୀମଣ୍ଡଳ ମୁଁ ଚଳେଇବି ନା ତମେମାନେ ଚଳେଇବ ? ମୋର ଯାହା କରିବା କଥା ମୁଁ କରିବି । ତମେ ଯାଅ ।" ସେମାନେ କାନମୁଣ୍ଡା ଆଉଁସି ଫେରିଲେ । ତା'ପରେ ଦିନେ ମୋତେ ଚିଠି ଆସିଲା ଯେ ମୁଁ ରାଷ୍ଟ୍ରପତି ଭବନ ଯାଇ ସେଠି କ୍ୟାବିନେଟ୍ ମନ୍ତ୍ରୀ ରୂପେ ଶପଥ ନେବି । ଏହା ମୋ ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଥିଲା । ମନ୍ତ୍ରୀମଣ୍ଡଳରେ ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ରୂପେ ଯୋଗଦେଲି । ଇଏ ୧୯୭୯ ମସିହା କଥା ।

ମୁଁ ପୁରା ଦମ୍‌ରେ ଲାଗି ପଡ଼ିଲି । ରାଜନାରାୟଣ ପୂର୍ବରୁ ଅନେକ ଗୁଡ଼ିଏ ସ୍କିମ୍ ତିଆରି କରିଥିଲେ । ସେ ସବୁରୁ ଅନେକ ଆରମ୍ଭ ହୋଇ ନଥିଲା କିମ୍ବା ଅଧାପନ୍ତାରିଆ ଅବସ୍ଥାରେ ରହିଯାଇଥିଲା । ମୁଁ ସେଗୁଡ଼ିକୁ ପୁରା କରିବା ସଙ୍ଗେ ସଙ୍ଗେ କିଛି ନୂଆ ସ୍କିମ୍ ମଧ ପ୍ରଚଳନ କଲି । ମୋ କାର୍ଯ୍ୟମାନଙ୍କ ଭିତରେ ପ୍ରଚଳନ କରାଯାଇଥିବା ବିଭିନ୍ନ ସ୍କିମ୍ ଭିତରୁ ଏକ ଉଲ୍ଲେଖଯୋଗ୍ୟ ସ୍କିମ୍ ଥିଲା ଗ୍ରାମାଞ୍ଚଳରେ "ଜନସ୍ୱାସ୍ଥ୍ୟ ରକ୍ଷକ" ନିଯୁକ୍ତି । ଏହି ଜନସ୍ୱାସ୍ଥ୍ୟ ରକ୍ଷକମାନେ ଗାଁ ଓ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ମଧ୍ୟରେ ସଂଯୋଗ ସେତୁ ରୂପେ କାମ କରିବେ । ସେମାନଙ୍କ ପାଖରେ ସବୁ ପ୍ରକାର ଔଷଧ, ଅର୍ଥାତ୍, ଡାକ୍ତରୀ, ହୋମିଓପାଥି, ଆୟୁର୍ବେଦ ଓ ୟୁନାନୀ ଔଷଧ ରଖାଯାଇ ଥିବ । ସେମାନେ ମାଟ୍ରିକ୍ ପାଶ୍ କରିଥିବେ । ପ୍ରାଥମିକ ଚିକିତ୍ସା ସଂପର୍କରେ ସେମାନଙ୍କୁ ତାଲିମ ଦିଆଯିବ । ସେମାନେ ଗ୍ରାମବାସୀମାନଙ୍କର ଆଶୁ ଚିକିତ୍ସା କରିବା ଭଳି ଯୋଗ୍ୟତା ହାସଲ କରିବେ । ସେମାନଙ୍କୁ କୌଣସି ଦରମା ଦିଆଯିବ ନାହିଁ । କେବଳ ଏକ ଶହ ଟଙ୍କା କରି ପାରିଶ୍ରମିକ ଦିଆଯିବାର ବ୍ୟବସ୍ଥା ରଖାଗଲା । ସେମାନଙ୍କୁ କେନ୍ଦ୍ର ସରକାରଙ୍କ ତରଫରୁ ଏକ ସ୍ୱତନ୍ତ୍ର ବ୍ୟାଚ୍ ଦିଆଯାଇଥିଲା । ଗାଁର କୌଣସି ଲୋକ ବେମାର ପଡ଼ିଲେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଯାଇ ସେ ବିଷୟ ରିପୋର୍ଟ କରିବା ଥିଲା ସେମାନଙ୍କର ପ୍ରଧାନକାର୍ଯ୍ୟ । ଯେଉଁ ରାଜ୍ୟସରକାର ପାରିଶ୍ରମିକ ଦେବାକୁ ତାଙ୍କ ପାଖରେ ପଇସା ନାହିଁ ବୋଲି କହୁଥିଲେ ତାଙ୍କୁ କେନ୍ଦ୍ର ସରକାର ଅନୁଦାନ ଦେଉଥିଲେ । ତେବେ ଏହି ସମୟରେ ଲୋକଦଳ ଓ କେନ୍ଦ୍ରସରକାରଙ୍କ ମଧ୍ୟରେ ମତଭେଦ ହେଲା । ପ୍ରଧାନମନ୍ତ୍ରୀ

ଓ ଉପପ୍ରଧାନମନ୍ତ୍ରୀ ଭିତରେ ବିଭିନ୍ନ ବିଷୟ ନେଇ ମତଭେଦ ହେଲା । ଚରଣ ସିଂହ ମୋରାରଜୀ ସରକାରଙ୍କୁ ଦେଉଥିବା ସମର୍ଥନ ପ୍ରତ୍ୟାହାର କରିନେଲେ । ଫଳରେ ମନ୍ତ୍ରୀମଣ୍ଡଳ ଭାଙ୍ଗିଗଲା । ମୋର ସେ ସବୁ ସ୍ବପ୍ନରୁ କିଛି ଅଧାପନ୍ତରିଆ ହୋଇରହିଗଲା । ଆଉ କିଛି କାଗଜ କଲମରେ ରହିଗଲା ।

ଅବଶ୍ୟ ମନ୍ତ୍ରୀମଣ୍ଡଳ ଭାଙ୍ଗିବା ପୂର୍ବରୁ ମୁଁ ମୋ ଭିତରେ ଏକଥା ଠିକ୍ କରିନେଇଥିଲି ଯେ, ମନ୍ତ୍ରୀମଣ୍ଡଳ ରହୁ ବା ଯାଉ, ଜଣେ ମନ୍ତ୍ରୀ ନିର୍ବାଚନ ସମୟରେ ଲୋକଙ୍କୁ ଯାହା ପ୍ରତିଶ୍ରୁତି ଦେଇଯାଇଛନ୍ତି ଯଦି ତାହା ରକ୍ଷା କରି ନ ପାରନ୍ତି, ତେବେ ସେଥିପାଇଁ କେନ୍ଦ୍ରସରକାର ଓ ପ୍ରଧାନମନ୍ତ୍ରୀ ଦାୟୀ । ମୁଁ ସଂସଦକୁ ନିର୍ବାଚିତ ହୋଇଯିବା ଏକ ବୃତ୍ତି ବା ଚାକିରୀ ବୋଲି କେବେ ଭାବି ପାରିନାହିଁ । ସେଠିକି ଯିବା ସଙ୍ଗେ ସଙ୍ଗେ ମୁଁ ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତି କିପରି ରକ୍ଷା କରିବି ସେଥିପାଇଁ ମୋ ମୁଣ୍ଡ ବିନ୍ଧା ଆରମ୍ଭ ହୋଇଯାଏ । ମୁଁ ଯେତେବେଳେ ଦେଖିଲି ମୁଁ ମୋ ପ୍ରତିଶ୍ରୁତି ରକ୍ଷା କରିପାରୁନାହିଁ ମୁଁ ଇସ୍ତଫା ଦେବା ମନସ୍ଥ କଲି । ମୁଁ ଯେତେବେଳେ ମୋ ଇସ୍ତଫାପତ୍ର ଧରି ମୋରାରଜୀ ଭାଇଙ୍କ ପାଖକୁ ଗଲି ଓ ଇସ୍ତଫା ଦେଉଥିବା କାରଣ ଦର୍ଶାଇଲି ସେ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ, "ତୁମେ କ'ଣ ସତରେ ଇସ୍ତଫା ଦେଇ ଦେଉଛ ?" ସେ ଏପରି ପଚାରିଲେ ଯେହେତୁ ଏଭଳି କାରଣରୁ ସେ ପର୍ଯ୍ୟନ୍ତ କୌଣସି ମନ୍ତ୍ରୀ କେବେ ଇସ୍ତଫା ଦେଇନଥିଲେ । ମୋରାରଜୀ ଭାଇ ଯଦିଓ ଜାଣିଥିଲେ ଯେ ମୁଁ ତାଙ୍କର ବିରୋଧୀ ଚୌଧୁରୀ ଚରଣ ସିଂହଙ୍କ ଲୋକଦଳର ଲୋକ ତଥାପି ତାଙ୍କ ସହିତ ମୋର ସଂପର୍କ ଅତି ଘନିଷ୍ଠ ଥିଲା ଓ ମୁଁ ଇସ୍ତଫା ଦେବାପରେ ମଧ ଆମ ସଂପର୍କ ସେହିପରି ଅତୁଟ ରହିଲା ।

ମୁଁ କେନ୍ଦ୍ର ସ୍ବାସ୍ଥ୍ୟମନ୍ତ୍ରୀ ହେବା ସମୟରେ ମୋ ବିଭାଗର ଅତିରିକ୍ତ ସଚିବ ଥିଲେ ଶ୍ରୀମତୀ ସରଳା ଗ୍ରେୱାଲ, ଆଇ.ଏ.ଏସ୍ । ସେ ଥରେ ବିହାର ଗସ୍ତରେ ଯାଇଥିଲେ । ସେ ବିହାରରୁ ଫେରି ମୋତେ ସେଠା ସ୍ବାସ୍ଥ୍ୟ ସ୍ଥିତି ଏବଂ ସ୍ବାସ୍ଥ୍ୟସେବା କାର୍ଯ୍ୟକ୍ରମ ସଂପର୍କରେ ରିପୋର୍ଟ ଦେଲେ । ସେଠା ସ୍ଥିତି ବର୍ଣ୍ଣନା କରୁକରୁ ସେ କାନ୍ଦି ପକାଇଲେ । ସେଠା ଗାଁ ଗହଳିରେ ସ୍ବାସ୍ଥ୍ୟସ୍ଥିତି ଅତି ଶୋଚନୀୟ ଏବଂ 'ଜନସ୍ବାସ୍ଥ୍ୟ ରକ୍ଷକ' ଯୋଜନା ମଧ ସେଠାରେ ସଂପୂର୍ଣ୍ଣ ବିଫଳ ହୋଇଛି ବୋଲି ସେ ରିପୋର୍ଟ ଦେଲେ । ସେତେବେଳେ ବିହାରର ମୁଖ୍ୟମନ୍ତ୍ରୀ ଥାଆନ୍ତି ମୋର ପରମବନ୍ଧୁ କର୍ପୁରୀ ଠାକୁର । ମୁଁ ତତ୍କ୍ଷଣାତ୍ କର୍ପୁରୀଙ୍କୁ ଫୋନ୍ ଲଗାଇଲି । ନିଜେ କଥାହେବା ସଙ୍ଗେସଙ୍ଗେ ସରଳାଙ୍କୁ ତାଙ୍କ ସହିତ କଥା କରାଇଦେଲି । କର୍ପୁରୀ ଅତି ନମ୍ର ଲୋକ । ସେ ସଙ୍ଗେସଙ୍ଗେ ମୋତେ କହିଲେ, "ରବିରାୟଜୀ, ଆଉ ଭବିଷ୍ୟତରେ ଏମିତି ଭୁଲ୍ ହେବନାହିଁ । ମୁଁ ସରଳା ଗ୍ରେୱାଲ୍‌ଙ୍କୁ ପୁଣିଥରେ ବିହାର ଆସିବାକୁ ବ୍ୟକ୍ତିଗତଭାବେ ନିମନ୍ତ୍ରଣ ଜଣାଇ ଦେଇଛି । ଇତ୍ୟାଦି ।" ଏହାପରେ ସେ ଯୋଜନା ବିହାରରେ ବେଶ୍ ଭଲଭାବେ କାର୍ଯ୍ୟକାରୀ ହୋଇଥିଲା । ସରଳା ଗ୍ରେୱାଲ୍ ପରେ ଇନ୍ଦିରାଗାନ୍ଧୀଙ୍କ କ୍ୟାବିନେଟ୍ ସେକ୍ରେଟାରୀ ହୋଇଥିଲେ । ମୁଁ ବାଚସ୍ପତି ହେବାପରେ ସେ ମୋତେ ଭେଟିବାକୁ ଆସିଥିଲେ । ସେ ସେତେବେଳେ ସମ୍ଭବତଃ ମଧ୍ୟପ୍ରଦେଶର ଗଭର୍ଣ୍ଣର ହୋଇ ସାରିଥିଲେ ।

ମୁଁ କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ପଦରୁ ବିଦାୟ ନେବା ପରେ ମନ୍ତ୍ରୀମଣ୍ଡଳ ତରଫରୁ ମୋ ପାଇଁ ଏକ ବିଦାୟକାଳୀନ ସଭା ଅନୁଷ୍ଠିତ ହୋଇଥାଏ । ହଠାତ୍ ଅପ୍ରତ୍ୟାଶିତ ଭାବେ ପଶିଆସିଲେ ଜଣେ ଭଦ୍ରମହିଳା । ସେ ମିସେସ୍ ଚାଓଲା - ଲେଡ଼ି ଇରୱିନ୍ ମେଡ଼ିକାଲ କଲେଜର ତଦାନୀନ୍ତନ ଅଧକ୍ଷା । ସଭା ସରିବାକୁ ଆଉ ୧୦/୧୫ ମିନିଟ୍ ସମୟ ବାକି ଥାଏ । ସେ ସଭାପତିଙ୍କୁ ଦିପଦ କହିବା ପାଇଁ ସମୟ ମାଗିଲେ । ତାଙ୍କ କଲେଜ ସମଗ୍ର ଏସିଆ ମହାଦେଶରେ ଏକମାତ୍ର ମହିଳା ମେଡ଼ିକାଲ କଲେଜ । ସେ କଲେଜ ପ୍ରତି ମୁଁ ବିଶେଷ ଧାନ ଦେଇଥିଲି । ଡଃ.ଚାଓଲା ଖୁବ୍ ଭାବବିହ୍ୱଳ ହୋଇ କେବଳ ସେ ସବୁ ବର୍ଣ୍ଣନା କଲେନାହିଁ, ମୋ ପୂର୍ବରୁ ଥିବା ସ୍ୱାସ୍ଥ୍ୟମନ୍ତ୍ରୀମାନଙ୍କ ସହିତ ମୋର ତୁଳନା କରି ମୋତେ ଭୂୟସୀ ପ୍ରଶଂସା କରିଥିଲେ । ତାଙ୍କର ସେଦିନର ସେ ଭାବପ୍ରବଣତାକୁ ମୁଁ ଆଜି ସୁଦ୍ଧା ଭୁଲିପାରିନାହିଁ ।

୧୯୯୦ରେ ବିଜୁବାବୁଙ୍କ ସହିତ ଗୋଟିଏ ବ୍ୟାପାର ନେଇ ମୋର ଘୋର ମତଭେଦ ହେଲା । ୧୯୯୦ ଲୋକସଭା ନିର୍ବାଚନରେ ସେ ଜିଦ୍ ଧରିଥିଲେ ଯେ ମୁଁ ମୋର ପୂର୍ବ ନିର୍ବାଚନମଣ୍ଡଳୀ ପୁରୀରୁ ଲଢ଼େ । ମାତ୍ର ମୁଁ ଜଗତ୍‌ସିଂହପୁରରୁ ଲଢ଼ିବା ପାଇଁ ଯିଦ୍ ଧରି ବସିଲି । କାରଣ ୧୯୭୯ରେ ଯେଉଁ ଲୋକସଭା ନିର୍ବାଚନ ହୋଇଥିଲା ସେଥିରେ ମୁଁ ଜଗତ୍‌ସିଂହପୁର ନିର୍ବାଚନ ଲଢ଼ିଥିଲି ଏବଂ କଂଗ୍ରେସ ତରଫରୁ ଏକ ଚକ୍ରାନ୍ତ କରି ମୋତେ ସେଠି ହରାଇ ଦିଆଯାଇଥିଲା । ମୁଁ ୧୦୦୦ ଭୋଟରେ ମାତ୍ର ହାରିଥିଲି । ମୁଁ ଜିଦ୍ ଧରିଲି ଯେ ମୁଁ ସେଇ ନିର୍ବାଚନ ମଣ୍ଡଳୀରୁ ଆଉ ଥରେ ଛିଡ଼ା ହେବି । ଶେଷରେ ସେ ରାଜି ହେଲେ ଓ ମୁଁ ପୁରୀ ନିର୍ବାଚନ ମଣ୍ଡଳୀ ପରିବର୍ତ୍ତେ ଜଗତ୍‌ସିଂହପୁରରୁ ହିଁ ଲଢ଼ିଲି । ଅବଶ୍ୟ ଓଡ଼ିଶା ସ୍ତରରେ ଏହାର କିଛି ସମାଧାନ ହୋଇପାରି ନଥିଲା । ଜନତାଦଳର କେନ୍ଦ୍ରୀୟ ପାର୍ଲାମେଣ୍ଟାରୀ ବୋର୍ଡ଼ ନିକଟରେ ଏ ପ୍ରଶ୍ନ ଯାଇଥିଲା । ସେତେବେଳେ ଏ ବୋର୍ଡ଼ର ସଭ୍ୟ ଥାଆନ୍ତି ବିଶ୍ୱନାଥ ପ୍ରତାପ ସିଂ (ଯିଏ ପରେ ଭାରତର ପ୍ରଧାନମନ୍ତ୍ରୀ ହେଲେ), ମୁଲାୟମ ସିଂ ଯାଦବ ଯିଏ କି କିଛି କାଳ ଭାରତର ପ୍ରତିରକ୍ଷା ମନ୍ତ୍ରୀ ଥିଲେ ଓ ଏବେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ), ଚନ୍ଦ୍ର ଶେଖର (ଭାରତର ଅନ୍ୟତମ ଭୂତପୂର୍ବ ପ୍ରଧାନମନ୍ତ୍ରୀ) । ଏଥିରେ ସଭାପତି ଥାଆନ୍ତି ଦେବୀ ଲାଲ (ଯିଏ ପରେ ଭାରତର ଉପପ୍ରଧାନମନ୍ତ୍ରୀ ହେଲେ) । ଏମାନେ ସମସ୍ତେ ଏକ ସ୍ୱରରେ ବିଜୁବାବୁଙ୍କୁ ନିର୍ଦ୍ଦେଶ ଦେଲେ ଯେ ରବି ରାୟ ଯେଉଁ ନିର୍ବାଚନ ମଣ୍ଡଳୀରୁ ଚାହିଁବେ ତାଙ୍କୁ ସେଇଠାରୁ ଲଢ଼ିବାକୁ ଦିଆଯାଉ । ଏପରିକି ମୁଲାୟାମ ସିଂହ ବିଜୁବାବୁଙ୍କୁ କହିଲେ "ଦେଖନ୍ତୁ, କୁରୁସଭାରେ ଦ୍ରୌପଦୀ ଅପମାନିତ ହେଉଥିଲା ବେଳେ ଆମେ ଆଉ ଭୀଷ୍ମ ପିତାମହଙ୍କ ପରି ନୀରବରେ ଚୁପ୍‌ଚାପ୍ ବସିଯାଇ ପାରିବୁ ନାହିଁ ।" ତେବେ ବିଜୁବାବୁ ଜଗତ୍‌ସିଂହପୁରରୁ ଲଢ଼ିବା ପାଇଁ ସି.ପି.ଆଇ.ର ଲୋକନାଥ ଚୌଧୁରୀଙ୍କୁ ପ୍ରତିଶ୍ରୁତି ଦେଇସାରିଥିଲେ । ମୁଁ ତାଙ୍କୁ ଅଧିକ ଅଡୁଆ ପରିସ୍ଥିତିରେ ନ ପକାଇବା ପାଇଁ କହିଲି ଯେ ଯଦି ମୁଁ ଜଗତ୍‌ସିଂହପୁରରୁ ନ ଲଢ଼େ ତେବେ କେନ୍ଦ୍ରାପଡ଼ାରୁ ଲଢ଼ିବା ଚାହେଁ । ସେହିକଥା ହେଲା । ମୁଁ କେନ୍ଦ୍ରାପଡ଼ାରୁ ପ୍ରାର୍ଥୀ ହେଲି । ବିଜୁବାବୁ ମଧ ମୋ ପାଇଁ ସେଠି ବୁଲି ବୁଲି

ପ୍ରଚାର କଲେ । କେନ୍ଦ୍ରାପଡ଼ାରୁ ମୁଁ ଜିତିକରି ପାର୍ଲାମେଣ୍ଟକୁ ଯିବା ପରେ ବାଚସ୍ପତି ହେଲି । ତାପରେ ମୋତେ ସମ୍ବର୍ଦ୍ଧନା ଦେବା ପାଇଁ ଭୁବନେଶ୍ୱରରେ ଯେଉଁ ସଭା ହୋଇଥିଲା କେତେଜଣ ବକ୍ତା ମୋତେ 'ଓଡ଼ିଶାର ଗୌରବ' ବୋଲି ଅଭିହିତ କରନ୍ତେ ବିଜୁବାବୁ କହିଲେ, "ନା ନା, ସେ କେବଳ ଓଡ଼ିଶାର ଗୌରବ ନୁହନ୍ତି ସେ ଭାରତର ଗୌରବ ।"

୧୯୯୬ ସାଲ ଲୋକସଭା ନିର୍ବାଚନରେ ମୁଁ ଆଉ ନିର୍ବାଚନ ଲଢ଼ିବି ନାହିଁ ବୋଲି ଘୋଷଣା କଲି । ବିଜୁବାବୁ ସେତେବେଳେ ଲୋକସଭାର ସଦସ୍ୟ ଥାଆନ୍ତି । ଦୀର୍ଘ ଦୁଇବର୍ଷ ପରେ ମୋର ତାଙ୍କ ସହିତ ହଠାତ୍ ଅପ୍ରତ୍ୟାଶିତ ଭାବେ ଦେଖା ହୋଇଗଲା । ଏପରି ସ୍ଥାନରେ ଦେଖା ହୋଇଗଲା ଯେଉଁଠାରେ ମୁଁ ତାଙ୍କୁ ଆଶା କରି ନଥିଲି । ମୁଁ ଲୋକସଭାର ତତ୍କାଳୀନ ବାଚସ୍ପତି ଶିବରାଜ ପାଟିଲ୍‌ଙ୍କୁ ଭେଟିବା ପାଇଁ ତାଙ୍କ ସରକାରୀ ବାସଭବନ ୨୦, ଆକବର ରୋଡ୍‌ସ୍ଥ ବାସ ଭବନ ଯାଇଥାଏ । ତାଙ୍କ ଡ୍ରଇଂରୁମ୍‌ରେ ବସି ଆମେ ଦୁଇଜଣ କଥାବାର୍ତ୍ତା ହେଉଛୁ, ସେ ମୋତେ କହିଲେ ଯେ ବିଜୁବାବୁ ତାଙ୍କୁ ଭେଟିବା ପାଇଁ ବାରଣ୍ଡାରେ ଛିଡ଼ା ହୋଇଛନ୍ତି । ତାଙ୍କୁ ତୁରନ୍ତ ଭିତରକୁ ଡାକି ଆଣିବା ପାଇଁ ମୁଁ ପାଟିଲ୍‌ଙ୍କୁ କହିଲି । ସେ ଯାଇ ତାଙ୍କୁ ଭିତରକୁ ନେଇ ଆସିଲେ । ଆମେ ପରସ୍ପର କୁଣ୍ଢାକୁଣ୍ଢି ହେଲୁ । ପୂର୍ବରୁ ଶୁଣିଥିଲି ସେ ଅସୁସ୍ଥ । ଦେଖିଲି ଏତେ ଦୁର୍ବଳ ହୋଇ ପଡ଼ିଛନ୍ତି ଯେ ଚାଲିବାକୁ ମଧ୍ୟ ଅସମର୍ଥ ।

ମୁଁ ତାଙ୍କୁ ହାଲ ଚାଲ ପଚାରିଲି । ସେ ଅବସନ୍ନ ଜଣାପଡୁଥାଆନ୍ତି । କହିଲେ, "ମୁଁ ବାଚସ୍ପତିଙ୍କ ପାଖକୁ ଆସିଛି କହିବାକୁ ଯେ ମୁଁ ଇସ୍ତଫା ଦେବା ଚାହେଁ ।" ସେତେବେଳେ ସେ ଆସ୍କା ଓ କଟକ ଦୁଇଟି ଲୋକସଭା ନିର୍ବାଚନ ମଣ୍ଡଳୀରୁ ଜିତି ଥାଆନ୍ତି । ସେ କହିଲେ, "ମୁଁ ଆସ୍କା ରଖିବି । କଟକ ଛାଡ଼ିବି । ଆଉ କଟକ ନିର୍ବାଚନ ମଣ୍ଡଳୀ ରବି ରାୟଙ୍କ ପାଇଁ ରିଜର୍ଭ ରହିଲା ।" ତାଙ୍କର ଏ ପ୍ରସ୍ତାବ ମୋତେ ଆଶ୍ଚର୍ଯ୍ୟ କଲା । କାରଣ ୧୯୯୬ ନିର୍ବାଚନରେ ମୁଁ ଯେତେବେଳେ ଘୋଷଣା କଲି ଯେ ମୁଁ ଆଉ ନିର୍ବାଚନ ଲଢ଼ିବି ନାହିଁ ସେତେବେଳେ ସେ ଭାରି ଜିଦ୍ କରୁଥିଲେ ମୁଁ ଲଢ଼େ । ମାତ୍ର ମୁଁ ମୋ ନିଷ୍ପତ୍ତିରେ ଅଟଳ ରହିଲି । ଏ ସବୁ ଜାଣି ମଧ୍ୟ ସେ ପୁଣି ପ୍ରସ୍ତାବ ଦେଲେ । ସେ ଭାବିଥିଲେ ଏବେ ମୁଁ 'ହଁ' ମାରି ଦେବି । ମାତ୍ର ମୁଁ ନୀରବ ରହିଲି । ଏବଂ ଏ ସଂପର୍କରେ ଅଧିକ ଆଲୋଚନା ନ ହେଉ – ଏହା ଜଣାଇବା ପାଇଁ କଥା ମୋଡ଼ ବଦଳାଇ ଅନ୍ୟ ପ୍ରସଙ୍ଗ ପକାଇଲି । ସେ ଠିକ୍ ବୁଝିଗଲେ । ଆଉ ସେ ପ୍ରସଙ୍ଗ ଉଠାଇଲେ ନାହିଁ ।

ସେ କଟକ ନିର୍ବାଚନ ମଣ୍ଡଳୀରୁ ଇସ୍ତଫା ଦେଲେ, ବୋଲି ବାଚସ୍ପତିଙ୍କୁ ଲିଖିତ ଭାବେ ଜଣାଇ ଦେଲେ । ତା'ପରେ କହିଲେ, "ମୋ କାମ ସରିଗଲା । ମୁଁ ଚାଲିଲି ।" ଆମେ ତାଙ୍କୁ କିଛିବାଟ ବଳେଇ ଦେଇ ଆସିଲୁ । ମୁଁ ଜାଣି ନଥିଲି ଯେ ସେଇଟା ହେବ ଆମ ଦିହିଁଙ୍କର ଶେଷ ସାକ୍ଷାତ୍ । ଏଇ ଘଟଣାର ପାଞ୍ଚଦିନ ପରେ ତାଙ୍କ ଦେହ ଅତିଶୟ ଖରାପ ବୋଲି ଦିଲ୍ଲୀପ ରାୟ ମୋତେ ଫୋନ୍ କରି ଜଣାଇଲେ । ମୁଁ ଏବଂ ମୋ ସ୍ତ୍ରୀ ତାଙ୍କୁ ଦେଖିବା ପାଇଁ ଏସ୍‌କର୍ଟ୍ ହସ୍‌ପିଟାଲକୁ ଗଲୁ । ବିଜୁବାବୁ ସଂଜ୍ଞାହୀନ ଅବସ୍ଥାରେ ଥାଆନ୍ତି । ତାଙ୍କୁ ଦେଖିବା ମୋର ସେଇ ଶେଷ । ତାପରେ ସେ ଚାଲିଗଲେ ।

ମୁଁ ଲୋକସଭା ବାଚସ୍ପତି ନିର୍ବାଚନ ହେବାର ପ୍ରାୟ ୭/୮ ଦିନ ପରେ ଥରେ ରାଜୀବ ଗାନ୍ଧୀ ମୋତେ ଟେଲିଫୋନ କଲେ । ଏହା ପୂର୍ବ ପାର୍ଲାମେଣ୍ଟରେ ସେ ପ୍ରଧାନମନ୍ତ୍ରୀ ଥିଲେ ଓ ମୁଁ ବାଚସ୍ପତି ଥିବାବେଳେ ସେ ହେଲେ ବିରୋଧୀ ଦଳର ନେତା । ତାଙ୍କ ସହିତ ଏହା ପୂର୍ବରୁ ମୋର ଆଦୌ ପରିଚୟ ନଥିଲା । ସେ ମୋତେ ଟେଲିଫୋନ କଲେ ଯେ ସେ ମୋତେ ଭେଟିବାକୁ ଚାହାନ୍ତି । ସେ ପାର୍ଲାମେଣ୍ଟରେ ଥିବା ମୋ ସ୍ପିକର ଅଫିସକୁ ଆସିଲେ । ଆମେ ପ୍ରାୟ ୩ଘଣ୍ଟା ଗପିଲୁ ।

ତାଙ୍କ ସହିତ ସେହି ପ୍ରଥମ ଭେଟ ବେଳେ ମୋର ଧାରଣା ଜନ୍ମିଥିଲା ଯେ ସେ ଜଣେ ବେଶ୍ ମେଳାପୀ ଲୋକ ଓ ସଜ୍ଜନତା ତାଙ୍କର ଗୋଟାଏ ବଡ଼ ଗୁଣ । ମୁଁ ତାଙ୍କୁ କହିଲି, "ମୁଁ ଆପଣଙ୍କୁ ଗୋଟାଏ ବିଶେଷ କାରଣରୁ ଧନ୍ୟବାଦ ଦେବାକୁ ଚାହେଁ ।" ସେ ଉତ୍‌କଣ୍ଠିତ ହୋଇ ପଚାରିଲେ, "ସାର୍, କଣ ପାଇଁ ?" ମୁଁ କହିଲି, "ଆପଣ ଯେତେବେଳେ ୧୯୮୪ ସାଲରେ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ପ୍ରଧାନମନ୍ତ୍ରୀ ହେବାର ପ୍ରାୟ ୧୫ ଦିନ ପରେ ଆପଣ ବମ୍ବେରେ ଏକ ବିବୃତି ଦେଇଥିଲେ । ସେ ବିବୃତିରେ ଆପଣ କହିଥିଲେ ଯେ କେନ୍ଦ୍ର ସରକାର ଗରିବ ଲୋକଙ୍କ ପାଇଁ ଖର୍ଚ୍ଚ କରିବାକୁ ରାଜ୍ୟ ସରକାରଙ୍କୁ ଯେଉଁ ଟଙ୍କା ପଠାଉଛନ୍ତି, ଲୋକଙ୍କ ପାଖରେ ପହଞ୍ଚିଲା ବେଳକୁ ପ୍ରତି ଶହେ ଟଙ୍କା ପନ୍ଦର ଟଙ୍କା ହୋଇଯାଉଛି । ବାଟରେ ୮୫ ଟଙ୍କା ବାଟମାରଣା ହୋଇଯାଉଛି ।" ମୁଁ ତାଙ୍କର ଏ ବିବୃତି ମନେ ରଖିଥିବାରୁ ସେ ଭାରି ଖୁସି ହୋଇଯାଇଥିଲେ । ତା'ପରେ ସେ କହିଲେ "ମୁଁ ଜଣେ ବ୍ୟୋମଯାନ ଚାଳକ । ମୋର ଇଚ୍ଛା, ଆମେ ପାଇଲଟ ବିହୀନ ବ୍ୟୋମଯାନ ଚଳାଇବା ।" ମୁଁ ତାଙ୍କୁ କହିଲି, "ଯେଉଁ ଦେଶରେ କୋଟି କୋଟି ଲୋକ ସେମାନଙ୍କର ନ୍ୟୁନତମ ଆବଶ୍ୟକତା ଅନ୍ନ, ବସ୍ତ୍ର, ଗୃହ, ଶିକ୍ଷା, ସ୍ୱାସ୍ଥ୍ୟରକ୍ଷା ସାଧନ ପାଇବାରୁ ବଞ୍ଚିତ, ସେଠି ପାଇଲଟ ବିହୀନ ଉଡ଼ାଜାହାଜ କ'ଣ ଅଗ୍ରାଧିକାର ପାଇବା ଉଚିତ ?" ସେ ହସିଲେ ଓ ମୋ ସହିତ ଏକମତ ବୋଲି କହିଲେ । ଏହି ପ୍ରଥମ ଭେଟ ପରେ ଆମ ଦୁହିଁଙ୍କ ଭିତରେ ବେଶ୍ ବନ୍ଧୁତା ହୋଇଯାଇଥିଲା ।

ମୁଁ ୧୯୯୦ରେ ଲୋକସଭାକୁ ନିର୍ବାଚିତ ହୋଇ ଦିଲ୍ଲୀରେ ପହଞ୍ଚିବା ପରେ ଆମର ପ୍ରଥମ କାମ ହେଲା ଜନତାଦଳ ପାର୍ଲାମେଣ୍ଟ ପାର୍ଟି ବୈଠକରେ ଭି.ପି. ସିଂହଙ୍କୁ ସର୍ବସମ୍ମତିକ୍ରମେ ପ୍ରଧାନମନ୍ତ୍ରୀ ନିର୍ବାଚିତ କରିବା । ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲାପରେ ସେ ନିଜର ମନ୍ତ୍ରୀମଣ୍ଡଳ ଗଢ଼ିଲେ । ମନ୍ତ୍ରୀମଣ୍ଡଳ ଗଢ଼ିଲାପରେ ଭି.ପି. ସିଂଙ୍କୁ ବିଜୁବାବୁ ଯାଇ କହିଲେ "ନୀଳମଣି ରାଉତରାୟଙ୍କୁ ମନ୍ତ୍ରୀ କରାଯାଉ ।" ସେ ତାଙ୍କୁ ଏକଥା ବହୁ ଜୋର୍ ଦେଇ କହିଲେ । ନୀଳମଣି ବାବୁ ମନ୍ତ୍ରୀ ହେଲେ । ମୋତେ ମୋର ଅନେକ ଓଡ଼ିଆ, ଅଣଓଡ଼ିଆ ବନ୍ଧୁ ପଚାରିଲେ, "ଆପଣ କାହିଁକି ମନ୍ତ୍ରୀ ହେଲେ ନାହିଁ ।" ମୁଁ କହିଲି, "ମୁଁ କେବେ ମନ୍ତ୍ରୀ ହେବା ପାଇଁ ନିଜେ କାହାକୁ କହି ନାହିଁ କିମ୍ବା ମୋ ନାଁ ସୁପାରିଶ୍ କରିବାକୁ କାହାରିକୁ ଅନୁରୋଧ ମଧ୍ୟ କରି ନାହିଁ ।" ତେବେ ମୁଁ ଥରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ବନ୍ଧୁଙ୍କ ଘରକୁ ଖାଇବାକୁ ଯାଇଥାଏ, ସେଠୁ ରାତି ପ୍ରାୟ ୧୧ଟା ବେଳେ ଫେରିଲି ।

ସେତେବେଳେ ମୁଁ ରହୁଥାଏ ପରେ ଓଡ଼ିଶାର ରାଜ୍ୟପାଳ ହୋଇଥିବା ମୋର ବନ୍ଧୁ ସତ୍ୟନାରାୟଣ ରେଡ୍ଡୀ ଙ୍କ ଘରେ । ସେ ଦେଖୁ ଦେଖୁ କହିଲେ, "ଆରେ ଭାଇ, ଏଇ ଅଳ୍ପ ସମୟ ପୂର୍ବରୁ ପ୍ରଧାନମନ୍ତ୍ରୀ ଫୋନ କରିଥିଲେ । କହିଛନ୍ତି, ଆଉ ଟିକେ ପରେ ପୁଣି ଫୋନ୍ କରିବେ ।" ଏହିଭଳି ଆମେ କଥାହେବାର ପାଞ୍ଚ ମିନିଟ୍ ପରେ ଫୋନ୍ ଆସିଲା । ନିଜେ ଭି.ପି. ସିଂ ଫୋନ୍ ଧରିଥାଆନ୍ତି । ସେ ବହୁତ୍ ନମ୍ରତା ସହିତ ହିନ୍ଦିରେ ପଚାରିଲେ "ରବି ରାୟଜୀ, ଆପଣଙ୍କ ସହିତ କେବେ ସାକ୍ଷାତ ହେବ ?" ମୁଁ କହିଲି, "କାଲି ଦିନ ଏଗାରଟାବେଳେ ଆପଣ ତ ଶପଥ ନେବେ । ମୁଁ ମଧ୍ୟ ଶପଥ ନେବା କଥା । ସେତିକିବେଳେ ଦେଖା ହେବ ।" ମୁଁ ସେ ଯାଏ ଜାଣିନଥାଏ ସେ କାହିଁକି ସାକ୍ଷାତ ହେବା କଥା ପଚାରୁଛନ୍ତି । ସେ କଥାବାର୍ତ୍ତା କରିସାରିବାର ପାଞ୍ଚ ମିନିଟ୍ ପରେ ମୋର ଅନ୍ତରଙ୍ଗ ବନ୍ଧୁ ଶରତ ଯାଦବ (ଯେକି ସେତେବେଳକୁ ମନ୍ତ୍ରୀ ହୋଇ ସାରିଥାଆନ୍ତି) ଫୋନ୍ କଲେ । ସେ ଭାରି ଖୁସି ଜଣାପଡୁଥାଆନ୍ତି । ସେ କହିଲେ, "ଆପଣଙ୍କୁ ଲୋକସଭାର ବାଚସ୍ପତି ହୋଇ ଆସିବାକୁ ପଡ଼ିବ । ଆମର ମନ୍ତ୍ରୀମଣ୍ଡଳ ବୈଠକରେ ଏହା ସ୍ଥିର ହୋଇଛି । ପ୍ରଧାନମନ୍ତ୍ରୀ ଆପଣଙ୍କୁ ଏବେ ଏକଥା କହିବେ ।" ମୁଁ କହିଲି, "ପ୍ରଧାନମନ୍ତ୍ରୀ ତ ଏବେ ଫୋନ୍ କରିଥିଲେ । ସେ ଆସନ୍ତାକାଲି ମୋତେ କିଛି ଜଣାଇବେ ବୋଲି ସୂଚନା ଦେଲେ ।" ଉପପ୍ରଧାନମନ୍ତ୍ରୀ ପଞ୍ଜାବ ଯାଇଥିଲେ । ସେଠାରୁ ଫୋନ୍‌କରି ହିନ୍ଦିରେ କହିଲେ, "ରବି ରାୟଜୀ, ଆପଣଙ୍କୁ ଅସିବା ପାଇଁ ହେବ ।" ମୁଁ ପଚାରିଲି, "କୁଆଡ଼େ ?" ସେ କହିଲେ "ଆରେ ଭାଇ, ବାଚସ୍ପତି ଆସନକୁ ଆସିବା ପାଇଁ ହବ ।"

ତାପର ଦିନ ମୁଁ ଠିକ୍ ସାଢ଼େ ଦଶଟାବେଳେ ଶପଥ ପାଠ ପାଇଁ ପାର୍ଲାମେଣ୍ଟରେ ପହଞ୍ଚିଲି । ଓଡ଼ିଶା ଭବନରେ ରହୁଥିବା କିଛି ଓଡ଼ିଆ ଏମ୍.ପି. ସେମାନେ ଏମ୍.ପି. ହେଲେ ବୋଲି ମାଜିଷ୍ଟ୍ରେଟ୍ ତାଙ୍କୁ ଦେଇଥିବା ସାର୍ଟିଫିକେଟ ଛାଡ଼ି ଦେଇ ଆସିଥିଲେ । ସେମାନଙ୍କ ସେ ସାର୍ଟିଫିକେଟ୍ ନେଇ ଆସିବା ପାଇଁ ମୁଁ ସେମାନଙ୍କୁ କହିଲି । ଇଆଡ଼େ ମୁଁ ମୋ ପକେଟ୍‌ରେ ହାତ ପୁରାଏ ତ ଆବିଷ୍କାର କଲି ଯେ ମୁଁ ମୋ ଚଷମାଟା ସତ୍ୟନାରାୟଣ ରେଡ୍‌ଡ଼ିଙ୍କ ଘରେ ଛାଡ଼ି ଦେଇ ଆସିଛି । ମୁଁ ମୋ ଚଷମାଟା ଆଣିବାକୁ ଚାଲିଗଲି । ଇଆଡ଼େ ଭି.ପି. ସିଂଙ୍କୁ ଏଗାରଟା ବେଳେ ଦେଖାହେବ ବୋଲି ଯାହା କହିଥିଲି ସେ ପ୍ରାୟ ୧୦ଟା ଲୋକ ପଠାଇ ସାରିଥାଆନ୍ତି ମୋତେ ଖୋଜିବାକୁ । ମୁଁ ଘରୁ ପାର୍ଲାମେଣ୍ଟକୁ ପୁଣି ଫେରିଲା ବେଳକୁ ଗେଟ୍ ପାଖରେ ଦୁଇଜଣ ଅଫିସର ଛକିଥିଲେ । ସେମାନେ ମୋତେ ଅଟକାଇ କହିଲେ, "ସାର୍, ପ୍ରଧାନମନ୍ତ୍ରୀ ଆପଣଙ୍କୁ ଅପେକ୍ଷା କରିଛନ୍ତି ।" ମୁଁ ଭି.ପି. ସିଂଙ୍କୁ ଯାଇ ଦେଖାକଲି । ତାଙ୍କ ପାଖରେ ପାର୍ଲାମେଣ୍ଟାରୀ ବିଭାଗ ମନ୍ତ୍ରୀ ପି.ଉପେନ୍ଦ୍ର ମଧ୍ୟ ଉପସ୍ଥିତ ଥିଲେ । ଭି.ପି. ସିଂ ତ ଅତି ଭଦ୍ର ଓ ବିନୟୀ । ସେ ନମ୍ର ଭାବରେ କହିଲେ, "ଆମେ ସବୁ ଠିକ୍ କରିଛୁ ଆପଣଙ୍କୁ ବାଚସ୍ପତି କରିବା ପାଇଁ ।" ସେଠି ଜର୍ଜ ଫର୍ଣ୍ଣାଣ୍ଡିଜ୍ ମଧ୍ୟ ଉପସ୍ଥିତ ଥିଲେ । ସେ ମୋତେ ମନୋନୟନ ପତ୍ରରେ ଦସ୍ତଖତ କରିବା ପାଇଁ କହିଲେ । ମୁଁ ଦସ୍ତଖତ କଲି । ତାପରେ ପି.ଉପେନ୍ଦ୍ର ବିରୋଧୀ ଦଳ ନେତା ରାଜୀବ ଗାନ୍ଧୀଙ୍କ ସହିତ ଆଲୋଚନା କରିବାକୁ ଗଲେ ।

ସେ ପଚାରିଲେ "କାହାକୁ ଆପଣମାନେ ବାଚସ୍ପତି ପଦ ପାଇଁ ଠିଆ କରୁଛନ୍ତି ?" ରାଜୀବ ଗାନ୍ଧି ଯେତେବେଳେ ଶୁଣିଲେ ଯେ ସରକାରୀ ଦଳ ମୋ ନାଁ ପ୍ରସ୍ତାବ କରୁଛନ୍ତି ସେ କହିଲେ ଯଦି ରବି ରାୟଙ୍କ ନାଁ ଆପଣମାନେ ପ୍ରସ୍ତାବ କରୁଛନ୍ତି ତେବେ ଆମେ ଆଉ ପ୍ରାର୍ଥୀ ଦେବୁ ନାହିଁ । ପରମ୍ପରା ଅନୁଯାୟୀ ନୂଆ ବାଚସ୍ପତି ବଛା ହେବା ଯାଏ ଜଣେ ବୟୋଜ୍ୟେଷ୍ଠ ସଭ୍ୟ ଦିନେ ଦୁଇ ଦିନ ପାଇଁ ବାଚସ୍ପତିଙ୍କ କାର୍ଯ୍ୟ ଚଳାନ୍ତି । ସେ ଘୋଷଣା କଲେ ଯେ ରବିରାୟ ସର୍ବସମ୍ମତି କ୍ରମେ ବାଚସ୍ପତି ନିର୍ବାଚିତ ହେଲେ ।

ସେଠି ଉପସ୍ଥିତ ଓଡ଼ିଆ ଏମ୍.ପି ମାନେ କହିଲେ ଆପଣ ତ ଆଉ କାଲିଠାରୁ ସ୍ୱାଧୀନ ଭାବେ ବୁଲି ପାରିବେ ନାହିଁ । ଆପଣ ଆଜି ଓଡ଼ିଶା ଭବନ ଆସନ୍ତୁ । ମୁଁ ଯାଇ ଦେଖେ ତ ସେଠି ବିଜୁବାବୁ ଅପେକ୍ଷା କରିଛନ୍ତି । ସେ ମୋତେ ଗାଢ଼ ଆଲିଙ୍ଗନ କରି ବଧେଇ ଜଣେଇଲେ । ସେ କହିଲେ "ମୁଁ ଭାରି ଖୁସି ।" ତେବେ ଆଉ ଏକ ମନ୍ତବ୍ୟ ଦେଲେ, "ତୁମେ କ'ଣ ମନ୍ତ୍ରୀ ହୋଇ ନ ଥାଆନ୍ତ କି ?" ଏଇଟା ସେ କହିଲେ, ବୋଧେ ସେ ଭାବୁଥିଲେ ଯେ ମୁଁ ମନ୍ତ୍ରୀ ହେବାକୁ ଲାଳାୟିତ ଥିଲି । ମୁଁ ବାଚସ୍ପତି ହେବା ଖବର ସେ ଆଗରୁ ପାଇ ନଥିଲେ । ଏହା ପରେ ନୀଳମଣି ରାଉତରାୟ ମଧ୍ୟ ଆସି ମୋତେ ବଧେଇ ଜଣେଇଲେ । ବାଚସ୍ପତି ହୋଇ ମୁଁ ଯେଉଁଦିନ ଲୋକ ସଭାରେ ପ୍ରଥମ ଦିନ ଦାୟିତ୍ୱ ନେଲି, ସବୁ ଦଳର ନେତା ମୋତେ ସ୍ୱାଗତ ସମ୍ବର୍ଦ୍ଧନା କଲେ । ସମସ୍ତେ ସେଦିନ ଯେପରି ଆଦର ସ୍ନେହ ଦେଖାଇଲେ ଓ ସୌହାର୍ଦ୍ଦପୂର୍ଣ୍ଣ ଭାଷାରେ ଯାହା ସବୁ କହିଲେ ତାହା ଭୁଲିବାର ନୁହେଁ ।

ମୁଁ ବାଚସ୍ପତି ହେବା ପରେ ଯେଉଁ କେତୋଟି ମହତ୍ତ୍ୱପୂର୍ଣ୍ଣ ଘଟଣା ହାତକୁ ନେଇଥିଲି ସେଥି ଭିତରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା, ବିଚାରପତି ରାମସ୍ୱାମୀଙ୍କ ଭର୍ତ୍ସନା । ସୁପ୍ରିମ୍ କୋର୍ଟରେ ସେ ସମୟର ଅନ୍ୟତମ ବିଚାରପତି ଶ୍ରୀ ରାମସ୍ୱାମୀ ହରିଆନାରେ ମୁଖ୍ୟ ବିଚାରପତି ଥିଲାବେଳେ ୪୮ ଲକ୍ଷ ଟଙ୍କା ଆତ୍ମସାତ୍ କରିଛନ୍ତି ବୋଲି ଭାରତର Comptroller And Auditor General (CAG) ଗୋଟିଏ ରିପୋର୍ଟ ଦେଲେ । ଏହି ରିପୋର୍ଟକୁ ଭିତ୍ତିକରି ୧୩୦ ଜଣ ଏମ୍.ପି. ମୋତେ ଲିଖିତ ଆକାରରେ ଜଣାଇଲେ ଯେ ରାମସ୍ୱାମୀଙ୍କୁ ପାର୍ଲାମେଣ୍ଟରେ ଭର୍ତ୍ସନା କରାଯାଉ । ଆମ ସମ୍ବିଧାନ ଅନୁଯାୟୀ ଜଣେ ଜଜ୍‌ଙ୍କୁ ଦଣ୍ଡ ଦେବା ନିମିତ୍ତ ଏକ ମାତ୍ର ଉପାୟ ହେଲା ପାର୍ଲାମେଣ୍ଟରେ ତାଙ୍କୁ ଭର୍ତ୍ସନା । ତାଙ୍କୁ ଭର୍ତ୍ସନା କରିବା ପାଇଁ ମୋତେ ସରକାରୀ ଦଳ ଯେଉଁ ସ୍ମାରକ ପତ୍ର ଦେଲେ ମୁଁ ତାକୁ ଯାଞ୍ଚ କରି ସେମାନଙ୍କ ଯୁକ୍ତିର ଯଥାର୍ଥତା ହୃଦୟଙ୍ଗମ କଲି । ଏଣୁ ମୁଁ Commission of Enquiry Act ଅନୁଯାୟୀ ଗୋଟିଏ କମିଟି ଗଠନ କଲି । ନିୟମତଃ ସେଥିରେ ହାଇକୋର୍ଟର ଦୁଇଜଣ ପୂର୍ବତନ ପ୍ରଧାନ ବିଚାରପତି, ଜଣେ ସୁପ୍ରିମ୍‌କୋର୍ଟ ଜଜ୍ ଏବଂ ବାଚସ୍ପତିଙ୍କ ନିର୍ବାଚିତ ଜଣେ ବ୍ୟକ୍ତି ରହିବା କଥା । ମୁଁ ସୁପ୍ରିମ୍ କୋର୍ଟର ତତ୍କାଳୀନ ବିଚାରପତି, ପି.ବି. ସାୱନ୍ତଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ଗଢ଼ିଲି । ଏଥିରେ ବମ୍ବେର ତତ୍କାଳୀନ ମୁଖ୍ୟ ବିଚାରପତି ଶ୍ରୀ ପାଟିଲ୍ ମଧ୍ୟ ସଭ୍ୟ ରହିଲେ । ତୃତୀୟ ସଭ୍ୟ ରହିଲେ ପୂର୍ବତନ ବିଚାରପତି ଶ୍ରୀ ଚିନ୍ନାପା ରେଡି । ସମସ୍ତେ ମତ ଦେଲେ ଯେ

କମିଟିର ସମସ୍ତ ସଭ୍ୟ ଏ କାର୍ଯ୍ୟ ପାଇଁ ଅତ୍ୟନ୍ତ ଦକ୍ଷ ଓ ଯୋଗ୍ୟ ବ୍ୟକ୍ତି । କମିଟି ରାମସ୍ୱାମୀଙ୍କ ବିରୁଦ୍ଧରେ ମତ ଦେଲେ । ତାଙ୍କୁ ପାର୍ଲାମେଣ୍ଟରେ ଭର୍ତ୍ସନା କରାଯିବ ବୋଲି ମୁଁ ରାୟ ଦେଲି । ସ୍ପିକର ତାଙ୍କ ରାୟ ଦେବା ପୂର୍ବରୁ ସ୍ପିକରଙ୍କ ଅଧିକାର ସଂପର୍କରେ ରାମସ୍ୱାମୀ ସୁପ୍ରିମ୍‌କୋର୍ଟକୁ ଗଲେ । ମାତ୍ର ନ୍ୟାୟାଳୟ ତାଙ୍କ ଆପତ୍ତି ନାମଞ୍ଜୁର କରିଦେଲେ । ରାମସ୍ୱାମୀଙ୍କୁ ଭର୍ତ୍ସନା କରାଯିବା ସ୍ଥିର ସିଦ୍ଧାନ୍ତ ହୋଇଗଲା । ତେବେ ଏହା ଏକ ନିର୍ଦ୍ଦିଷ୍ଟ ପ୍ରକ୍ରିୟା ଦେଇ ହେବା କଥା । ସେ ପ୍ରକ୍ରିୟାଟି ଆରମ୍ଭ କରି ଦିଆଗଲା । ଇତ୍ୟବସରରେ ମୋତେ ରାଜିବ ଗାନ୍ଧୀ ହଠାତ୍ ଫୋନ୍ କଲେ । କହିଲେ, "ସାର୍, ମୁଁ ଆପଣଙ୍କୁ ଟିକେ ଦେଖା କରିବାକୁ ଚାହୁଁଥିଲି । ତେବେ ଏକ ଜରୁରୀ କାମରେ ବମ୍ବେ ଚାଲିଯାଉଥିବାରୁ ଏବେ ଦେଖା କରିପାରୁନାହିଁ । ଦୁଇଦିନ ପରେ ଫେରି କଥାବାର୍ତ୍ତା ହେବି । ଗୋଟାଏ ଜରୁରୀ କଥାବାର୍ତ୍ତା ଥିଲା । ଟେଲିଫୋନରେ କହିବି କି ? ମୁଁ 'ହଁ' ମାରିବାରୁ ସେ କହିଲେ, ବିଚାରପତି ରାମସ୍ୱାମୀଙ୍କୁ ମୁଁ ପ୍ରଧାନ ବିଚାରପତି ପଦ ପାଇଁ ବାଛିଥିଲି ।" ସେ ଇସାରା ଦେଲେ ଯେ ରାମସ୍ୱାମୀଙ୍କୁ ପାର୍ଲାମେଣ୍ଟରେ ଭର୍ତ୍ସନା କରାନଯାଉ । ମୁଁ ତାଙ୍କୁ ଆଉ କିଛି ନକହି କେବଳ ଏତିକି କହିଲି, "ଆପଣ ଫେରନ୍ତୁ । ଆଲୋଚନା କରିବା ।" ସେ ମୋ କଥାର ତାତ୍ପର୍ଯ୍ୟ ବୁଝିନେଲେ । ତେଣୁ ତା'ପରେ ଆଉ ସେ ନିଜେ ସିଧାସଳଖ ସେ ପ୍ରଶ୍ନ ଉଠାଇ ନାହାନ୍ତି । କିନ୍ତୁ ସେ ବିଷୟରେ ଆଲୋଚନା କରିବାକୁ ନରସିଂହ ରାଓ ଓ କେନ୍ଦ୍ରସରକାରର ଜଣେ ଭୂତପୂର୍ବ ଆଇନ୍ ମନ୍ତ୍ରୀଙ୍କୁ ମୋ ପାଖକୁ ପଠାଇଲେ । ମୁଁ ସେମାନଙ୍କୁ କହିଲି, "ଆପଣ ଯାହା କହିବାକୁ ଚାହାନ୍ତି, ମୋତେ ଲେଖିକରି ଦିଅନ୍ତୁ ।" ଏହା ଭିତରେ ପାର୍ଲାମେଣ୍ଟ ଭାଙ୍ଗିବା ସମୟ ଆସିଗଲା । ନିୟମ ଅନୁଯାୟୀ ପୁରୁଣା ପାର୍ଲାମେଣ୍ଟ ଭାଙ୍ଗିବା ପୂର୍ବରୁ ଯଦି ମୁଁ ରାମସ୍ୱାମୀଙ୍କୁ ଭର୍ତ୍ସନା କରିବାକୁ ପାର୍ଲାମେଣ୍ଟରେ ଘୋଷଣା କରିଦେଇଯିବି ତେବେ ତାହା ନୂଆ ପାର୍ଲାମେଣ୍ଟ ଗଢ଼ା ହେବାପରେ ମଧ୍ୟ କାଏମ ରହିବ ।

ରାମସ୍ୱାମୀଙ୍କ ସ୍ତ୍ରୀ ଏହି ଭର୍ତ୍ସନା ପ୍ରକ୍ରିୟା ବନ୍ଦ କରିବାକୁ ସୁପ୍ରିମ୍‌କୋର୍ଟ ଓ ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ଯାଇ ହତାଶ ହୋଇଥାଆନ୍ତି । ପାର୍ଲାମେଣ୍ଟର ଶେଷଦିନ । ଅର୍ଥାତ୍, ବାଚସ୍ପତି ରୂପେ ମୋର କାର୍ଯ୍ୟକାଳ ମଧ୍ୟ ସେଇଦିନ ପୂରିଯିବ । ପାର୍ଲାମେଣ୍ଟରେ ଯଦି ସେଇଦିନ ମୁଁ ରାମସ୍ୱାମୀଙ୍କ ଭର୍ତ୍ସନା କଥାଟା ଘୋଷଣା କରି ନ ପାରୁଛି ତାହେଲେ ସେ ଅଧ୍ୟାୟ ସେଇଠି ବନ୍ଦ ହୋଇଯିବ । ମୁଁ ମନ ଭିତରେ ଠିକ୍ କରିନେଲି ଯେ ଯେତେବେଳେ ମୁଁ ଗୃହକୁ ମୁଲତବୀ କରିବି ଠିକ୍ ତା ପୂର୍ବରୁ ରାମସ୍ୱାମୀଙ୍କ ଭର୍ତ୍ସନା କଥାଟା ଘୋଷଣା କରିଦେବି । କଂଗ୍ରେସ ବାଲାଏ ଛକାପଞ୍ଝାରେ ଥାଆନ୍ତି । ସେମାନଙ୍କର ଗୋଟାଏ କେମିତି ଧାରଣା ହୋଇଯାଇଥାଏ ଯେ ମୁଁ ସେ କଥାଟା ଭୁଲି ଯାଇଛି । ଗଲା ଆସିଲା ବେଳ । ହୁଏତ ମୁଁ ଆଉ ସେ ପ୍ରଶ୍ନଟା ଉତ୍‌ଥାପନ କରିବି ନାହିଁ ।

ତାହା ଶେଷ ଦିନ ହୋଇଥିବାରୁ ବିଧି ଅନୁଯାୟୀ ମୁଁ ସଭ୍ୟମାନଙ୍କୁ ଧନ୍ୟବାଦ ଦେବା କଥା । ମୁଁ ତାହା ବାତିଲ୍ କରିଦେଇ ରାମସ୍ୱାମୀଙ୍କୁ ଭର୍ତ୍ସନା କରାଯିବା ମୋର ରୁଲିଂ ଘୋଷଣା କରିଦେଲି । ଏହା ଏତେ ଅପ୍ରତ୍ୟାଶିତ ଥିଲା ଯେ ସମଗ୍ର ଗୃହ ବିସ୍ମୟ ଚକିତ ହୋଇଗଲା ।

ମୁଁ ସେ ଘୋଷଣାଟି କରି ବସିଲା ବେଳକୁ ଦେଖିଲି କଂଗ୍ରେସ ବାଲାଏ ହଠାତ୍ ତତ୍ପର ହୋଇ ଉଠିଲେ ଓ ନିଜ ଭିତରେ କ'ଣ ଗୋଟାଏ ଗୁପ୍ତ ମନ୍ତ୍ରଣା କରିବାକୁ ଲାଗିଲେ । ମୋତେ କାହିଁକି କେଜାଣି ଲାଗିଲା ଯେ ସେମାନେ ମନ୍ତ୍ରଣା କରୁଛନ୍ତିଯେ, ମୋ ଆସନ ପାଏ ଆସି ମୋଠାରୁ ଘୋଷଣାଟି ଛଡ଼େଇ ନେବେ । କିନ୍ତୁ ସେମାନେ ଏପରି କିଛି ଜଘନ୍ୟ କାମ କରିବା ପୂର୍ବରୁ ମୁଁ ମୋର ରୁଲିଂ ଶୁଣାଇ ଦେଲି ଓ ଲୋକସଭାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ମୁଲତବୀ କରିଦେଇ ମୋ ରୁମ୍‌କୁ ଚାଲିଆସିଥିଲି । ପ୍ରକୃତରେ ମଧ ଅଳ୍ପକିଛି ସମୟ ଭିତରେ ସେମାନେ ମୋ ଆସନ ଆଡ଼କୁ ଚିହିଙ୍କି ଆସିଲେ । ମାତ୍ର ଏହାର ପ୍ରତିକ୍ରିୟା ସ୍ୱରୂପ ସେତେବେଳକୁ ସୋମନାଥ ଚାଟାର୍ଜୀଙ୍କ ନେତୃତ୍ୱରେ ଥୋକେ ବିରୋଧୀ ନେତା ସେମାନଙ୍କ ମୁହାଁ ମୁହିଁ ହୋଇଗଲେଣି । କିଛି ବୟସ୍କ ନେତାଙ୍କ ହସ୍ତକ୍ଷେପ ଫଳରେ ଅବଶ୍ୟ ଏକ ନିଶ୍ଚିତ ସଂଘର୍ଷରୁ ଉଭୟପକ୍ଷ ରକ୍ଷାପାଇଗଲେ । ସେତେବେଳକୁ ମୁଁ ଘୋଷଣାଟି ପଢ଼ି ସାରି ମୋ ରୁମ୍‌କୁ ଚାଲିଗଲିଣି । ସେଠାକୁ ଯିବା ପାଇଁ କଂଗ୍ରେସବାଲାଙ୍କର ଆଉ ସାହସ ପାଇଲାନାହିଁ । ଏହିଭଳି ଅବଶେଷରେ ଦୁର୍ନୀତିଗ୍ରସ୍ତ ବିଚାରପତି ରାମସ୍ୱାମୀ ପାର୍ଲାମେଣ୍ଟ ଦ୍ୱାରା ଭର୍ତ୍ସିତ ହେଲେ ।

ଏହାପରେ ଥରେ ମୁଁ ଓ ରାଜୀବ ଗାନ୍ଧୀ ଏକ ସାନ୍ଧ୍ୟ ଭୋଜିରେ ଯୋଗ ଦେବା ଅବସରରେ ଛିଡ଼ା ହୋଇ ଗପୁଛୁ । ହଠାତ୍ ମୋର ବନ୍ଧୁ ମୋହନ ଧରିଆ କେଉଁଠି ଥିଲେ ଆମ ପାଖକୁ ଚାଲି ଆସି ରାଜୀବ ଗାନ୍ଧୀଙ୍କୁ କହିଲେ, ରାଜୀବ ଜୀ, ବ୍ରିଟିଶ ପାର୍ଲାମେଣ୍ଟର ପରମ୍ପରାଗତ ପଦ୍ଧତି ହେଉଛି: A speaker is always a speaker । ଆପଣ ଏ ପରମ୍ପରା ଭାଙ୍ଗନ୍ତୁ ନାହିଁ । ପୂର୍ବଥର ପରି ଏଥର ମଧ ରବିରାୟଙ୍କ ବିରୁଦ୍ଧରେ ପ୍ରାର୍ଥୀ ଦିଅନ୍ତୁ ନାହିଁ । ରାଜୀବ ସଙ୍ଗେ ସଙ୍ଗେ କହିଲେ, "ମୁଁ ଆପଣଙ୍କ ପ୍ରସ୍ତାବରେ ଭାରି ଖୁସି ।" ମୁଁ ପରେ ଶୁଣିଲି ସେ ପ୍ରକୃତରେ ଏକଥା ତାଙ୍କ ଦଳରେ ପକାଇ ଥିଲେ । କିନ୍ତୁ ତାଙ୍କ ଦଳ ଏଥିରେ ରାଜି ହେଲାନାହିଁ ।

ମୁଁ ବାଚସ୍ପତି ଥିବା ବେଳେ ଆଉ ଏକ ନିଷ୍ପତ୍ତି ଦେଇଥିଲି ଯାହା ସେ ସମୟରେ ଦେଶରେ ଓ ଦେଶ ବାହାରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏଇଟି ଥିଲା ଦଳବଦଳ ଆଇନ୍ (Anti Defection Act) ସଂପର୍କୀତ । ଭି. ପି. ସିଂଙ୍କ ସରକାରରୁ ହଠାତ୍ ଚନ୍ଦ୍ରଶେଖର ଏବଂ ଦେବୀଲାଲ ଓହରିଯିବା ସ୍ଥିର କଲେ । ଦିହେଁ ମିଶି ସେ ଜନତା ଦଳରୁ କିଛି ଏମ୍.ପି.ଙ୍କୁ ନେଇଯାଇ ନିଜର ଗୋଟିଏ ଗ୍ରୁପ୍ କଲେ ଓ ଶାସକ ଦଳ ବିରୁଦ୍ଧରେ ବିଦ୍ରୋହ କଲେ । ଭି. ପି. ସିଂଙ୍କ ଜନତା ଦଳ ମୋ ନିକଟରେ ଗୋଟିଏ ପିଟିସନ୍ ଦାୟର୍ କଲେ । ତାଙ୍କ ଆପତ୍ତି ଥିଲା ଯେ ଅପରପକ୍ଷ ଦଳବଦଳ ଆଇନ୍‌ର ଉଲଂଘନ କରୁଛନ୍ତି । ମୁଁ ଏଥିରେ ଯେଉଁ ରୁଲିଂ ଦେଲି ସେଥିରେ ସାରା ଦେଶରେ ଚହଳ ପଡ଼ି ଯାଇଥିଲା । ଭି. ପି. ସିଂ ସରକାରଙ୍କୁ ଭଙ୍ଗାଇ ଚନ୍ଦ୍ରଶେଖର ମନ୍ତ୍ରୀମଣ୍ଡଳ ଗଢ଼ିଥିଲେ । ମୁଁ ସେ ମନ୍ତ୍ରୀମଣ୍ଡଳର ଛଅଜଣ ମନ୍ତ୍ରୀ ଦଳବଦଳ ମୌଳିକ ସିଦ୍ଧାନ୍ତକୁ ଲଂଘନ କରିଛନ୍ତି ଦର୍ଶାଇ ସେମାନଙ୍କୁ ଲୋକସଭା ସଦସ୍ୟତା ପଦରୁ ବଞ୍ଚିତ କଲି । ଏ ରୁଲିଂ ସେତେବେଳେ ଏକ ରାଜନୈତିକ ଭୂମିକମ୍ପ ସୃଷ୍ଟି କରିଥିଲା । ମାତ୍ର ଏହା ଏପରି ଅଭ୍ରାନ୍ତ ଥିଲା ଯେ ସାରା ଭାରତବର୍ଷର ସଂବାଦପତ୍ର ଏହାକୁ ପ୍ରଶଂସା କରିଥିଲେ

ଓ ସମର୍ଥନ ମଧ୍ୟ ଜଣାଇଥିଲେ । ଏ ରୁଲିଂ ଫଳରେ ଚନ୍ଦ୍ରଶେଖରଙ୍କ ସରକାରର ପତନ ହେଲା ଓ ପୁନି ନିର୍ବାଚନ ଘୋଷିତ ହେଲା ।

ଏହି ପ୍ରସଙ୍ଗରେ ଆଉ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ମନେ ପଡୁଛି । ଉପରୋକ୍ତ ଛଅଜଣ ମନ୍ତ୍ରୀଙ୍କ ଭିତରେ ଜଣେ ବିଶିଷ୍ଟ ପୁରୁଖା ବ୍ୟକ୍ତି ଥିଲେ ଶ୍ରୀ ବିଦ୍ୟା ଚରଣ ଶୁକ୍ଳ । ସେ ମୋର ପ୍ରାୟ ସମ ବୟସ୍କ । ମୁଁ ଯେତେବେଳେ ୧୯୬୭ରେ ପ୍ରଥମେ ଲୋକସଭାର ସଦସ୍ୟ ହୋଇଯାଇଥିଲି ସେତେବେଳେ ସେ କଂଗ୍ରେସ ଦଳର ମନ୍ତ୍ରୀ ହୋଇଥିଲେ । ସେ ଆସି ମୋତେ ମୋ ବାସଭବନରେ ଭେଟିଲେ । ତାଙ୍କ ନାଁ ଟା ସେ ଛଅଜଣ ମନ୍ତ୍ରୀଙ୍କ ଭିତରୁ କାଟି ଦେବା ପାଇଁ ସେ ବାରମ୍ବାର ଅନୁରୋଧ କରୁଥାଆନ୍ତି । ସେ କହୁଥାଆନ୍ତି, "ଦେଖନ୍ତୁ, ମୁଁ ଅମୁକ ବିଭାଗ ମନ୍ତ୍ରୀ । ମୋ ଉପରେ ପ୍ରଧାନମନ୍ତ୍ରୀଙ୍କର ବହୁତ ଭରସା । ମୋ ନାଁଟା ସେ ତାଲିକାରୁ ବାଦ୍ ଦିଅନ୍ତୁ ।" ମୁଁ ତାଙ୍କୁ ଧୀରସ୍ଥିର ଭାବେ କେବଳ ଗୋଟିଏ କଥା କହିଲି, "ଆପଣ କୁହନ୍ତୁ, ମୋ ସ୍ଥାନରେ ଥିଲେ ଆପଣ କ'ଣ କରନ୍ତେ ।" ସେ ଶୁଣିବାକୁ ନାରାଜ । ସେ ସେଇ ଗୋଟିଏ ଘୋଷା ଧରି ଥାଆନ୍ତି ଓ ମୁଁ ମୋ ଘୋଷାଟି ଦୋହରାଇ ଚାଲିଥାଏ । ଦେଖିଲି ସେ ବୁଝିବାକୁ ନାରାଜ । ବାଧ ହୋଇ ମୁଁ ଛିଡ଼ା ହେଲି । କହିଲି, ମୋର ଏକ ଜରୁରୀ କାମରେ ବାହାରିବାର ଅଛି । ତେଣୁ ସେ ବାଧ ହୋଇ ଛିଡ଼ା ହେଲେ । ଗଲାବେଳେ ଖୁବ୍ ମ୍ରିୟମାଣ ଦେଖାଯାଉଥାଆନ୍ତି ।

ମୁଁ ଲୋକସଭା ବାଚସ୍ପତି ହେବା ପରେ ଲୋକସଭା ସଚିବାଳୟ ପ୍ରଶାସନରେ କେତେକ ମୌଳିକ ପରିବର୍ତ୍ତନ ଆଣିଥିଲି । ଏଥିରେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଭି. ପି. ସିଂହ ଏବଂ ବିରୋଧୀଦଳ ନେତା ରାଜୀବ ଗାନ୍ଧୀ - ଉଭୟଙ୍କର ମୁଁ ପୂର୍ଣ୍ଣ ସମର୍ଥନ ପାଇଥିଲି । ପୂର୍ବରୁ ପାର୍ଲାମେଣ୍ଟର ସେକ୍ରେଟାରୀ ଜେନେରାଲ ଥିବା ସୁବାଷ କାଶ୍ୟପ୍‌ଙ୍କୁ ବଦଳାଇ ମୁଁ ତାଙ୍କ ସ୍ଥାନରେ ସି. କେ. ଜୈନ୍‌ଙ୍କୁ ବସାଇଲି । ଏହାଛଡ଼ା ଲୋକସଭା ସଚିବାଳୟ ସ୍ୱତନ୍ତ୍ର ପରିଚାଳନା ପାଇଁ ମୁଁ ଆଉ କେତେକ ପରିବର୍ତ୍ତନ ମଧ୍ୟ କରାଇଥିଲି । ଏ ପରିବର୍ତ୍ତନରେ ଲୋକସଭା ସଚିବାଳୟର କର୍ମଚାରୀମାନେ ଏତେ ଉଲ୍ଲସିତ ହୋଇଥିଲେ ଯେ ଦିନେ ପ୍ରାୟ ୧୦୦୦ କର୍ମଚାରୀ ମୋତେ ବଧାଇ ଜଣାଇବାକୁ ଆସି ମୋର ୨୦ ଆକ୍‌ବର ରୋଡ୍ ବାସଭବନରେ ହାଜର । ସେମାନେ ମୋତେ ଗୋଟିଏ ମାନପତ୍ର ଦେଲେ । ସେଥିରେ ଯାହା ଲେଖାଥିଲା ତା'ର ସାରାଂଶ ହେଲା ଯେ "ଆପଣ ଏଇ ଯେଉଁସବୁ ସଂସ୍କାର କାର୍ଯ୍ୟ କଲେ ତା'ଫଳରେ ଆମେ ଟିକେ ଶାନ୍ତିର ନିଃଶ୍ୱାସ ମାରିଲୁ ।" ମୋର ସେ ସବୁ ପ୍ରଶାସନିକ ସଂସ୍କାରମୂଳକ କାର୍ଯ୍ୟକୁ ସେମାନେ ଗୋର୍ବାଚୋଭ୍‌ଙ୍କ ଗ୍ଲାସ୍‌ନୋସ୍ତ - ପେରେସ୍ତୋଇକା ସହ ତୁଳନା କରିଥାଆନ୍ତି । ଅବଶ୍ୟ ମୁଁ ଏ ଯେଉଁ ସବୁ ପରିବର୍ତ୍ତନ କଲି ଏହା ମୋ ସହିତ ମୋର ତତ୍‌କାଳୀନ ସ୍ପେଶଲ୍ ଆସିଷ୍ଟାଣ୍ଟ୍, ଓଡ଼ିଶା କ୍ୟାଡ଼୍‌ରର ଆଇ.ଏ.ଏସ୍. ଅଫିସର ଡ. ହୃଷିକେଷ ପଣ୍ଡା ଏବଂ ନୂତନଭାବେ ଅବସ୍ଥାପିତ ସେକ୍ରେଟାରୀ ଜେନେରାଲ୍ ସି. କେ. ଜୈନଙ୍କ ସକ୍ରିୟ ସହାୟତା ଯୋଗୁଁ ସମ୍ଭବ ହୋଇଥିଲା ।

ପରେ ଆଉ ଏକ ଘଟଣା ଘଟିଲା । ନିର୍ବାଚନରେ କଂଗ୍ରେସ ଜିତିକରି ଆସିଲା ଓ ନରସିଂହ ରାଓ ଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଢ଼ାଗଲା । ନୂଆ ବାଚସ୍ପତି ନିର୍ବାଚିତ ହୋଇ ଆସି ନଥାନ୍ତି । ଏଣୁ ମୁଁ ବାଚସ୍ପତି ଥାଏ । ରାଓଙ୍କ ମନ୍ତ୍ରୀମଣ୍ଡଳରେ ବିଦ୍ୟାଚରଣ ଶୁକ୍ଳ ମନ୍ତ୍ରୀରୂପେ ନିଆ ହୋଇଥାଆନ୍ତି । ମନ୍ତ୍ରୀ ମାନଙ୍କ ଶପଥ ପାଠ ଉତ୍ସବରେ ମୁଁ ଯୋଗ ଦେଇଥାଏ । ମୋ କଡ଼ରେ ବସିଥାଆନ୍ତି ଚନ୍ଦ୍ରଶେଖର । ଯେତେବେଳେ ଶୁକ୍ଳ ଶପଥପାଠ କରିବାକୁ ଆସିଲେ ଚନ୍ଦ୍ରଶେଖର ମୋ କାନ ପାଖରେ ଧୀରେ ଧୀରେ କହିଲେ, "ରବିଜୀ! ଦେଖ ତୁମେ ତାଙ୍କୁ ଗୋଟାଏ ପଟେ ମନ୍ତ୍ରୀପଦରୁ ହଟାଇ ଦେଲ । ସେ ଆଉ ଗୋଟାଏ ପଟେ ପୁଣି ମନ୍ତ୍ରୀ ହୋଇ ଉଭା ହେଲେଣି!" ମୁଁ ଶୁକ୍ଳଙ୍କୁ ଦେଖି ଟିକେ ମୁରୁକି ହସ ହସିଲି । କିଛି କହିଲି ନାହିଁ ।

ଚନ୍ଦ୍ର ଶେଖର ମୋର ବହୁକାଳର ବ୍ୟକ୍ତିଗତ ବନ୍ଧୁ । ସେ ପ୍ରଧାନମନ୍ତ୍ରୀ ଥିବାବେଳେ ମୁଁ ତାଙ୍କର ଛଅଜଣ ମନ୍ତ୍ରୀଙ୍କୁ ଦଳବଦଳ ଆଇନ୍‌ରେ ପକାଇ ବରଖାସ୍ତ କରାଇଲି । ତଥାପି ତାଙ୍କ ସହିତ ମୋ ବନ୍ଧୁତ୍ୱ ଅକ୍ଷୁର୍ଣ୍ଣ ରହିଥିଲା । ସେ ଯେତେବେଳେ ପୁନର୍ବାର ପ୍ରଧାନମନ୍ତ୍ରୀ ହେଲେ ଏବଂ ମନ୍ତ୍ରୀମଣ୍ଡଳ ଗଢ଼ିଲେ ସେତେବେଳେ ମହାରାଷ୍ଟ୍ରର ପୂର୍ବତନ ମୁଖ୍ୟମନ୍ତ୍ରୀ,ବିଶିଷ୍ଟ କଂଗ୍ରେସ ନେତା ଏ.ଆର୍. ଅନ୍ତୁଲେଙ୍କୁ ମୋ ପାଖକୁ ପଠାଇଲେ । ମୁଁ ଓ ମୋ ସ୍ତ୍ରୀ ବସି ଚା' ପିଉଛୁ । ହଠାତ୍ ଆନ୍ତୁଲେ ଆସି ପହଞ୍ଚଗଲେ । କହିଲେ, "ମୁଁ ଆପଣଙ୍କ ପାଖକୁ ପ୍ରଧାନମନ୍ତ୍ରୀଙ୍କ ପାଖରୁ ଗୋଟାଏ ପ୍ରସ୍ତାବ ନେଇକରି ଆସିଛି । ସେ ତ' ଆପଣଙ୍କର ଘନିଷ୍ଠ ବନ୍ଧୁ । ତେବେ ସେ ପ୍ରସ୍ତାବଟି ଆପଣଙ୍କୁ ସିଧା ଜଣାଇବାକୁ କୁଣ୍ଠା ବୋଧ କଲେ । ଏଣୁ ମୋ ମାଧମରେ ଆପଣଙ୍କୁ ଅନୁରୋଧ କରିଛନ୍ତି । ତାଙ୍କର ଇଚ୍ଛା, ଆପଣ ବୈଦେଶିକ ମନ୍ତ୍ରୀ ହୁଅନ୍ତୁ ।" ମୁଁ ଶୁଣି ହତବିମ୍ବ ହୋଇଗଲି । ମୁଁ ଆନ୍ତୁଲେଙ୍କୁ କହିଲି, "ଅନ୍ତୁଲେଜୀ, ଆପଣ ମଧ ମୋର ପରମ ବନ୍ଧୁ । ଚନ୍ଦ୍ରଶେଖରଜୀ କିପରି ଭାବିଲେ ଓ ଆପଣମଧ କିପରି ଭାବି ପାରିଲେ ଯେ ମୁଁ ଲୋକସଭାର ବାଚସ୍ପତି ପଦରୁ ସିଧା ଚନ୍ଦ୍ରଶେଖରଙ୍କ ମନ୍ତ୍ରୀମଣ୍ଡଳକୁ ଡେଇଁବି । ମୁଁ ସେ ଲୋକ ନୁହେଁ । ମୋ ସ୍ତ୍ରୀ ଡଃ. ସ୍ୱାଇଁ କହିଲେ, "ମନେରଖନ୍ତୁ, ଆମେ ଭୋକ ଉପାସରେ ମରି ଯାଇପାରୁ । କିନ୍ତୁ ନୀତିହୀନ କାର୍ଯ୍ୟ କରିପାରିବୁ ନାହିଁ ।" ତା'ପରେ ଆନ୍ତୁଲେ କ'ଣ ଭାବିଲେ କେଜାଣି ଉଠିପଡ଼ି ଆମ ଦୁହିଁଙ୍କ ପାଦ ଧୂଳି ନେଇ ମଥାରେ ମାରିଲେ ଓ ମୋତେ ଚାହିଁ କହିଲେ, "ଆପଣଙ୍କ ଠାରୁ ମୁଁ ଏୟା ଆଶା କରୁଥିଲି ।"

ଏହାପରେ ଗୋଟାଏ ଝଡ଼ ବର୍ଷଣ ରାତି । ସ୍ୱୟଂ ପ୍ରଧାନମନ୍ତ୍ରୀ ଚନ୍ଦ୍ରଶେଖର ଦୁଇ ଦୁଇ ଥର ମୋ ଘରକୁ ଆସିଛନ୍ତି ମୋତେ ପ୍ରବର୍ତ୍ତାଇବାକୁ । ଗୃହ ବିଭାଗ, ଅର୍ଥ ବିଭାଗ ଅଥବା ବୈଦେଶିକ ବିଭାଗରୁ ଯେ କୌଣସି ଗୋଟିଏ ନେଇ ତାଙ୍କ ମନ୍ତ୍ରୀମଣ୍ଡଳରେ ଯୋଗଦେବାକୁ । ସେ ଆସୁଛନ୍ତି ଶୁଣି ପ୍ରଥମ ଥର ଘରୁ ପଳେଇଗଲି । ୨ୟ ଥର ଘରେ ଥାଇ ନାହିଁ ବୋଲି ମନା କରିଦେଲି ।

ଚନ୍ଦ୍ରଶେଖରଙ୍କ ମନ୍ତ୍ରୀମଣ୍ଡଳରେ ଯେଉଁମାନେ ଦଳ ବଦଳ କରିଥିଲେ ମୁଁ ସେମାନଙ୍କୁ କାରଣ ଦର୍ଶାଅ ନୋଟିସ୍ ଦେଇଥିଲି । ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟସୀମା ଭିତରେ ଜବାବ ଦେବାପାଇଁ ମୁଁ ନିର୍ଦ୍ଦେଶ ଦେଇଥିଲି । ସୁବ୍ରମନ୍ୟମ୍ ସ୍ୱାମୀ ସେତେବେଳକୁ ଚନ୍ଦ୍ରଶେଖରଙ୍କ

ମନ୍ତ୍ରୀ ମଣ୍ଡଳରେ ଆଇନ ବିଭାଗର ମନ୍ତ୍ରୀ ଥାଆନ୍ତି । ଏହି ପ୍ରସଙ୍ଗନେଇ ସେ ମୋତେ ଦିନେ ଭେଟିବାକୁ ଆସିଲେ ବାଚସ୍ପତିଙ୍କ କୋଠରୀକୁ । ସେ କହିଲେ, "ଆପଣ ଜବାବ ଦେବା ପାଇଁ ଯେଉଁ ସୀମା ଧାର୍ଯ୍ୟ କରିଛନ୍ତି ସେ ସମୟସୀମା ବଢ଼ାନ୍ତୁ ।" ମୁଁ କହିଲି, "ଏ ସଂପର୍କରେ ପ୍ରଧାନମନ୍ତ୍ରୀଙ୍କ ସହିତ ମୋର ଆଲୋଚନା ହୋଇଥିଲା । ମୁଁ ଥରେ ସମୟ ବଢ଼େଇଛି । ଆଉ ବଢ଼େଇ ହେବ ନାହିଁ ।" ସେ ସଙ୍ଗେ ସଙ୍ଗେ ପାଟି ହୁଡ଼ି ରୀତିମତ ଧମକାଇବା ଆରମ୍ଭ କରିଦେଲେ, "ମୋ କଥା ନମାନିଲେ ପରିଣାମ ଭୟାବହ ହେବ । ଏପରିକି ଆପଣ ଗିରଫ ହେବେ ।" ମୁଁ ତାଙ୍କୁ ଦୃଢ଼ ସ୍ୱରରେ ଉତ୍ତର ଦେଲି, "ଆପଣଙ୍କ ସହିତ କଥାବାର୍ତ୍ତା ମୁଁ ଏଇଠି ବନ୍ଦ କରୁଛି । ଆପଣ ଯାଇ ପାରନ୍ତି ।" ତାଙ୍କ ସହିତ ପାର୍ଲାମେଣ୍ଟ ବିଭାଗ ମନ୍ତ୍ରୀ ସତ୍ୟପ୍ରକାଶ ମାଲବ୍ୟ ମଧ ଥିଲେ । ସେ ତାଙ୍କୁ ଟାଣି ନେଇଗଲେ ଓ ଏକଥା ସଙ୍ଗେସଙ୍ଗେ ପ୍ରଧାନମନ୍ତ୍ରୀଙ୍କୁ ଜଣାଇ ଦେଲେ । ଅତି ଜରୁରୀ ପରିସ୍ଥିତି ଉପୁଜିଲେ ରାଷ୍ଟ୍ରପତି ଅଥବା ପ୍ରଧାନମନ୍ତ୍ରୀ ଯେଉଁ ଫୋନ୍ ବ୍ୟବହାର କରିପାରିବେ ତାକୁ ରାକ୍ସ (RAX) କୁହାଯାଏ । ହଠାତ୍ ସେଇ ଟେଲିଫୋନ୍ ବାଜି ଉଠିଲା । ମୁଁ ଉଠାଇଲା ବେଳକୁ ସେପଟରୁ ପ୍ରଧାନମନ୍ତ୍ରୀଙ୍କ କଣ୍ଠସ୍ୱର ଶୁଣାଗଲା । ଚନ୍ଦ୍ରଶେଖର ମୁଁ ପ୍ରାୟ ସମାନ ବୟସର । ମୁଁ କହିଲି, "କହିଯେ ପ୍ରଧାନମନ୍ତ୍ରୀଜୀ ।" ସେ ଗମ୍ଭୀର ସ୍ୱରରେ କହିଲେ "ରବିରାୟଜୀ, ମୈଁ ମାଫି ଚାହତା ହୁଁ ।" ମୁଁ ତାଙ୍କୁ ପଚାରିଲି, ସେ ସୁବ୍ରମନ୍ୟମ୍ ସ୍ୱାମୀଙ୍କୁ କାହିଁକି ପଠାଇଥିଲେ ? ସେ ତା'ର ଉତ୍ତର ନ ଦେଇ ତୁହାକୁ ତୁହା ପ୍ରାୟ ଦଶଥର କ୍ଷମା ମାଗିଲେ ।

ଏହାପରେ ମୁଁ ସେ ଅଧ୍ୟାୟ ସେଇଠାରେ ବନ୍ଦ କରିବାକୁ ଚାହୁଁଥିଲି । ତା'ପରେ ମୁଁ କିଛି ଦିନ ପାଇଁ ମଶୋରୀ ଚାଲିଗଲି । ସେଠାରୁ ଫେରି ୨୦, ଆକବର ରୋଡ୍‌ରେ ଥିବା ମୋ ବାସଭବନରେ ପହଞ୍ଚିଛି କି ନ ପହଞ୍ଚିଛି Hindustan Times ର ଜଣେ ସାମ୍ବାଦିକ ଆସି ହାଜର୍ । ପଚାରିଲେ, "ସାର୍, ସୁବ୍ରମନ୍ୟମ୍ ସ୍ୱାମୀଙ୍କ ସହିତ ଆପଣଙ୍କର କ'ଣ କଥାବାର୍ତ୍ତା ହେଲା ?" ମୁଁ କହିଲି, "ଯାହା ହେଇଯାଇଛି, ହେଇଯାଇଛି । ମୁଁ ତାଙ୍କୁ କ୍ଷମା କରିଦେଇଛି । ସେ ଅଧ୍ୟାୟ ଏବେ ବନ୍ଦ ।" ସେ କହିଲେ, "ଆପଣ ଆପଣଙ୍କ ଉଦାରତା ବଳରେ ତାଙ୍କୁ କ୍ଷମା କରି ଦେଇ ପାରନ୍ତି । ମାତ୍ର ଆମେ ତ ସ୍ୱାଧୀନ ପ୍ରେସ୍ । ଆମେ ସେ ବିଷୟରେ ନୀରବ ରହିପାରିବୁ ନାହିଁ ।" ତା'ପରଦିନ Hindustan Times ର ପ୍ରଥମ ପୃଷ୍ଠାରେ ସୁବ୍ରମନ୍ୟମ୍ ସ୍ୱାମୀଙ୍କର ସେ ଘଟଣା ବଡ଼ବଡ଼ ଅକ୍ଷରରେ ବାହାରିଲା । ଏହାପରେ ବହୁ ସ୍ଥାନରୁ ଘନଘନ ଫୋନ୍ ଆସିଲା । ବିରୋଧୀ ଦଳ ନେତା ରାଜୀବ ଗାନ୍ଧୀ ତାଙ୍କ ଦଳର ବିଶିଷ୍ଟ ନେତା ପି. ଚିଦାମ୍ବରମ୍‌ଙ୍କୁ ମୋ ପାଖକୁ ପଠାଇଲେ । ସେ କହିଲେ, "ଆପଣ ଉଦାରତା ଦୃଷ୍ଟିରୁ ଏ ଘଟଣା ଆଉ ଆଗକୁ ବଢ଼ାଇବାକୁ ନ ଚାହୁଁ ଥାଇ ପାରନ୍ତି ମାତ୍ର ଆମେ ଯାକୁ ଶେଷ ପର୍ଯ୍ୟନ୍ତ ନେବୁ ।"

ସବୁ ଦଳ ମିଶିଗଲେ । ସେମାନେ ମୋ ରୁମ୍‌ରେ ଗୋଟିଏ ସର୍ବଦଳୀୟ ବୈଠକ ଡାକିଲେ । ରାଜୀବଗାନ୍ଧୀଙ୍କ କଂଗ୍ରେସ ସମର୍ଥନରେ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ହୋଇଥାଆନ୍ତି । ସେଠି ସର୍ବସମ୍ମତି କ୍ରମେ ସ୍ଥିର ହେଲା ଯେ ତା' ପରଦିନ ଖୋଲା

ପାର୍ଲାମେଣ୍ଟରେ ସୁବ୍ରମନ୍ୟମ୍ ସ୍ୱାମୀ ସଂସଦ ତଥା ରାଷ୍ଟ୍ର ସମ୍ମୁଖରେ ଲିଖିତ କ୍ଷମା ମାଗିବେ । ସେ ଯାହା ପଢ଼ିବେ ତାହା ସେଇଠି ପ୍ରସ୍ତୁତ ହେଲା । ସେ ଦିନ ପାର୍ଲାମେଣ୍ଟରେ ମୁଁ ବାଚସ୍ପତି ଆସନରେ ବସିବା ପରେ କେବଳ ଡାକିଲି "ଶ୍ରୀ ସୁବ୍ରମନ୍ୟମ୍ ସ୍ୱାମୀ!" ସେତିକିରେ ସେ ଠିଆ ହୋଇ କ୍ଷମା ମାଗିଲେ । "ତାଙ୍କୁ କ୍ଷମା କରାଗଲା" ବୋଲି ଘୋଷଣା କରି ସେଦିନ ପାଇଁ ଆଉ କିଛି କାର୍ଯ୍ୟକ୍ରମ ରଖିଲି ନାହିଁ । ସେଦିନ ଲୋକସଭା ମୁଲତବୀ ରହିଲା ।

୧୯୯୦ ସାଲର ଏକ ଘଟଣା । ମୁଁ ସେତେବେଳେକୁ ଲୋକସଭାର ବାଚସ୍ପତି ଥାଏ । ସେଥରକ ଲୋକସଭାକୁ ନିର୍ବାଚିତ ହୋଇ ଆସିଥିବା ୫୪୫ ଜଣ ସଭ୍ୟଙ୍କ ମଧ୍ୟରୁ ଜଣେ ମାତ୍ର ଦଳିତ ମହିଳା ନିର୍ବାଚିତ ହୋଇ ଆସିଥିଲେ । ତାଙ୍କ ନାମ ମାୟାବତୀ । ଦିନେ ସେ ମୋତେ ଭେଟିବାକୁ ମୋ ସ୍ପିକର ଚାମ୍ବରକୁ ଆସିଥିଲେ । ତାଙ୍କ ସହିତ ଆଲୋଚନା କଲାପରେ ମୁଁ ତାଙ୍କ ଜୀବନ ବୃତ୍ତାନ୍ତ ଜାଣିବାକୁ ପାଇଲି । ସେ ଉଚ୍ଚ ଶିକ୍ଷା ସମାପ୍ତ କଲାପରେ କେନ୍ଦ୍ର ସରକାରଙ୍କ ଅଧୀନରେ ଏକ ଚାକିରୀ ପାଇଥିଲେ ଏବଂ ପରମୁହୂର୍ତ୍ତରେ ସେ ରାଜନୀତିରେ ପ୍ରବେଶ କରିଥିଲେ । ସେଥରକ ସେ ମୁଲାୟମ ସିଂ ଯାଦବଙ୍କ ସାହାଯ୍ୟରେ ନିର୍ବାଚିତ ହୋଇ ଲୋକସଭାକୁ ଆସିଥିବା କଥା ମଧ୍ୟ ମୋତେ କହିଥିଲେ । ତେବେ ସେ ପ୍ରଥମଥର ପାଇଁ ନିର୍ବାଚିତ ହୋଇ ଲୋକସଭାକୁ ଆସିଥିବାରୁ ସେ ବିଷୟରେ କିଛି ଅଧିକ ଜ୍ଞାନ ଆହରଣ ପାଇଁ ମୋ ନିକଟକୁ ଆସିଥିଲେ । ମୁଁ ମଧ୍ୟ ଅନୁରୂପ ଭାବରେ ତାଙ୍କୁ ଲୋକସଭାର ନିୟମ କାନୁନ୍ ସଂପର୍କରେ ସୂଚାଇ ଦେଲି ଏବଂ ଜଣେ ଭଲ ଏମ୍.ପି. ହେବାକୁ ହେଲେ କ'ଣ ସବୁ ଦରକାର ସେ ବିଷୟରେ ମଧ୍ୟ ଆବଶ୍ୟକୀୟ ପରାମର୍ଶ ଦେଇଥିଲି । ମାୟାବତୀ ମୋତେ ଭେଟିବାର ୨/୪ ଦିନ ପରେ ହଠାତ୍ ରାଷ୍ଟ୍ରପତି ଭବନ ପକ୍ଷରୁ ଆୟୋଜିତ ଏକ ଭୋଜି ସଭାରେ ମୋର ମୁଲାୟମ ସିଂ ଯାଦବଙ୍କ ସହ ଦେଖାହେଲା । ସେଠାରେ ସେ ମୋତେ କହିଲେ "ରବି ରାୟଜୀ, ମୋର ଜଣେ ରାଜନୈତିକ ଶିଷ୍ୟା ମାୟାବତୀ ଏଥରକ ଆପଣଙ୍କ ଲୋକସଭାର ଜଣେ ମେମ୍ବର ।" ମୁଁ କହିଲି, "ମୁଁ ଗତ ୩/୪ ଦିନ ପୂର୍ବରୁ ତାଙ୍କ ସହିତ କଥାବାର୍ତ୍ତା ହୋଇଛି ଏବଂ ତାଙ୍କୁ ଯାହା ଆବଶ୍ୟକୀୟ ପରାମର୍ଶ ଦେବାକଥା ଦେଇସାରିଛି ।" ମୁଲାୟମ ସିଂ ଯାଦବଙ୍କ କଥାରୁ ମୁଁ ସ୍ପଷ୍ଟ ଅନୁମାନ କରିପାରୁଥିଲି ଯେ ସେ ମାୟାବତୀଙ୍କୁ ପାର୍ଲାମେଣ୍ଟରେ ଅଧିକ ସୁଯୋଗ ଦେବାକୁ ମୋତେ କହିବାକୁ ଚାହୁଁଥିଲେ । ସେ କଥା ମୋର ମନ ମଧ୍ୟରେ ଥାଏ । ଦିନେ ପାର୍ଲାମେଣ୍ଟ ଅଧିବେଶନ ସମୟରେ ଲକ୍ଷ୍ୟ କଲି ମାୟାବତୀ କିଛି କହିବା ପାଇଁ ମୋତେ ଅନୁମତି ମାଗୁଛନ୍ତି । ମୁଁ ତେଣୁ ଜଣେ ନୂଆ ମେମ୍ବର ହିସାବରେ କିଛି କହିବା ପାଇଁ ତାଙ୍କୁ ପ୍ରୋତ୍ସାହିତ କରିବା ସଂଗେ ସଂଗେ ଅନୁମତି ମଧ୍ୟ ପ୍ରଦାନ କରିଥିଲି । ପ୍ରଥମେ ପ୍ରଥମେ ସେ ଖୁବ୍ ଭଲ ଢଙ୍ଗରେ ତାଙ୍କର ବକ୍ତବ୍ୟ ଆରମ୍ଭ କଲେ ଏବଂ ଖୁବ୍ ସ୍ପଷ୍ଟ ଭାବରେ ମଧ୍ୟ କହୁଥାନ୍ତି । ସେଦିନ ସେ ଉତ୍ତର ପ୍ରଦେଶର କୌଣସି ଏକ ଦଳିତ ମହିଳାଙ୍କ ଉପରେ ହୋଇଥିବା ବଳାତ୍କାର ମାମଲା ଉପରେ ଖୁବ୍ ଭାବପ୍ରବଣ ହୋଇ କହିଚାଲିଥାନ୍ତି । କିଛି ସମୟ ପରେ ହଠାତ୍ ମୁଁ ଲକ୍ଷ୍ୟ କଲି ସେ ଖୁବ୍ ଉତ୍ତେଜିତ ହୋଇ ପଛ ସିଟ୍‌ରୁ ଆଗସିଟ୍ ଆଡ଼କୁ ଦୌଡ଼ି ଆସିଲେ । ମୋର ବାମପଟ ଆଗରେ ବସିଥାନ୍ତି ଶ୍ରୀଯୁକ୍ତ ଲାଲକୃଷ୍ଣ ଆଡ୍‌ଭାନୀ । ସେ ତାଙ୍କରି ଆଡ଼କୁ ଏକ ଆକ୍ରମଣାତ୍ମକ ଭଂଗୀରେ ଦୌଡ଼ିବାକୁ ଉଦ୍ୟମ କଲେ । ଏପରିକି ମୁଁ ତାଙ୍କୁ ଯେତେ ବସିବା ପାଇଁ ନିର୍ଦ୍ଦେଶ

ଦେଉଥିଲେ ମଧ୍ୟ ସେ ତାହା ମାନି ନଥିଲେ । ମୁଁ ତେଣୁ ସେହି ମୂହୂର୍ତ୍ତରେ ଖୁବ୍ ଏକ ଧର୍ମ ସଂକଟରେ ପଡ଼ିଯାଇଥିଲି । ପ୍ରଥମେ ଭାବିଲି ମାର୍ସାଲ୍‌ଙ୍କୁ ଡାକି ତାଙ୍କୁ ଗୃହରୁ ବାହାର କରିଦେବି । ପୁନର୍ବାର ଚିନ୍ତାକଲି ସେ ତ ସହଜେ ଜଣେ ମହିଳା, ପୁଣି ଦଳିତ । ତାଙ୍କୁ ଗୃହରୁ ବହିଷ୍କୃତ କଲେ ପରିସ୍ଥିତି ହୁଏତ ଅନ୍ୟପ୍ରକାର ହୋଇପାରେ, ଏହିପରି ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ିଥିବା ବେଳେ ହଠାତ୍ କମ୍ୟୁନିଷ୍ଟ ପାର୍ଟିର ଦୁଇଜଣ ମହିଳା ସଦସ୍ୟା ମାଳିନୀ ଭଟ୍ଟାଚାର୍ଯ୍ୟ ଓ ଗୀତା ମୁଖାର୍ଜୀ ଉଠିପଡ଼ି ମାୟାବତୀଙ୍କୁ ଧରି ନେଇଥିଲେ ଏବଂ ତାଙ୍କୁ ନେଇ ତାଙ୍କ ଜାଗାରେ ବସାଇ ଦେଇଥିଲେ । ତାପରେ ମୁଁ ତତ୍‌କ୍ଷଣାତ୍ ଗୃହକୁ ମୁଲତବୀ ରଖି ଚାଲିଆସିଲି । ମୋ ବାଟସ୍ଥିତି ଚାମ୍ବରରେ ମୁଁ ବିଷର୍ଣ୍ଣ ମନରେ ସେହିପରି ବସିଥାଏ । କିଛି ସମୟ ପରେ ହଠାତ୍ ମୋ ମାର୍ସାଲ ଆସି କହିଲେ ଯେ ମାୟାବତୀ ମୋତେ ଭେଟିବାକୁ ଚାହୁଁଛନ୍ତି । ମୋର ମାନସିକ ବ୍ୟସ୍ତତା ଦୃଷ୍ଟିରୁ ସେ ସମୟରେ ମୁଁ ତାଙ୍କୁ ଭେଟି ପାରିବି ନାହିଁ ବୋଲି ସ୍ପଷ୍ଟ ମନା କରିଦେଲି । କିନ୍ତୁ ମାର୍ସାଲ ପୁନର୍ବାର ତାଙ୍କ ନିକଟରୁ ଫେରି ଆସି ମୋତେ କହିଲେ, "ଆଜ୍ଞା ! ସେ କାନ୍ଦୁଛନ୍ତି ।" ମୁଁ କହିଲି, "କାନ୍ଦୁଛନ୍ତି ? ଆଚ୍ଛା ଠିକ୍ ଅଛି ତାଙ୍କୁ ଭିତରକୁ ଡାକ ।" ତାପରେ ସେ ମୋ ଚାମ୍ବର ଭିତରକୁ ଆସିଲେ ଏବଂ ସ୍ୱତଃପ୍ରବୃତ୍ତ ଭାବେ ତାଙ୍କର ସେ ସେଦିନର ସେଭଳି ଅଭଦ୍ର ବ୍ୟବହାର ପାଇଁ କ୍ଷମା ମାଗିଲେ । କର୍ତ୍ତବ୍ୟ ଦୃଷ୍ଟିରୁ ମୁଁ ତାଙ୍କୁ କ୍ଷମା କରିଦେଲି ସତ, କିନ୍ତୁ ଭବିଷ୍ୟତରେ ସେ ଯେପରି ଏ ଧରଣର ଭୁଲ ଆଉ ନ କରନ୍ତି ସେଥିପାଇଁ ତାଗିଦ୍ କରିଦେଲି । ସମୟ କ୍ରମେ ସେ ସକ୍ରିୟ ରାଜନୀତିରେ ଅଂଶ ଗ୍ରହଣ କଲେ । ମୁଲାୟମ ସିଂ ଯାଦବଙ୍କ ସହ ମିଶି ଉତ୍ତର ପ୍ରଦେଶର ଏମ୍.ଏଲ୍.ଏ ହେଲେ । କିନ୍ତୁ କୌଣସି ରାଜନୈତିକ କାରଣରୁ ମୁଲାୟମଙ୍କ ସହିତ ତାଙ୍କର ଘୋର ଶତ୍ରୁତା ସୃଷ୍ଟି ହେଲା । ଏପରିକି ଘଟଣା ହାତାହାତି ପର୍ଯ୍ୟନ୍ତ ଯାଇଥିବା କଥା ଖବରକାଗଜରେ ବାହାରିଥିଲା । ମାୟାବତୀ ପରେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଆମ୍ବେଦକରଙ୍କର ଏକ ଟାୱାର ନିର୍ମାଣ କରିବା ପାଇଁ ବ୍ୟାପକ ଅର୍ଥ ଆତ୍ମସାତ୍ କରିଛନ୍ତି ଏବଂ ନିଜ ଜନ୍ମଦିନ ପାଳନ ପାଇଁ ସରକାରୀ ତହବିଲ୍‌ରୁ କୋଟିକୋଟି ଟଙ୍କା ଖର୍ଚ୍ଚ କରିଛନ୍ତି ବୋଲି ତାଙ୍କ ବିରୁଦ୍ଧରେ ଅଭିଯୋଗ ବାହାରିଥିଲା । ପାର୍ଲାମେଣ୍ଟର ପ୍ରଥମ ଦିବସରେ ମାୟାବତୀଙ୍କ ଭବିଷ୍ୟତ ନେଇ ଯେଉଁ ସନ୍ଦେହ ମୋ ମନରେ ସୃଷ୍ଟି ହୋଇଥିଲା ତାହା ଯେ ପରମୂହୂର୍ତ୍ତରେ ନିରାଟ ସତ୍ୟରେ ପରିଣତ ହେଲା ଏହା ମୋତେ ଖୁବ୍ ବ୍ୟଥିତ କରିଥିଲା ।

ଐତିହାସିକ ସେଣ୍ଟ୍ରାଲ ହଲ୍‌ରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଭି. ପି. ସିଂହ ଯେଉଁ ଦିନ ନେତା ନିର୍ବାଚିତ ହେଲେ ସେଦିନର ଘଟଣା (ଯାହାକୁ ପ୍ରକାରାନ୍ତରେ ଏକ ନାଟକ ବୋଲାଯାଇପାରେ) ମୋର ଏବେ ମଧ୍ୟ ସ୍ମୃତିପଟରେ ଉଜ୍ଜୀବିତ ରହିଛି । ପୂର୍ବରୁ ପ୍ରଧାନମନ୍ତ୍ରୀ ପଦ ପାଇଁ ମୁଖ୍ୟତଃ ଯେଉଁ ତିନିଜଣଙ୍କ ନାମ ଆଲୋଚନା କରାଯାଇଥିଲା ସେମାନେ ହେଲେ ଚନ୍ଦ୍ରଶେଖର, ଦେବୀଲାଲ ଏବଂ ଭି. ପି. ସିଂହ । ତେବେ ଜନତା ଦଳର ନେତା ନିର୍ବାଚିତ କରିବା ପାଇଁ ଯେଉଁ ବୈଠକ ସେଦିନ ଅନୁଷ୍ଠିତ ହେଲା ସେଥିରେ ପ୍ରଥମେ ବଳ କଷାକଷି ଆରମ୍ଭ ହୋଇଗଲା । ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଟଣା ଓଟରା ଚାଲିଲା ବେଶ୍ କିଛି ସମୟ । ଶେଷରେ ସ୍ଥିର ହେଲା ଯେ ପ୍ରଥମେ ଦେବୀଲାଲ୍‌ଙ୍କୁ ଜନତା ଦଳର ନେତା

ରୂପେ ପ୍ରସ୍ତାବ କରାଯିବ ଏବଂ ତାହା ଅନ୍ୟ ଜଣେ ପ୍ରାର୍ଥୀଙ୍କ ଦ୍ୱାରା ସମର୍ଥିତ ହେଲା ପରେ, ଦେବୀ ଲାଲ ନିଜେ ଠିଆ ହୋଇ କହିବେ ଯେ ସେ ପ୍ରଧାନମନ୍ତ୍ରୀ ହେବାକୁ ଚାହାନ୍ତି ନାହିଁ । ତା'ପରେ ଭି.ପି.ସିଂହଙ୍କୁ ପ୍ରଧାନମନ୍ତ୍ରୀ କରାଯିବ । ଅବିକଳ ସେହି ରୀତିରେ ସଭାକାର୍ଯ୍ୟ ଆରମ୍ଭ ହେଲା । ନିୟମ ଅନୁସାରେ ଦେବୀଲାଲଙ୍କ ନାମ ପ୍ରସ୍ତାବିତ ହୋଇଯିବା ପରେ ସେ ଯେପରି ତୁରନ୍ତ ଇସ୍ତଫା ଦେଇ ଭି.ପି.ସିଂହଙ୍କୁ ପ୍ରଧାନମନ୍ତ୍ରୀ କରିବା ପାଇଁ କ୍ଷେତ୍ରପ୍ରସ୍ତୁତ କରିଥାଆନ୍ତେ, କୌଣସି କାରଣରୁ ସେ କାର୍ଯ୍ୟକ୍ରମ ତୁରନ୍ତ ହୋଇପାରିଲା ନାହିଁ । ଅପରପକ୍ଷରେ ସେହି ସାମାନ୍ୟ ବିଳମ୍ବ ପାଇଁ ସାରା ପୃଥିବୀରେ ବାର୍ତ୍ତା ପହଞ୍ଚିଯାଇଥିଲା ଯେ, ଦେବୀ ଲାଲ ପ୍ରଧାନମନ୍ତ୍ରୀ ହେଲେ । ଏହାପରେ ଅନେକ କଳି ଝଗଡ଼ା, ତର୍କବିତର୍କ ଚାଲିଲା, ଶେଷରେ ଦେବୀଲାଲ ଇସ୍ତଫା ଦେଲେ ଏବଂ ଭି.ପି.ସିଂହ ପ୍ରଧାନମନ୍ତ୍ରୀ ହେଲେ । ମୁଁ ସେଦିନ ଏଯେଉଁ ନାଟକ ଦେଖିଥିଲି, ତାର ଅନ୍ତିମ ଦୃଶ୍ୟ ବା ପରିଣତି କ'ଣ ହେବ ସେହି ମୁହୂର୍ତ୍ତରେ ମୁଁ କଳନା କରିନେଇଥିଲି । ସେଦିନର ସେ ଝଗଡ଼ା ଜନତା ଦଳ ପତନର କାରଣ ହୋଇଥିଲା । ମାତ୍ର ଏକ ବର୍ଷ ପରେ ଭି.ପି.ସିଂ ସରକାର ଭାଙ୍ଗି ଯାଇଥିଲା ଏବଂ ଚନ୍ଦ୍ରଶେଖର ପ୍ରଧାନମନ୍ତ୍ରୀ ହୋଇଥିଲେ ।

ଲୋକଙ୍କୁ ମନେରଖିବାରେ ମୋର ଗୋଟାଏ ବଡ଼ ଆନନ୍ଦ । ମୁଁ ଜଣେ କାହାକୁ କୌଣସି ଗୋଟାଏ ସ୍ଥାନରେ ଥରେ ଦେଖି ଥିବି ବହୁକାଳ ପରେ ମଧ ତାକୁ ଅପ୍ରତ୍ୟାଶିତ ଭାବେ ଅନ୍ୟ କୌଣସି ସ୍ଥାନରେ ଦେଖିଲେ ମଧ ଚିହ୍ନି ନେଇପାରେ । ସେ ଲୋକ ଆଶ୍ଚର୍ଯ୍ୟ ହୁଏ, ମୋତେ ବହୁତ ଆନନ୍ଦ ମିଳେ ଓ ଆମ ଭିତରେ ସୌହାର୍ଦ୍ଦ୍ୟ ମଧ ବଢ଼େ । ଏମିତି ଗୋଟାଏ ଘଟଣା ମନେ ପଡ଼ୁଛି । ୧୯୭୪ ସାଲରେ ରାଜ୍ୟସଭାକୁ ମୁଁ ନିର୍ବାଚିତ ହୋଇଥାଏ । ମୋ ସ୍ତ୍ରୀ ଡ: ସ୍ୱାଇଁ ବିଶ୍ୱ ସ୍ୱାସ୍ଥ୍ୟ ସଂଘର ଏକ ଫେଲୋସିପ୍ ପାଇ ତାଲିମ୍ ପାଇଁ ଆମେରିକା ଯାଇଥାଆନ୍ତି । ମୁଁ ରାଜ୍ୟସଭା ସଭ୍ୟ ହେବାର ମାସକ ପରେ ଆମେରିକା ଗଲି । ସେଠି ଜଣେ ପଶୁଡାକ୍ତର ଥାଆନ୍ତି ଡ: କୃଷ୍ଣମୋହନ ଦାସ । ସେତେବେଳକୁ ପ୍ରାୟ ୩୦/୪୦ ବର୍ଷ ହେବ ସେ ଆମେରିକାରେ ରହିଗଲେଣି । ସେ ଭାରି ସ୍ନେହୀ ମଣିଷଟିଏ । ସେ ଡାକ୍ତର ସ୍ୱାଇଁଙ୍କୁ କହିଥାଆନ୍ତି ଯେ ରବିବାବୁ ଆସିବାପରେ ଆମେ ଏଠା ଓଡିଆଙ୍କୁ ନେଇ ଗୋଟିଏ ବଣଭୋଜି କରିବା । ମୁଁ ସେଠି ପହଞ୍ଚିବାର ଦୁଇଦିନପରେ ସତକୁ ସତ ସେମାନେ ଗୋଟିଏ ବଣଭୋଜିର ଆୟୋଜନ କଲେ । ମୁଁ ଡାକ୍ତର ଦାସଙ୍କୁ କହିଲି, ଏଠି ଆସିଥିବା ଅନେକଙ୍କୁ ମୁଁ ନାଁ ଧରି ଡାକି ଦେଇପାରିବି । ଏତିକିବେଳେ ଜଣେ ଭଦ୍ରଲୋକ ଆସି ମୋତେ ନମସ୍କାର କଲେ । ସାଥିରେ ତାଙ୍କ ସ୍ତ୍ରୀ ଥାଆନ୍ତି । ମୁଁ ସାଙ୍ଗେ ସାଙ୍ଗେ ପଚାରିଲି "କିରେ ଦୁର୍ଯ୍ୟୋଧନ, କେମିତି ଅଛୁ ?" ତାଙ୍କ ସମେତ ସମସ୍ତେ ମୋତେ ଆବାକାବା ହୋଇ ଅନେଇଲେ । ଦୁର୍ଯ୍ୟୋଧନ ହେଉଛନ୍ତି ଓଡିଶା ବିଧାନସଭାର ପୂର୍ବତନ ଉପବାଚସ୍ପତି ସ୍ୱନାମଧନ୍ୟ ସ୍ୱର୍ଗତ ଯଦୁମଣି ମଙ୍ଗରାଜଙ୍କ ପୁତୁରା । ସେ ମୋ ତଳ ବ୍ୟାଚ୍‌ରେ ରେଭେନ୍ସାରେ ପାଠ ପଢୁଥିଲେ । ଏବେ ଆମେରିକାରେ ବୈଜ୍ଞାନିକ ଅଛନ୍ତି । ଏତେ ବର୍ଷର ବ୍ୟବଧାନ ପରେ ତାଙ୍କୁ ଚିହ୍ନି ପାରିଥିବାରୁ ସେ ଓ ତାଙ୍କ ସ୍ତ୍ରୀ ମଧ ଆଶ୍ଚର୍ଯ୍ୟ ହୋଇଗଲେ । ସେହିପରି ଦେଖିଲି

ଆଉ ଜଣେ ମହିଳା ତାଙ୍କ ସ୍ୱାମୀଙ୍କୁ କହୁଛନ୍ତି, ''ଇଏ ହେଉଛନ୍ତି ରବି ରାୟ''। ତାଙ୍କ ସ୍ୱାମୀ ତାଙ୍କୁ ପଚାରୁଛନ୍ତି ''ତୁ କେମିତି ଜାଣିଲୁ ?'' ତାଙ୍କ ଦୁହିଁଙ୍କ ଭିତରେ ହେଉଥିବା କଥୋପକଥନକୁ ମୁଁ ଶୁଣିବା ପରେ ଉକ୍ତ ଦମ୍ପତିଙ୍କୁ ମୋ ପାଖକୁ ଡାକିଲି । ତାଙ୍କ ସ୍ତ୍ରୀ ମୋତେ କହିଲେ ଯେ, ତାଙ୍କ ଘର ନରିଶୋ । ଆମ ଗାଁ ପାଖରେ । ମୁଁ ତାର ପରିବାରକୁ ଭଲରୂପେ ଜାଣିଛି ବୋଲି ତାଙ୍କୁ କହିଲି । ସେ ହିନ୍ଦ୍‌ସେବକ ସମାଜର ସଭ୍ୟ ସ୍ୱର୍ଗତ ଶ୍ୟାମସୁନ୍ଦର ମିଶ୍ରଙ୍କ ବୋହୂ ବୋଲି ମୋତେ କହିଲେ । ସୁଦୂର ଆମେରିକାରେ ମୋ ଗାଁ ନିକଟସ୍ଥ ଆଉ ଗୋଟିଏ ଗାଁର ଝିଅ ଓ ତାଙ୍କ ସ୍ୱାମୀଙ୍କୁ ଦେଖିବା ଯେ କି ପ୍ରକାର ଆନନ୍ଦ ଦିଏ ତାହା ସେଦିନ ଗଭୀରଭାବେ ଅନୁଭବ କରିପାରିଥିଲି ।

ଆମେରିକା ରହଣି ଭିତରେ ଘଟିଥିବା ଆଉ ଏକ ମଜା ଘଟଣା ମନେ ପଡୁଛି । ମୁଁ ଓ ମୋ ସ୍ତ୍ରୀ ଦିନେ ନ୍ୟୁୟର୍କ ସହର ବୁଲି ବାହାରିଲୁ । ସେଠି ବୁଲିବାର ସବୁଠାରୁ ଭଲ ମାଧ୍ୟମ ମେଟ୍ରୋ ଟ୍ରେନ୍ । ସେଠାକାର ମେଟ୍ରୋ ଖୁବ୍ ଶୃଙ୍ଖଳିତ ଓ ଅତ୍ୟାଧୁନିକ । ସେଥିରୁ ଚଟ୍‌ଚାଟ୍ ଓହ୍ଲେଇବାକୁ ପଡ଼େ । ଏମିତି ଗୋଟାଏ ସ୍ଥାନରେ ସରସ୍ୱତୀ ଓହ୍ଲେଇଗଲେ । ମୁଁ ଓହ୍ଲେଇ ପାରିଲି ନାହିଁ । ଟ୍ରେନ୍ ଛାଡ଼ିଦେଲା । ଅଗତ୍ୟା ମୁଁ ତା ପର ରହଣିରେ ଓହ୍ଲେଇଗଲି । ସରସ୍ୱତୀ ମୋତେ ନଦେଖି ଘରକୁ ଫେରିଗଲେ । ସେତେବେଳକୁ ସେ ଧରିନେଇ ଥାଆନ୍ତି ଯେ ମୁଁ ହଜିଯାଇଛି । ସେ ଯେଉଁଠାରେ ରହୁଥିଲେ ସେଠି ବହୁତ ଭାରତୀୟ ରହୁଥିଲେ । ବଙ୍ଗଳାର ବହୁତ ଡାକ୍ତର ମଧ୍ୟ ରହୁଥିଲେ । ତାଙ୍କ ବ୍ୟସ୍ତତା ଦେଖି ସମସ୍ତେ ବ୍ୟସ୍ତ । ସମସ୍ତେ ଚିନ୍ତିତ । ମୁଁ ଓହ୍ଲେଇଥାଏ ଗୋଟାଏ ନିକାଞ୍ଚନ ସ୍ଥାନରେ । ତେବେ ମୁଁ ଆଉ ଗୋଟାଏ ମେଟ୍ରୋ ଧରି ଠିକଣା ଜାଗାରେ ପହଞ୍ଚିଗଲି । ମୋର ଭାରତୀୟ ପାର୍ଲାମେଣ୍ଟ ଏମ୍.ପି ପରିଚୟପତ୍ର ଥାଏ । ବିଶେଷ କିଛି ଅସୁବିଧା ହେଲା ନାହିଁ । ଦୁଇ ଘଣ୍ଟା ଅଢ଼େଇ ଘଣ୍ଟା ପରେ ଆସି ପହଞ୍ଚିଗଲି । ମୁଁ ପହଞ୍ଚିଲାବେଳକୁ ସରସ୍ୱତୀ ଖୁବ୍ ମ୍ରିୟମାଣ ଓ ନର୍ଭସ ହୋଇପଡ଼ି ଥାଆନ୍ତି । ତାଙ୍କୁ ସମସ୍ତେ ବୁଝାଉ ଥାଆନ୍ତି । ମୋତେ ଦେଖୁ ଦେଖୁ ଦଉଡ଼ି ଆସି ମୋତେ ଆଲିଙ୍ଗନକରି ଯେପରି କାନ୍ଦିବାକୁ ଲାଗିଲେ ସେ ଦୃଶ୍ୟ ଜୀବନରେ ଭୁଲିବାର ନୁହେଁ । ସେତେବେଳେ ତାଙ୍କ ଚେହେରା ଓ ମାନସିକତା ଲକ୍ଷ୍ୟ କରି ମୋତେ ବୋଧ ହେଉଥିଲା ସତେ କି ସେ ପ୍ରେମ ଓ କରୁଣାର ଏକ ମୂର୍ତ୍ତିମନ୍ତ ପ୍ରତୀକ !

୧୯୯୦ରେ ମୁଁ ବାଚସ୍ପତି ରୂପେ ବଛା ହେବାପରେ ଇଂଲଣ୍ଡକୁ ଏକ ପ୍ରତିନିଧି ଦଳ ନେଇ ଯାଇଥିଲି । ସେଠି ମୁଁ ସ୍ୱନାମଧନ୍ୟ ସ୍ଥପତି, ଚିତ୍ରଶିଳ୍ପୀ ଓ ଲେଖକ ଶ୍ରୀ ପ୍ରଫୁଲ୍ଲ ମହାନ୍ତିଙ୍କ ଘରକୁ ଯାଇଥିଲି । ସେଠି ପ୍ରଫୁଲ୍ଲ ବାବୁ ଓ ତାଙ୍କର ବନ୍ଧୁ ଡେରିକ୍ ଯେପରି ଆତିଥ୍ୟ ପ୍ରଦର୍ଶନ କଲେ ତାହା ଭୁଲିବାର ନୁହେଁ । ପ୍ରଫୁଲ୍ଲ ବାବୁ ସେଠି ଯେଉଁ ଘର ତିଆରି କରିଛନ୍ତି ତାର ଡିଜାଇନ୍ ଓ ସାଜସଜ୍ଜା ଏପରି ଯେ ପଶିଗଲେ ଲାଗିବ ସତେକି ଜଣେ ଜଗନ୍ନାଥ ମନ୍ଦିରରେ ପହଞ୍ଚି ଯାଇଛି । ପ୍ରଫୁଲ୍ଲ ବାବୁ ପ୍ରତିବର୍ଷ ପ୍ରାୟ ମାସକ ପାଇଁ ଓଡ଼ିଶା ଆସିଥାଆନ୍ତି । ସେ ଆମ ପରିବାରର ଜଣେ ସଦସ୍ୟ ହୋଇ ଯାଇଛନ୍ତି ।

## ସାୟାହ୍ନ

ମୁଁ ବାଚସ୍ପତି ପଦରୁ ଯିବା ପରେ ମଧ ୧୯୯୧ ରୁ ୧୯୯୬ ପର୍ଯ୍ୟନ୍ତ ଲୋକସଭାର ସଭ୍ୟ ଥିଲି । ମୋ କାର୍ଯ୍ୟକାଳ ପୁରି ଆସୁଥାଏ । ମୁଁ ମନେମନେ ସ୍ଥିର କରିନେଲି ଯେ ଆଉ ନିର୍ବାଚନ ଲଢ଼ିବି ନାହିଁ । ମୋର ଏ ସଂକଳ୍ପ ସଂପର୍କରେ ମୁଁ ଦିଲ୍ଲୀରେ ଏକ ବିବୃତି ଦେଇଥିଲି । ସେ ବିବୃତି ଯେଉଁ ଦିନ ଖବର କାଗଜରେ ବାହାରିଲା ଜର୍ଜ ଫର୍ଣ୍ଣାଡ଼ିସ୍ ନିଜେ କାର୍ ଡ୍ରାଇଭ୍ କରି ଆସି ମୋ ୪, ଜନପଥ ବାସଭବନରେ ହାଜର । ମୁଁ ତାଙ୍କୁ ଦେଖି ଖୁବ୍ ରାଗି ଗଲିଣି । ମୁଁ ପଚାରିଲି, "କୁଆଡ଼େ ଆସିଲ ?" ସେ କହିଲେ "ଆପଣ ନିର୍ବାଚନ ଆଉ ଲଢ଼ିବେ ନାହିଁ ବୋଲି ଯେଉଁ ଘୋଷଣା କରିଛନ୍ତି ସେଇ ସଂପର୍କରେ ବୁଝାଇବା ପାଇଁ ଆସିଲି ।" ଜର୍ଜ ମୋର ଘନିଷ୍ଠ ବ୍ୟକ୍ତିଗତ ବନ୍ଧୁ । ମୁଁ ତାଙ୍କୁ କହିଲି, "ଜର୍ଜ, କାନ ଖୋଲି ଶୁଣି ନିଅ । ତମେ ବରଂ ମୋ ପନ୍ଥା ଅନୁସରଣ କରି ଆଉ ନିର୍ବାଚନ ଲଢ଼ିବାରୁ କ୍ଷାନ୍ତ ହୁଅ । ତାହେଲେ ଅନ୍ୟ କାହାର ନହେଉ ପଛେ, ନିଜର ଅଶେଷ ଉପକାର କରିବ ।" ଏହାପରେ ମୁଁ ନୀରବ ରହିଲି । ସେ ମଧ ଆଉ କିଛି ନ କହି ଚାଲିଗଲେ । ତେବେ ତାଙ୍କୁ ସେତେବେଳେ ଯେଉଁ ସତର୍କବାଣୀ ଶୁଣାଇଥିଲି ତା ସତ୍ୟରେ ପରିଣତ ହେବ ମୁଁ ନିଜେ ମଧ କଳ୍ପନା କରିନଥିଲି । ସେ ମୋ କଥା ନମାନି ନିର୍ବାଚନ ଲଢ଼ିଲେ । ବାଜପେୟୀଙ୍କ ମନ୍ତ୍ରୀମଣ୍ଡଳରେ ପ୍ରତିରକ୍ଷା ମନ୍ତ୍ରୀ ହେଲେ । ତେହେଲ୍‌କା ଘଟଣା ତ ସମସ୍ତଙ୍କୁ ଜଣା । ତାଙ୍କ ଘରେ ତାଙ୍କର ସମତା ଦଳର ଜଣେ ନାରୀ ସହକର୍ମୀ ଯୁଦ୍ଧ ସରଞ୍ଜାମ ବ୍ୟବସାୟୀଙ୍କ ଠାରୁ ଲାଞ୍ଚ ଗ୍ରହଣ କରୁଥିବା ଦୃଶ୍ୟ ତ ଦୁନିଆଯାକର ଲୋକ ଟି.ଭିରେ ଦେଖିଲେ । ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଲା । ଦେଶବ୍ୟାପୀ ବି.ଜେ.ପି. ସରକାରର ବହୁ ଅପକର୍ମ ପରେ ମଧ ସେ ଯେପରି ଏବେବି ସେମାନଙ୍କୁ ସମର୍ଥନ ଦେଇ ଚାଲିଛନ୍ତି ସେଥିପାଇଁ ତାଙ୍କ ଦୁର୍ନାମ ପସରା ଅଧିକରୁ ଅଧିକ ଭାରାକ୍ରାନ୍ତ ହେବାରେ ଲାଗିଛି । ବୋଧହୁଏ ଯଦି ସେ ସେତେବେଳେ ମୋ କଥା ମାନିଥାଆନ୍ତେ ତେବେ ନିଜର ପୂର୍ବର ସମାଜବାଦୀ ଭାବମୂର୍ତ୍ତିଟିକୁ ରକ୍ଷା କରିପାରିଥାଆନ୍ତେ । ସେ ଘଟଣା ପରେ ମୋର ଆଉ ତାଙ୍କ ସହିତ ଦେଖା ହୋଇ ନାହିଁ ।

ନିର୍ବାଚନ ଲଢ଼ିବି ନାହିଁ ବୋଲି ନିଷ୍ପତ୍ତି ନେବା ପରେ "ଲୋକଶକ୍ତି ଅଭିଯାନ ମଞ୍ଚ"ଗଢ଼ାଗଲା । ଦେଶରେ ଉଚ୍ଚସ୍ତରୀୟ ଭ୍ରଷ୍ଟାଚାର, ଭୋଗବାଦ ଏବଂ କେନ୍ଦ୍ରୀକରଣ - ଏ ତିନୋଟିଯାକ ରାକ୍ଷସଙ୍କ ବିରୁଦ୍ଧରେ ଯୁଗପତ୍ ସଂଗ୍ରାମ କରିବା ଏ ମଞ୍ଚର ଆଭିମୁଖ୍ୟ ଥିଲା । ଦୁର୍ନୀତିଗ୍ରସ୍ତ ବ୍ୟକ୍ତି ଏବଂ ଦଳମାନଙ୍କ ଠାରୁ ଏ ମଞ୍ଚକୁ ଦୂରରେ ରଖି ଯେଉଁମାନେ ଜୟପ୍ରକାଶଙ୍କ 'ସଂପୂର୍ଣ୍ଣ କ୍ରାନ୍ତି' ଆନ୍ଦୋଳନରେ ଲଢ଼େଇ କରିଥିଲେ ସେହିଭଳି କେତେକ ଦେଶପ୍ରେମୀ ଯୁବକ ଯୁବତୀଙ୍କୁ ଏ ଆନ୍ଦୋଳନରେ ନେତୃତ୍ୱ ନେବା ପାଇଁ ଆହ୍ୱାନ କଲି । ଦିଲ୍ଲୀରେ ଏହାର ପ୍ରଥମ ସମ୍ମିଳନୀ ଅନୁଷ୍ଠିତ ହେଲା । ମୁଁ ଏହାକୁ ଉଦ୍‌ଘାଟନ କଲି । ସେ ସମ୍ମିଳନୀରେ ସୁପ୍ରିମ୍‌କୋର୍ଟର ପୂର୍ବତନ ଜଜ୍ ଓ ପ୍ରେସ୍ କାଉନ୍‌ସିଲର ପୂର୍ବତନ ଚେୟାରମ୍ୟାନ୍ ବିଚାରପତି ଶ୍ରୀ ସାୱନ୍ତ, କୁଲଦୀପ ନାୟାର ଏବଂ ପ୍ରଭାସ ଯୋଶୀ ଇତ୍ୟାଦି ଯୋଗ

ଦେଇଥିଲେ । ଜବାହର ଲାଲ ନେହେରୁ ବିଶ୍ୱବିଦ୍ୟାଳୟର ସମାଜବିଜ୍ଞାନ ଅଧ୍ୟାପକ ଡଃ. ଆନନ୍ଦ କୁମାର ଏହାର ରାଷ୍ଟ୍ରୀୟ ସଂଯୋଜକ ରହିଲେ । ମୁଁ ଏହାର କୌଣସି କର୍ମକର୍ତ୍ତା ରହିବି ନାହିଁ ବୋଲି ମୂଳରୁ ସ୍ପଷ୍ଟ କରି ଦେଇଥିଲି । ତେବେ ମୁଁ, ସାଓ୍ୱନ୍ତ, ପ୍ରଭାତ ଯୋଷୀ ଓ କୁଲଦୀପ୍ ନାୟାର୍ ଏହାର ପୃଷ୍ଠପୋଷକ ସଭ୍ୟ ରହିଲୁ । ପୂର୍ବୋକ୍ତ ତିନିରାକ୍ଷସଙ୍କ ବିରୁଦ୍ଧରେ ସଂଗ୍ରାମ ପାଇଁ ସିଦ୍ଧାନ୍ତ ନେଲୁ ।

ଦିନେ ବାଜପେୟୀ ସରକାରର ଶିକ୍ଷାମନ୍ତ୍ରୀ ମୁରଲୀ ମନୋହର ଯୋଶୀ ମୋତେ ଟେଲିଫୋନ୍ କରି କହିଲେ, "ଆମକୁ ବଞ୍ଚାନ୍ତୁ ।" ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, "କ'ଣ କଥା!" ସେ କହିଲେ ଏକଦା ଓଡ଼ିଶାର ବିଶ୍ୱନାଥ ଦାସ ଆମ ରାଜ୍ୟ  ଉତ୍ତର ପ୍ରଦେଶ କୁ ଏକ ସଂକଟଜନକ ପରିସ୍ଥିତି ବେଳେ ସେଠା ରାଜ୍ୟପାଳ ହୋଇ ସୁଧାରି ନେଇଥିଲେ । ଉତ୍ତରପ୍ରଦେଶ ତାଙ୍କ ଦ୍ୱାରା ବହୁତ ଉପକୃତ ହୋଇଥିଲା ।" ସେତେବେଳେ ଉତ୍ତରପ୍ରଦେଶ ରାଜ୍ୟପାଳ ପଦ ଖାଲିଥିଲା । ଯୋଷୀ ମୋତେ ସେଠି ରାଜ୍ୟପାଳ ହେବା ପାଇଁ ପରୋକ୍ଷ ଭାବେ ବୁଲେଇ ବୁଲେଇ ପ୍ରସ୍ତାବ ଦେଉଥିଲେ । ମୁଁ କହିଲି, "ମୁରଲୀ ଜୀ! ତମେ ମୋତେ ଗଭର୍ଣ୍ଣର କରାଇବ ?" ଏତିକି କହି ମୁଁ ଫୋନ୍ ଥୋଇ ଦେଲି । ତାପରେ ପୁଣି ଥରେ ଫୋନ୍ ବାଜି ଉଠିଲା । ମୁଁ କହିଲି, "ମୋର ରାଜ୍ୟପାଳ ହେବା ପ୍ରଶ୍ନ ଉଠୁନାହିଁ ।" ତା'ପରେ ମୁଲାୟମ ସିଂ ଯାଦବ ଥରେ ମୋ ପାଖକୁ ଲୋକ ପଠାଇଲେ । ଜଣେ ସମାଜବାଦୀ ହିସାବରେ ମୁଁ ତାଙ୍କୁ ତାଙ୍କ ଯୁବାବସ୍ଥାରୁ ଜାଣେ । ସେ ମଧ୍ୟ ଚାହୁଁ ଥାଆନ୍ତି ଯେ ମୁଁ ଉତ୍ତରପ୍ରଦେଶର ରାଜ୍ୟପାଳ ହୁଏ । କିନ୍ତୁ ନିଜେ ସେ ପ୍ରସ୍ତାବ ଦେବା ପାଇଁ ତାଙ୍କର ସାହସ କୁଳୁନଥାଏ । ଏଣୁ ସେ କେ.ସି. ତ୍ୟାଗୀଙ୍କୁ ମୋ ପାଖକୁ ପଠାଇ ଥାଆନ୍ତି । ମୁଁ ତାଙ୍କୁ ମଧ୍ୟ ସେହିପରି ବିରକ୍ତ ହୋଇ କହିଲି, "ଆଚ୍ଛା, ତେବେ ମୁଲାୟମ ମଧ୍ୟ ଚାହାନ୍ତି ମୁଁ ରାଜ୍ୟପାଳ ହୁଏ ।" ସେଇଠୁ ସେ ନିରାଶ ହୋଇ ଫେରିଲେ ।

ମୁଁ ଲୋକଶକ୍ତି ଅଭିଯାନ କାମରେ ମିରଟ୍ ବିଶ୍ୱବିଦ୍ୟାଳୟ ଯାଇଥାଏ । ସେଠି ମୋତେ ସାମ୍ବାଦିକମାନେ ପଚାରୁଥାଆନ୍ତି, "ଆପଣ କେବେ ଲକ୍ଷ୍ନୌ ଆସୁଛନ୍ତି ?" ଅର୍ଥାତ୍, ଆପଣ କେବେ ଉତ୍ତରପ୍ରଦେଶ ରାଜ୍ୟପାଳ ପଦ ଗ୍ରହଣ କରୁଛନ୍ତି ? ମୁଁ କହିଲି, "ନାହିଁ ତ, ମୋର ରାଜ୍ୟପାଳ ହେବାର ପ୍ରଶ୍ନ ଉଠୁନାହିଁ ।" ସେଇଠୁ ମୁଁ ଲୋକଶକ୍ତି ଅଭିଯାନ କାମରେ କଲିକତା ଯାଇଛି । ସେଠି ଦେଖେତ "ହିନ୍ଦୁସ୍ଥାନ ଟାଇମ୍‌ସ"ରେ ଗୋଟାଏ ସମ୍ବାଦ ବାହାରିଛି - "ରବିରାୟ ଆନ୍ଧ୍ରପ୍ରଦେଶର ଗଭର୍ଣ୍ଣର ହୋଇ ଯାଉଛନ୍ତି ।" ମୋତେ ଆଶ୍ଚର୍ଯ୍ୟ ଯେତିକି ଲାଗିଲା, ବିରକ୍ତ ମଧ୍ୟ ସେତିକି ଲାଗିଲା । ପରେ ଜାଣିଲି ଯେ ସେ ସମ୍ବାଦଟା ଜନତା ଦଳ ତରଫରୁ ବାହାରିଛି । ସେମିତି ମନଗଢ଼ା ସମ୍ବାଦ ବେଳେବେଳେ ପ୍ରକାଶ କରାଯାଇଥାଏ । ଆଉଥରେ 'ହିନ୍ଦୁସ୍ଥାନ ଟାଇମ୍‌ସ'ରେ ବାହାରିଲା ଯେ ରବିରାୟ ଭାରତର ଉପରାଷ୍ଟ୍ରପତି ହେଉଛନ୍ତି । ସେତେବେଳେ ଗୁଜରାଲ୍ ପ୍ରଧାନମନ୍ତ୍ରୀ ଥାଆନ୍ତି । ସେତେବେଳେ କୃଷ୍ଣକାନ୍ତ ଉପରାଷ୍ଟ୍ରପତି ହୋଇଗଲେ । ଏଥିନେଇ ଶରଦ ଯାଦବ ଚନ୍ଦ୍ରବାବୁ ନାଇଡୁଙ୍କ ଉପରେ ଖପା ହୋଇଯାଇଥାଆନ୍ତି । କାରଣ ସେମାନେ କୃଷ୍ଣକାନ୍ତଙ୍କୁ ଉପରାଷ୍ଟ୍ରପତି କରିବା ଚାହୁଁ

ନଥାଆନ୍ତି । ସମ୍ଭବତଃ, ସେମାନଙ୍କ ଭିତରେ ମୋତେ ଉପରାଷ୍ଟ୍ରପତି କରିବା ନେଇ କଥାବାର୍ତ୍ତା ହୋଇଥିଲା । ମୁଁ ଏ ସଂପର୍କରେ ବିନ୍ଦୁ ବିସର୍ଗ ଜାଣିନଥିଲି । ମୁଁ ଏସବୁ ପାଇଁ କାହାରିକୁ କହିବା ଲୋକ ନୁହେଁ । ଏ ଆଇଡ଼ିଆ କୁଆଡ଼େ ଶରଦ ଯାଦବଙ୍କ ମୁଣ୍ଡରୁ ବାହାରିଥିଲା । ତେବେ ଚନ୍ଦ୍ରବାବୁ ନାଇଡୁଙ୍କ ଶେଷ ମୁହୂର୍ତ୍ତରେ ଅସହଯୋଗ ହେତୁ କୁଆଡ଼େ ତାଙ୍କର ଏ ପ୍ରଚେଷ୍ଟା ପଣ୍ଡ ହୋଇଗଲା । ଏଣୁ ଶରଦ ଯାଦବ ଚନ୍ଦ୍ରବାବୁ ନାଇଡୁ ଉପରେ ବହୁତ ଖପା ହୋଇଥାଆନ୍ତି । ଯାଦବଙ୍କ ଡରରେ ଚନ୍ଦ୍ରବାବୁ ନାଇଡୁ ମୋ ସହିତ ତୁରନ୍ତ ସଂପର୍କ ରକ୍ଷାକରିବାକୁ ଚେଷ୍ଟା କରିଛନ୍ତି । ହଠାତ୍ ମୋ ସନ୍ଧାନ ନ ପାଇ ଓଡ଼ିଶା ଭବନ ଫୋନ୍ କରି ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଠାରୁ ମୋ ଠିକଣା ବୁଝିବାକୁ ଚେଷ୍ଟା କରିଛନ୍ତି । ସେ ମୋ ପୁତୁରାକୁ ଫୋନ୍ କରିଛନ୍ତି ଓ ମୋ ପୁତୁରା ମୋତେ ଭୋରରୁ ଫୋନ କରିଛନ୍ତି । ଏହା ପୂର୍ବରୁ ମୋର କେବେ ଚନ୍ଦ୍ରବାବୁ ନାଇଡୁଙ୍କ ସହିତ ଟେଲିଫୋନ୍ କଥାବାର୍ତ୍ତା ହୋଇ ନଥିଲା । ସେଇଟା ଥିଲା ମୋର ତାଙ୍କ ସହିତ ପ୍ରଥମ କଥାବାର୍ତ୍ତା । ଇଂରାଜୀରେ କହିଲେ ଯେ ମୁଁ ଉପରାଷ୍ଟ୍ରପତି ନ ହୋଇ ପାରିବା ପଛରେ ତାଙ୍କ ଭୂମିକା ହେତୁ ଯାଦବ ତାଙ୍କ ଉପରେ ବହୁତ ଖପ୍ପା ହୋଇଛନ୍ତି । ତେଣୁ ସେ ମୋତେ ପ୍ରସ୍ତାବ ଦେଉଥାଆନ୍ତି କି ଆନ୍ଧ୍ର ରାଜ୍ୟପାଳ ହେବାରେ ମୋର ଆପତ୍ତି ଅଛି କି ? ମୁଁ ତାଙ୍କୁ କହିଦେଲି ଯେ ରାଜ୍ୟପାଳ ହେବା ମୋ ଧାତୁରେ ନାହିଁ । ସେ ଅଧ୍ୟାୟ ସେତିକିରେ ସରିଗଲା । ସେ ବୋଧେ ଧରିନେଇଥିଲେ ଯେ ମୁଁ ତାଙ୍କ ପ୍ରସ୍ତାବରେ ରାଜି ହୋଇଯିବି । ଏଣୁ ମୁଁ ଯେ ଆନ୍ଧ୍ରର ରାଜ୍ୟପାଳ ହେଉଛି – ଏ ସଂବାଦ ସମ୍ବାଦପତ୍ର ମାନଙ୍କରେ ପ୍ରକାଶିତ ହୋଇଗଲା ।

ସେହିପରି ୧୯୬୮-୬୯ ସାଲରେ ପାର୍ଲାମେଣ୍ଟରେ କୃତିତ୍ୱ ଅର୍ଜନ କରିଥିବା ସାଂସଦମାନଙ୍କ ସଂପର୍କରେ ସାମ୍ବାଦିକମାନେ ବିଭିନ୍ନ ପ୍ରକାର କଥା ବାହାର କରୁଥାଆନ୍ତି । ଯେଉଁମାନେ ପ୍ରଧାନମନ୍ତ୍ରୀ ହେବାର ଯୋଗ୍ୟ ସେମାନଙ୍କର ଏକ ତାଲିକା ସେତେବେଳେ ପ୍ରଗତିଶୀଳ ହିନ୍ଦି ପତ୍ରିକା 'ଦିନ୍‌ମାନ୍' ବାହାର କରିଥାଏ । ସେଥିରେ ମୋ ନାଁ, ମଧୁଲିମାୟେ ଓ ଅଟଳ ବିହାରୀ ବାଜପେୟୀଙ୍କ ନାଁ ସ୍ଥାନ ପାଇଥିଲା ଓ ଏହା ସେତେବେଳେ ବହୁତ ଚର୍ଚ୍ଚାର ବିଷୟ ହୋଇଥିଲା ।

ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ ବାଙ୍ଗାଲୋରରେ ଥିବା ବିଖ୍ୟାତ ମାନସିକ ଚିକିତ୍ସା ସଂସ୍ଥା NIMHANS ର ରଜତ ଜୟନ୍ତୀ ଉତ୍ସବର ମୁଖ୍ୟ ଅତିଥି ହୋଇ ଯାଇଥାଏ । ସମଗ୍ର ଏସିଆରେ ଏ ସଂସ୍ଥାର ସୁନାମ ରହିଛି । ସେଠି ମୋତେ ଦିଆଯାଇଥିବା ରାତ୍ରୀ ଭୋଜନ ଅବସରରେ ମୁଁ ଉପସ୍ଥିତ ବିଶେଷଜ୍ଞ ଅଧ୍ୟାପକ, ଅଧ୍ୟାପିକାମାନଙ୍କୁ କହିଲି: "ମୋର ଗୋଟାଏ ସମସ୍ୟା ଅଛି ।" ସମସ୍ତେ ଉତ୍କଣ୍ଠିତ ହୋଇ ମୋ ଆଡ଼େ ଚାହିଁଲେ । ମୁଁ କହିଲି, "ସାଧାରଣ ଜୀବନରେ ମୁଁ ବିଭିନ୍ନ ପ୍ରକାରର ମଣିଷଙ୍କ ସଂସ୍ପର୍ଶରେ ଆସିଛି । ମୋତେ କେହି ଭେଟିବାକୁ ଆସିଲେ ମୋର ପ୍ରଥମ ଲକ୍ଷ୍ୟ ହୋଇପଡ଼େ କିପରି ତାକୁ ଯଥେଷ୍ଟ ଆନନ୍ଦ ଦେଇପାରିବି । ମୁଁ ତ ତାକୁ ଧନ ଆକାରରେ କିଛି ଦେଇପାରିବି ନାହିଁ । ତେଣୁ ଅନ୍ତତଃ ଯେତିକି ସମୟ ସେ ମୋ ସହିତ କଟାଇବ ସେତକ ସମୟ ତା'ର କିପରି ଏକ ଅନ୍ତରଙ୍ଗ ମୁହୂର୍ତ୍ତ ହେଉ ତାହା ଦେଖିବା ଦିଗରେ ମୁଁ ଯତ୍ନବାନ୍ ହୋଇଥାଏ ।

ପୁଣି କହିଲି, "ମଣିଷର ଦୁଇଟି ବଡ଼ ଶତ୍ରୁ ରହିଛି । ଗୋଟିଏ ହେଲା ରାତାରାତି କୋଟିପତି ହୋଇଯିବାର ଆକାଂକ୍ଷା । ଆଉ ଗୋଟାଏ ହେଲା ହୀନମନ୍ୟତା । ଏ ଉଭୟ ପ୍ରକାର ମାନସିକତା ଠାରୁ ମଣିଷ ଦୂରେଇ ରହିବା ଉଚିତ୍ ।"

ମୋତେ ଯିଏ ଭେଟିବାକୁ ଆସେ ଯଦି ତା' ସହିତ ମୋର ଆଗରୁ କେବେ ସାକ୍ଷାତ ହୋଇଥାଏ ତେବେ ତାକୁ ଖୁସି କରିବାର ପ୍ରଥମ ପଦକ୍ଷେପ ସ୍ୱରୂପ ମୁଁ ଗୋଟିଏ ଉପାୟ ଅବଲମ୍ବନ କରି ତାକୁ ପ୍ରଥମେ ଚମତ୍କୃତ କରିଦିଏ । ମୁଁ ଯାହାକୁ ଥରେ କେଉଁଠି ଭେଟିଥାଏ ତା'ର ନାଁ, ଠିକଣା, ବୃତ୍ତି ସବୁ ମନେ ରଖିଥାଏ । ବହୁ ବର୍ଷ ପରେ ଦେଖାହେଲେ ମଧ୍ୟ ମୁଁ ତାକୁ ଦେଖୁ ଦେଖୁ ସେ ଗୁଡ଼ାକ ମୋର ଚଟ୍ କରି ମନେ ପଡ଼ିଯାଏ । ଏତେ କାଳ ପରେ ପ୍ରଥମ ଦେଖାରେ ମୁଁ ତା' ନାଁ ଧରି ଡାକିଲେ ଓ ତା ସଂପର୍କରେ ଦିପଦ କହିଦେଇ ତା'ର କୁଶଳ-ମଙ୍ଗଳ ପଚାରିଲେ ସେ ଯୁଗପତ୍ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହୋଇଯାଏ । ଏହା ମୁଁ କିପରି ସାଧ କରିଛି ଦେଖାଇବା ପାଇଁ ମୁଁ କଟକ ରେଳ ଷ୍ଟେସନ ଯାଇ ମୋ ବଂଧୁମାନଙ୍କ ପାଖରେ ପ୍ରମାଣ କରିଛି । ଅନେକ ଆପାତତଃ ଅପରିଚିତ ବ୍ୟକ୍ତିଙ୍କୁ ଦେଖି ସେ ଅମୁକ ଲୋକ, କିମ୍ବା ଅମୁକ ଲୋକର ପୁଅ କି ନାତି, ଅମୁକ ଗାଁର ଲୋକ ଇତ୍ୟାଦି କହି ଦେଇ ପାରିଛି । ଧର, ମୋତେ କେହି ଜଣେ ଆସି ପଚାରିଲେ "ରବି ରାୟଜୀ, କ'ଣ ମୋତେ ଚିହ୍ନିପାରୁଛନ୍ତି ?" ମୁଁ ସଙ୍ଗେ ସଙ୍ଗେ ମୋ ଅନ୍ତରାତ୍ମାର ଅବଚେତନ ସ୍ତରକୁ ଓହ୍ଲାଇଯାଏ ଓ ସେଠି ଘଣ୍ଟି ବଜାଏ । ପଚାରେ, ଏ ଲୋକଟିକୁ କେଉଁଠି ଦେଖିଛି ? ସଙ୍ଗେସଙ୍ଗେ ତା' ମୁହଁଟି କୌଣସି ଏକ ଘଟଣା ବା ସ୍ଥାନ ସହିତ ଯୋଡ଼ି ହୋଇଯାଏ ଓ ଚଟ୍‌କରି ତା ନାଁ ଅଥବା ତା ସଂପର୍କୀୟ କିଛି ବିବରଣୀ ମୋର ମନେପଡ଼ିଯାଏ । ମନସ୍ତତ୍ତ୍ୱ ଶାସ୍ତ୍ରରେ ଥିବା concept of associated memory ବିଷୟରେ ମୁଁ କିଛି ପୂର୍ବରୁ ଜାଣିନଥିଲି । ଗୋଟିଏ ନାମ ବା ସ୍ଥାନକୁ ଗୋଟାଏ ଘଟଣା ସହିତ ଯୋଡ଼ି ବା associate କରି ମୁଁ ଅନେକ କଥା ମନେ ରଖିଥାଏ । ଏହାକୁ associative memory କୁହାଯାଇପାରେ । କୌଣସି ପୋଥିଗତ ପନ୍ଥା ଅନୁସରଣ ନକରି ମୋ ନିଜ ଢଙ୍ଗରେ ଗତ ୫୦ ବର୍ଷ ଧରି ମୁଁ ମୋର ଏଇ ତତ୍ତ୍ୱକୁ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ପ୍ରୟୋଗ କରିଛି । ଅତୀତର ଅନେକ ଘଟଣାବଳୀକୁ ମୁଁ ମୋର ଏହି ତତ୍ତ୍ୱ ପ୍ରୟୋଗ କରି ଅନାୟାସରେ ମନେ ପକାଇପାରିଥାଏ । ଭାରତ ସରକାରଙ୍କ ମନୋବିଜ୍ଞାନ ସମ୍ବନ୍ଧିତ ଅନୁଷ୍ଠାନ NIMHANS ର ବିଶେଷଜ୍ଞମାନେ ମୋର ଏହି ପ୍ରାୟୋଗିକ ତତ୍ତ୍ୱଟି ସଂପର୍କରେ ଅବଗତ ହେବାପରେ ବହୁତ ଖୁସି ହୋଇଗଲେ ଓ ମୋତେ ତାଙ୍କ ସଂସ୍ଥାର ଏକ Honarary ବା ଅବୈତନିକ ସଭ୍ୟ ରହିବାକୁ ଅନୁରୋଧ କଲେ । ୧୯୭୮-୭୯ ସାଲରେ କେନ୍ଦ୍ରସରକାରରେ ସ୍ୱାସ୍ଥ୍ୟମନ୍ତ୍ରୀ ଥିବା ବେଳେ, ଏ ଘଟଣାଟି ଘଟିଥିଲା ।

କୌଣସି ପ୍ରତ୍ୟାଶା ନରଖି ମଣିଷକୁ ଭଲ ପାଇବା ଓ ତାକୁ କ୍ଷଣକ ପାଇଁ ହେଲେ ମଧ୍ୟ ବିଶୁଦ୍ଧ ଆନନ୍ଦ ଦେବାକୁ ମୋ ଭିତରେ ଶୈଶବରୁ ଜାତ ହୋଇଥିବା ବ୍ୟାକୁଳତାକୁ ମୁଁ ବିଭିନ୍ନ ପଦ୍ଧତିରେ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିଛି । ନାଁ ମନେ ରଖିବାର ଉପରୋକ୍ତ କୌଶଳ ହାସଲ କରିବା ପଛରେ ପ୍ରକୃତରେ ମୋର ସେହି ବ୍ୟାକୁଳତା ହିଁ ରହିଛି ।

ବିଶିଷ୍ଟ ସାମ୍ବାଦିକ କୁଲ୍‌ଦୀପ ନାୟାର୍ ସେତେବେଳେ ରାଜ୍ୟ ସଭାର ମନୋନୀତ ସଭ୍ୟ ଥାଆନ୍ତି । ମୁଁ ଦିନେ ହଠାତ୍ ତାଙ୍କୁ କହିଲି, "କୁଲଦୀପ, ଆମେ ଭୁବନେଶ୍ୱରରେ ଲୋହିଆ ଏକାଡ଼େମୀ ପ୍ରତିଷ୍ଠା କରିବୁ ବୋଲି ଭାରତ ସରକାରଙ୍କ ଠାରୁ ଖଣ୍ଡେ ଜମି ପାଇଥିଲୁ । ସିଏ ସେମିତି ପଡ଼ିଆ ପଡ଼ିଛି ।" ମୁଁ ପୁଣି କହିଲି, "ତୁମେ ତୁମ ଏମ୍.ପି. ଲାଡ୍ ଫଣ୍ଡ୍‌ରୁ ଯଦି କିଛି ଟଙ୍କା ଦିଅନ୍ତ ଆମେ ସେଠି ଘର ତୋଳା ଆରମ୍ଭ କରନ୍ତୁ ।" ସେ ସଙ୍ଗେ ସଙ୍ଗେ ତାଙ୍କ ଫଣ୍ଡ୍‌ରୁ ପଚାଶଲକ୍ଷ ଟଙ୍କା ଦେବା ପାଇଁ ରାଜି ହୋଇଗଲେ । ସେହି ପଇସାରେ ଏବେ ଭୁବନେଶ୍ୱରରେ ଲୋହିଆ ଏକାଡ଼େମୀ ଘର ତିଆରି ଚାଲିଛି ।

ଦିଲ୍ଲୀରେ ସୁପ୍ରସିଦ୍ଧ ପ୍ରଗତିଶୀଳ ଲେଖକ ଓ ଚିନ୍ତକ ସୁହାସ୍ ବୋର୍‌କର୍ ମୋର ଜଣେ ଘନିଷ୍ଠ ବନ୍ଧୁ । ତାଙ୍କ ସହୃଦୟତା ମୁଁ ଓ ମୋ ସ୍ତ୍ରୀ କେବେ ଭୁଲି ପାରିବୁ ନାହିଁ । ୧୯୯୬ ସାଲ୍‌ରେ ଗୋଟାଏ ଘଟଣା ଆମ ବଂଧୁତ୍ୱକୁ ଅଧିକ ଘନିଷ୍ଠ ଓ ନିବିଡ଼ କରିଦେଲା । ସେ ବର୍ଷ ହଠାତ୍ ମୁଁ ହୃଦ୍‌ରୋଗରେ ଆକ୍ରାନ୍ତ ହେଲି । ମୋର କେବେ ହୃଦ୍‌ରୋଗ ହୋଇପାରେ ଏହା ମୁଁ ସେ ଯାଏ କଳ୍ପନା କରି ନଥିଲି । ଅଲ୍ ଇଣ୍ଡିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଏନ୍‌ସ (AIIMS)ରେ ମୋର ପରୀକ୍ଷା କଲାପରେ ଜଣା ପଡ଼ିଲା ଯେ ମୋ ହୃଦୟରେ କିଛି ସମସ୍ୟା ରହିଛି । ଡାକ୍ତର କହିଲେ, "ଆପଣଙ୍କୁ ଏଠି ରହିବାକୁ ପଡ଼ିବ ।" ମୁଁ କିନ୍ତୁ ନରହି ଚାଲି ଆସିଲି । ଚାରିଦିନ ପରେ ମୁଁ ସୁହାସ୍ ବର୍‌କର୍‌ଙ୍କୁ ଟେଲିଫୋନ୍ କରି ମୋ ଅସୁସ୍ଥତା କଥା କହିଲି । ତାପରେ ସେ ତତ୍‌କ୍ଷଣାତ୍ ମୋ ଘରକୁ ଆସିଲେ ଏବଂ ମୋତେ ଦେଖିସାରି କହିଲେ ଯେ ମୋର ଡାକ୍ତରଖାନାରେ ଭର୍ତ୍ତି ହେବା ନିହାତି ଦରକାର । ମୁଁ ତାଙ୍କ କଥା ମାନି ଡାକ୍ତରଖାନାରେ ଭର୍ତ୍ତି ହୋଇଗଲି । ସେଇଠୁ ସେ ମୋ ସ୍ତ୍ରୀ ଡଃ. ସ୍ୱାଇଁଙ୍କୁ ଫୋନ୍ କଲେ । ଫୋନ୍ ପାଇ ତୁରନ୍ତ ସେ ଯାଇ ମୋ ପାଖରେ ପହଞ୍ଚିଲେ । ବୋର୍‌କର୍ ସେତେବେଳେ ମୋ ପାଇଁ ଯେତିକି ବ୍ୟସ୍ତତା ପ୍ରକାଶ କରିଛନ୍ତି ଓ ମୋର ଯତ୍ନ ନେଇଛନ୍ତି ତାହା ମୁଁ ଭୁଲି ପାରିବି ନାହିଁ । ତା'ପର ଠାରୁ କେବଳ ତାଙ୍କ ସହିତ ନୁହେଁ, ତାଙ୍କ ମା, ସ୍ତ୍ରୀ ଓ ବଡ଼ଭାଇଙ୍କ ସହିତ ମଧ ଆମର ଘନିଷ୍ଠତା ବଢ଼ିଗଲା ଓ ଏବେ ମଧ ବଢ଼ିବଢ଼ି ଚାଲିଛି

୧୯୬୭ ସାଲରେ ମୁଁ ପ୍ରଥମେ ଲୋକସଭା ସଦସ୍ୟ ହୋଇ ଦିଲ୍ଲୀ ଗଲି । ମାତ୍ର ୧୫ ଦିନ ପରେ ମୁଁ ସଂଯୁକ୍ତ ସୋସାଲିଷ୍ଟ ଦଳର ଉପନେତା ରୂପେ ବଛାଗଲି । ନୂଆ ସଭ୍ୟମାନଙ୍କୁ ବଙ୍ଗଲୋ ମିଳିବା କଥା ନୁହେଁ । ମାତ୍ର ମୁଁ ଆମ ଦଳର ଉପନେତା ରୂପେ ବଛା ହେବା ପରେ ମୋତେ ଅତୁଲ୍ ଗ୍ରୋଭର ରୋଡ୍‌ର ୩୧ ନଂ ବଙ୍ଗ୍‌ଲୋଟି ମିଳିଲା । ସେତେବେଳେ ଓଡ଼ିଶାରୁ ଦିଲ୍ଲୀ ଯାଉଥିବା ସାଧାରଣ ଲୋକେ ବଡ଼ ହିନିମାନିଆ ଅବସ୍ଥାରେ ପଡୁଥାଆନ୍ତି । ସେମାନଙ୍କ ପାଇଁ ମୋର ଏହି ପ୍ରଶସ୍ତ ବଙ୍ଗ୍‌ଲୋଟି ସଦା ଉନ୍ମୁକ୍ତ ଥାଏ । ସେଠି ରହି କେତେ ଯେ ପିଲା ପାଠ ପଢ଼ିଛନ୍ତି, କେତେ ଯେ ବଡ଼ ବଡ଼ ଚାକିରୀ କରି ଯାଇଛନ୍ତି, ମୁଁ ତା'ର ହିସାବ ରଖିନାହିଁ । ସେମାନଙ୍କ ଭିତରୁ ଜଣକ ନାଁ ମୋର ସ୍ପଷ୍ଟ ମନେ ଅଛି ଓ ତାଙ୍କ ସହିତ ଏବେ ମଧ ଖୁବ୍ ଘନିଷ୍ଠ ସଂପର୍କ ରହିଛି । ସେ ହେଲେ - ଖୋର୍ଦ୍ଧା କଲେଜର ପୂର୍ବତନ ଅଧକ୍ଷ ଓ ପରେ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟର କୁଳପତି ଥିବା ଶ୍ରୀ କ୍ଷୀରୋଦ୍ ପ୍ରସାଦ ମହାନ୍ତି ।

ଥରେ ଏ ପ୍ରକାର ହେଲା ଯେ ମୁଁ ଓଡ଼ିଶା ଆସିଥାଏ । ମୁଁ ଓଡ଼ିଶାରୁ ଫେରି ଦେଖେତ ଦିଲ୍ଲୀସ୍ଥ ମୋ ଶୋଇବା ଘରଟି ମଧ ଭର୍ତ୍ତି ହୋଇ ଯାଇଛି । ବ୍ରହ୍ମପୁର ମେଡ଼ିକାଲ କଲେଜର କିଛି ଛାତ୍ରୀ ଯାଇ ପହଞ୍ଚିଗଲେ । ଯେହେତୁ ଅନ୍ୟ ସବୁ ବଖରା ଭର୍ତ୍ତି ଥାଏ ତେଣୁ ତାଙ୍କ ପାଇଁ ମୋ ଶୋଇବା ଘରଟି ଖୋଲି ଦିଆଯାଇଥିଲା । ସେମାନେ ମୋ ବଖରାରେ ୪/୫ ଦିନ ରହିଲେ । ମୁଁ ଅନ୍ୟ ରୁମ୍‌ରେ ରହିଲି । ମୋ ଦିଲ୍ଲୀ ବାସଭବନ ଏହିପରି ସର୍ବଦା ସାହାଣ ମେଲା ରହୁଥିବାରୁ କେହି କେହି ତାକୁ ଦିଲ୍ଲୀର "ଦ୍ୱିତୀୟ ଓଡ଼ିଶା ଭବନ " ନାମକରଣ କରିଥିଲେ ।

ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେବା ପରେ ତାଙ୍କର ଏକମାତ୍ର ପୁତ୍ର କାନ୍ତି ଦେଶାଇ ମଧ ତାଙ୍କ ପାଖରେ ରହୁଥିଲେ । ଏହି ସମୟରେ କାନ୍ତି ଦେଶାଇଙ୍କ ନାମରେ ଏକ ଅଭିଯୋଗ ଆସିଥିଲା ଯେ, ସେ ଅଯଥା ସରକାରୀ କାର୍ଯ୍ୟରେ ହସ୍ତକ୍ଷେପ କରୁଛନ୍ତି ଏବଂ ନିଜର ଚାପ ପ୍ରୟୋଗ କରି ସରକାରୀ କଳର ଅପବ୍ୟବହାର ମଧ କରୁଛନ୍ତି । ଏ ବିଷୟ ସେତେବେଳେ ଏପରି ଆକାର ଧାରଣ କରିଥିଲା ଯେ, ମୁଁ ଏବଂ ମଧୁଲିମାୟେ ମୋରାରଜୀ ଭାଇଙ୍କ ନିକଟକୁ ଏହାର ସମାଧାନ ପାଇଁ ଯାଇଥିଲୁ । ସେଠାକୁ ଯିବା ପୂର୍ବରୁ ମଧୁଲିମାୟେ କାନ୍ତି ଦେଶାଇଙ୍କ ସ୍ତ୍ରୀଙ୍କୁ ସାକ୍ଷାତ କରିଥିଲେ ଓ ସେମାନେ ପ୍ରଧାନମନ୍ତ୍ରୀଙ୍କ ଦିଲ୍ଲୀ ବାସଭବନ ଛାଡ଼ି ବମ୍ବେସ୍ଥିତ ନିଜସ୍ୱ ବାସଭବନରେ ରହିଲେ ତାଙ୍କର କିଛି ଆପତ୍ତି ନାହିଁ ବୋଲି ବୁଝି କରି ଆସିଥିଲେ । ତେଣୁ ମଧୁଲିମାୟେ କାନ୍ତି ଦେଶାଇଙ୍କର ବର୍ତ୍ତମାନ ପରିସ୍ଥିତିରେ ବମ୍ବେସ୍ଥିତ ବାସଭବନରେ ରହିବା ଅଧିକ ଉଚିତ୍ ହେବ ବୋଲି ମୋରାରଜୀ ଭାଇଙ୍କୁ ପରାମର୍ଶ ଦେଲେ । ତାଙ୍କ କଥା ଶୁଣି ମୋରାରଜୀ ଭାଇ ତତ୍‌କ୍ଷଣାତ୍ କହିଲେ, "ସେମାନେ ଯଦି ବମ୍ବେ ଚାଲିଯିବେ ତାହେଲେ ମୋର ଦେଖାଶୁଣା କିଏ କରିବ ?" ସେତେବେଳକୁ ମୋରାରଜୀ ଭାଇ ୮୦ବର୍ଷରେ ପଦାର୍ପଣ କରିସାରିଥିଲେ, ହେଲେ ତାଙ୍କ ସ୍ୱାସ୍ଥ୍ୟ ସେହିପରି ଅତୁଟ ଥିଲା । ମୁଁ ତେଣୁ ମଜାରେ କହିଲି "ମୋରାରଜୀ ଭାଇ ! ଆପଣଙ୍କର ଦେଖାଶୁଣା କରିବା କ'ଣ ଦରକାର ? ଆପଣଙ୍କ ସ୍ୱାସ୍ଥ୍ୟ ତ କାନ୍ତି ଭାଇଙ୍କ ସ୍ୱାସ୍ଥ୍ୟ ଠାରୁ ହଜାରଗୁଣ ଭଲ, ଆପଣଙ୍କୁ ସେ କ'ଣ ଦେଖିବେ ? ବରଂ ଆପଣ ତାଙ୍କୁ ଦେଖାଶୁଣା କରିବା କଥା ।" ଏକଥା ଶୁଣି ମୋରାରଜୀଭାଇ ହସି ହସି ବେଦମ୍ ହୋଇଯାଇଥିଲେ ।

ମୋରାରଜୀ ଭାଇ ପ୍ରଧାନମନ୍ତ୍ରୀ ପଦରୁ ଚାଲି ଯିବା ପରେ ତାଙ୍କ ପୁଅ କାନ୍ତି ଦେଶାଇଙ୍କ ଘରେ ବମ୍ବେରେ ରହୁଥିଲେ । ଥରେ ମୁଁ ତାଙ୍କୁ ସାକ୍ଷାତ କରିବାକୁ ଯାଇଥାଏ । କାନ୍ତି ଦେଶାଇଙ୍କ ଘର ମେରିନ୍ ଡ୍ରାଇଭ୍ ପାଖରେ । ମୋରାରଜୀ ଭାଇ ସେ ଘରର ଉପର ମହଲାରେ ରହୁଥାଆନ୍ତି । ସେ ଘର ଝରକା ବାଟେ ଆରବ ସାଗର ଦେଖାଯାଉଥାଏ । ମୁଁ ତାଙ୍କୁ ପଚାରିଲି, "ଆପଣ ଏଠୁ କେବେ ସମୁଦ୍ରକୁ ଲକ୍ଷ୍ୟ କରିଛନ୍ତି ?" ସେ ମୁଣ୍ଡ ହଲାଇ ମନା କଲେ । ମୁଁ କହିଲି, "କ'ଣ ହେଲା, ଏଠୁ ସମୁଦ୍ର ଦେଖିବାକୁ ଏଡ଼େ ସୁନ୍ଦର । ଅଥଚ ଆପଣ କେବେ ବି ଏଠାରୁ ସମୁଦ୍ର ଦେଖି ନାହାନ୍ତି ?" ସେ ଦୃଢ଼ କଣ୍ଠରେ କହିଲେ, "ସମୁଦ୍ରକୁ ଦେଖିବା ମୋର କେବେ ବି ଆବଶ୍ୟକ ପଡ଼ିନାହିଁ ।"

ମୋରାରଜୀ ଭାଇଙ୍କର ସ୍ୱମୂତ୍ର ଚିକିତ୍ସା ସର୍ବଜନବିଦିତ । ତାଙ୍କ ପାଖକୁ କେହି ସ୍ୱମୂତ୍ର ଚିକିତ୍ସା ବିଷୟ ଅଧିକ ଜାଣିବା ପାଇଁ ଚିଠି ଲେଖିଲେ ତାକୁ ସେ ବିଷୟ ବିଶଦ୍ ଭାବେ ବୁଝାଇ ଚିଠି ଲେଖିବା ତାଙ୍କର ଗୋଟାଏ ଅଭ୍ୟାସ ଥିଲା । ଓଡ଼ିଶାର ପୂର୍ବତନ ରାଜସ୍ୱମନ୍ତ୍ରୀ ସମାଜବାଦୀ ନେତା ବାଙ୍କବିହାରୀ ଦାସ ଏବଂ ସମାଜବାଦୀ ଯୁବ ଆଇନଜୀବୀ ବୈଷ୍ଣବ ଦାସଙ୍କୁ ମୁଁ ମୋରାରଜୀ ଭାଇଙ୍କ ସ୍ୱମୂତ୍ର ଚିକିତ୍ସା କଥା କହିଥିଲି । ସେମାନେ ମୋରାରଜୀ ଭାଇଙ୍କୁ ସେ ସଂପର୍କରେ ଚିଠି ଲେଖିଲେ । ସେମାନଙ୍କୁ କ'ଣ କରିବାକୁ ପଡ଼ିବ, କିପରି କରିବାକୁ ପଡ଼ିବ ସେ କଥା ବୁଝାଇ ମୋରାରଜୀ ଭାଇ ସେ ଦୁହିଁଙ୍କୁ ଚିଠି ଦେଇଥିଲେ । ବହୁ ଲୋକ ଏହିପରି ତାଙ୍କୁ ଚିଠି ଲେଖନ୍ତି । ସେ ସମସ୍ତଙ୍କୁ ଚିଠିର ଉତ୍ତର ସେ ନିଜେ ଦିଅନ୍ତି ।

ଆମ ଭାରତ ସରକାରଙ୍କ ପବ୍ଲିକେସନ୍ ଡିଭିଜନ ତରଫରୁ ମହାତ୍ମାଗାନ୍ଧୀଙ୍କର ସମସ୍ତ ଲେଖା "The collected works of Mahatma Gandhi" ନାମରେ ପ୍ରକାଶିତ ହୋଇଛି । ସମ୍ଭବତଃ ଏହା ଗାନ୍ଧିଜୀଙ୍କ ଲେଖାର ସବୁଠାରୁ ବିଶ୍ୱସନୀୟ ସଂକଳନ । ଗାନ୍ଧିମାନସରେ ଯଦି ଜଣେ ଅବଗାହନ କରିବା ପାଇଁ ଚାହିଁବ ତାହେଲେ ଏହି ଗ୍ରନ୍ଥ ଗୁଡ଼ିକ ଯେ ତାଙ୍କୁ ଯଥେଷ୍ଟ ଖୋରାକ ଯୋଗାଇବ ଏହା ମୋର ବିଶ୍ୱାସ । ସେହି ଅମୂଲ୍ୟ ଗ୍ରନ୍ଥ ମଧ୍ୟରୁ ମୁଁ ଖଣ୍ଡିଏ ପଢ଼ିବା ସମୟରେ ଏକ ଚିଠି ଦେଖି ହଠାତ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ସେ ଚିଠିଟି ଉତ୍କଳଗୌରବ ମଧୁସୂଦନ ଗାନ୍ଧିଜୀଙ୍କ ପାଖକୁ ଲେଖିଥିଲେ ଏବଂ ଗାନ୍ଧିଜୀ ତାହାକୁ 'ହରିଜନ' ପତ୍ରିକାରେ ପ୍ରକାଶ କରିଥିଲେ । ଉକ୍ତ ଚିଠିରେ ମଧୁବାବୁ ଆମ ଦେଶର କୃଷି ସଂସ୍କୃତିକୁ କିପରି ଉନ୍ନତ କରାଯାଇପାରିବ ଏବଂ ସମାଜର ନିମ୍ନତି ତଳସ୍ତରରେ ବାସ କରୁଥିବା ବ୍ୟକ୍ତି (ଯଥା- ମୋଚି) କିପରି ସେମାନଙ୍କ ଜୀବିକା ନିର୍ବାହ କରନ୍ତି ସେହି ବିଷୟ ସ୍ପଷ୍ଟଭାବେ ଉଲ୍ଲେଖ କରିଥିଲେ । ମୁଁ ସେ ଚିଠିଟି ପଢ଼ି ସେଦିନ ଏତେ ଅଭିଭୂତ ହୋଇଯାଇଥିଲି ଯେ ସେ ଚିଠିର ଏକ ନକଲ ନେଇ ମୁଁ 'ସମାଜ' ସଂପାଦକ ଡଃ. ରାଧାନାଥ ରଥଙ୍କୁ ପଢ଼ାଇଥିଲି । ଉକ୍ତଚିଠି ପଢ଼ି ସେ ଏତେମାତ୍ରାରେ ଭାବପ୍ରବଣ ହୋଇପଡ଼ିଥିଲେ ଯେ ତାଙ୍କ ଆଖିରେ ଅଶ୍ରୁ ଆସିଯାଇଥିଲା ।

ମୁଁ ବାଚସ୍ପତି ଥିବା ସମୟରେ ଏକ ପାର୍ଲାମେଣ୍ଟ ପ୍ରତିନିଧି ମଣ୍ଡଳୀର ନେତୃତ୍ୱ ନେଇ ହଙ୍ଗେରୀ ଯାଇଥିଲି । ସେହି ଗସ୍ତ ସମୟର ଏକ ଘଟଣା ଏବେ ସୁଦ୍ଧା ମୋ ସ୍ମୃତିପଟରେ ସାଇତା ହୋଇ ରହିଛି । ଆମର ସମସ୍ତ ଗସ୍ତ କାର୍ଯ୍ୟକ୍ରମ ହଙ୍ଗେରୀ ପାର୍ଲାମେଣ୍ଟ ତରଫରୁ ବହୁପୂର୍ବରୁ ସ୍ଥିରୀକୃତ ହୋଇଥିଲା । ସେଠାରେ ଆମ ରହଣି ମଧ୍ୟରେ ଆମେ ହଙ୍ଗେରୀର ଏକ ପ୍ରସିଦ୍ଧ ଦର୍ଶନୀୟ ସ୍ଥାନ 'ବେଲାଟୋନା ହ୍ରଦ' ବୁଲିବାକୁ ଯାଇଥିଲୁ । ହ୍ରଦଟି ଦେଖିବାକୁ ଯେପରି ସୁନ୍ଦର ଥିଲା ତା ନିକଟରେ ଆମେ କଟାଇଥିବା ମୁହୂର୍ତ୍ତଗୁଡ଼ିକ ମଧ୍ୟ ସେହିପରି ଅପାସୋରା ହୋଇଯାଇଛି । ବେଲାଟୋନା ଆମ ପାଇଁ ଏକ ସ୍ମରଣୀୟ ତୀର୍ଥସ୍ଥାନ ହୋଇଗଲା ଏଇଥିପାଇଁ ଯେ, ସେଠାକୁ ବହୁଦିନ ତଳେ ବିଶ୍ୱକବି ରବୀନ୍ଦ୍ରନାଥ ଆସିଥିଲେ ଏବଂ ସେହି ହ୍ରଦ କୂଳରେ ଗୋଟିଏ ଗଛ ଲଗାଇଥିଲେ । ଦୁର୍ଭାଗ୍ୟବଶତଃ ରବୀନ୍ଦ୍ରନାଥଙ୍କ ସେଠାରେ କିଛି ଶାରୀରିକ ଅସୁସ୍ଥତା ଦେଖାଦେଇଥିଲା ଏବଂ ସେ ସେଠାରେ କିଛି ଦିନ ଚିକିତ୍ସିତ ମଧ୍ୟ

ହୋଇଥିଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ରବୀନ୍ଦ୍ରନାଥ ସେତେବେଳେ ସେଠି ଗୋଟିଏ ସୁନ୍ଦର ଇଂରେଜୀ କବିତା ଲେଖିଥିଲେ ଯାହା ଆଜି ପର୍ଯ୍ୟନ୍ତ ସେଠାରେ ଖୋଦିତ ହୋଇ ରହିଛି । ନିଜର ଲୋଭ ସମ୍ବରଣ କରି ନପାରି ମୁଁ ସେଦିନ ସେ କବିତାଟିକୁ ମୋ ସାଙ୍ଗରେ ଟିପି ନେଇଆସିଥିଲି । କବିତାଟି ଏହିପରି –

"When I am no longer
On this earth, my tree
Let the ever renewed leaves
Of thy spring, murmer to
Wayfarer, The poet did
Love while he lived."

- Rabindranath, 8th November, 1926

ଯେବେ ମୁଁ ନଥିବି ଆଉ
ଏ ଧରା ପୃଷ୍ଠରେ
ହେ ମୋର ପାଦପ,
ବସନ୍ତର ଏ ନବପଲ୍ଲବ
କହିଯାଉ ତା ମର୍ମର ସ୍ୱନେ
ପଥଚାରୀ କାନେ,
'ଏଠି ଦିନେ କବିଟିଏ ଥିଲା
ସଂସାରକୁ ନିଛକ ସେ ଭଲ ପାଉଥିଲା ।'

- ରବୀନ୍ଦ୍ରନାଥ, ନଭେମ୍ବର ୮, ୧୯୨୬

ପୁନଶ୍ଚ ସେ ହଙ୍ଗେରୀ ସଂପର୍କରେ ମଧ୍ୟ ନିମ୍ନଲିଖିତ ଏକ କବିତା ସେଠି ଲେଖିଥିଲେ:

"Hungary thou past offered
Welcome to him
Who travelled from a
Distant home
And restful shelter
When he was worry and weak
Since thou past accepted him

Who was a stranger
The separation of distance
Will never separate
Him from thee."

- Tagore

(ବହୁଦୂରେ ମୋର ଘର,
ହଙ୍ଗେରୀ ତୁମେ ସ୍ୱାଗତ କରିଲ
ଖୋଲିଲ ପ୍ରୀତିର ଦ୍ୱାର ।
ଅପରିଚିତରେ ଆଶ୍ରୟ ଦେଲ
ଶ୍ରାନ୍ତ କ୍ଳାନ୍ତ ଦେହେ ତା' ଭରିଲ
ନବ ଉନ୍ମାଦ,
ଦୂରତ୍ୱ କେବେ ପାରିବନି କରି ଦୂର -
ହୃଦୟର ଏହି ବନ୍ଧନ ଆମ,
ଚିରଦିନ ମୁଁ ତୁମର ।)

– ଠାକୁର

ରବୀନ୍ଦ୍ରନାଥ ସେଠାରେ ଯେଉଁ ଡାକ୍ତରଖାନାରେ ରହି ଚିକିତ୍ସିତ ହେଉଥିଲେ ତାର ନାମ ଥିଲା "State Hospital for Cardiology, Baltonturned । ସେ ୨୨୦ ନମ୍ବର କୋଠରୀରେ ରହୁଥିଲେ । ଯେଉଁ ଭଦ୍ରମହିଳା ଜଣକ ତାଙ୍କର ସେବାଶୁଶ୍ରୂଷା କରୁଥିଲେ ତାଙ୍କ ନାମ ଥିଲା ବୋଗ୍ନାର (Bognar) । ରବୀନ୍ଦ୍ରନାଥଙ୍କର ଏ ସମସ୍ତ ସ୍ମୃତିକୁ ହଙ୍ଗେରୀ ସରକାର ଯେପରି ସାଇତି ରଖିଛନ୍ତି ତାହା ଏଠାରେ ଦେଖିବାକୁ ବିରଳ । ଆମେ ସେଠାକାର ଜନସାଧାରଣ ତଥା ତାଙ୍କ ସରକାରଙ୍କର ମହାନୁଭବତାକୁ ସେଦିନ ଭୁଲି ପାରିନଥିଲୁ ।

ମୁଁ ତିବ୍ବତ-ଭାରତ ମୈତ୍ରୀ ସଂଘର ସଭାପତି । ୧୯୪୯ ସାଲରେ ଚୀନ ଯେତେବେଳେ ତିବ୍ବତ ଉପରେ ଆକ୍ରମଣ କଲା ଏବଂ ତାକୁ ନିଜ ଦଖଲକୁ ନେଇଗଲା ସେହି ସମୟରୁ ଆମେ ଡଃ. ଲୋହିଆଙ୍କ ନେତୃତ୍ୱରେ ତିବ୍ବତ ମୁକ୍ତି ଆନ୍ଦୋଳନ ଚଳାଇ ଆସିଛୁ । ତିବ୍ବତ ମୁକ୍ତି ଆନ୍ଦୋଳନରେ ମୋର ବିଶେଷ ଭୂମିକା ଯୋଗୁଁ ମୋତେ ଥରେ ତିବ୍ବତ ମୁକ୍ତି ସଂଗଠନ ତରଫରୁ ପୁରସ୍କୃତ କରାଯିବାର କାର୍ଯ୍ୟକ୍ରମ ସ୍ଥିର ହେଲା । ମୁଁ ମୋର ବାସସ୍ଥାନ କଟକରେ ରହୁଥିବା ସମୟରେ ଦିଲ୍ଲୀରୁ ଏ ସଂପର୍କରେ ଏକ ଚିଠି ପାଇଲି । ରାଜଧାନୀ ଦିଲ୍ଲୀରେ ଆୟୋଜିତ ଏକ ଭବ୍ୟ ସମ୍ବର୍ଦ୍ଧନା ଉତ୍ସବରେ ଗୁରୁ ଦଲାଇଲାମା ମୋତେ "The Light of Truth" (ସତ୍ୟର ଆଲୋକ, ଡିସେମ୍ବର ୧୮, ୨୦୦୨)

ସମ୍ମାନରେ ଭୂଷିତ କଲେ । ଭାରତର ପୂର୍ବତନ ରାଷ୍ଟ୍ରପତି ଶ୍ରୀଯୁକ୍ତ ଭେଙ୍କଟ ରମଣଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଏହି ଉତ୍ସବରେ ତିବ୍ଦତ ମୁକ୍ତି ଆନ୍ଦୋଳନର ବହୁ ସମର୍ଥକ ଯୋଗ ଦେଇଥିଲେ । ଦଲାଇଲାମାଙ୍କ ଠାରୁ ବିଶ୍ୱସ୍ତରୀୟ ଏହି ପୁରସ୍କାର ଗ୍ରହଣ କରିବାରେ ମୁଁ କିଛି ସନ୍ତୁଷ୍ଟ ନଥିଲି । କାରଣ ଆମେ ଯେଉଁ ଲକ୍ଷ୍ୟ ଓ ଆଦର୍ଶ ନେଇ ୧୯୪୯ ସାଲରୁ ତିବ୍ଦତ ମୁକ୍ତି ଆନ୍ଦୋଳନ ଚଳାଇ ଆସିଥିଲୁ, ସେ କାର୍ଯ୍ୟ ଯେ ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ହୋଇନାହିଁ ଏଥିନେଇ ମୁଁ ବ୍ୟସ୍ତ ହେଉଥିଲି । ସବୁଠାରୁ ପରିତାପର ବିଷୟ ଏହି କି ଯେ ସେତେବେଳେ ଆମର ଏହି ଆନ୍ଦୋଳନକୁ ଡଃ. ଲୋହିଆ, ରାଜେନ୍ଦ୍ର ପ୍ରସାଦ, ଆମ୍ବେଦକର, ବଲ୍ଲଭଭାଇ ପଟେଲ, ଓ ଆଚାର୍ଯ୍ୟ କୃପାଳିନୀଙ୍କ ପରି ବ୍ୟକ୍ତିମାନେ ଅକୁଣ୍ଠ ସମର୍ଥନ ଦେଇ ଆସିଥିବା ସତ୍ତ୍ୱେ ଭାରତ ସରକାର ଏ ସଂପର୍କରେ ସଂପୂର୍ଣ୍ଣ ନୀରବତା ଅବଲମ୍ବନ କରିଛନ୍ତି । ଅଟଳ ବିହାରୀଙ୍କ ସରକାର ମଧ୍ୟ ଏଥିରୁ ବ୍ୟତିକ୍ରମ ନୁହଁନ୍ତି ।

ତିବ୍ଦତ ରାଜ୍ୟ ବନବାସ ମଧ୍ୟରେ ରହି ସୁଦ୍ଧା ତାର ଏକ ସରକାର ଗଠନ କରିଛି । ହିମାଚଳ ପ୍ରଦେଶର ଧର୍ମଶାଳା ହେଉଛି ଏହି ସରକାରର ପ୍ରଧାନ ଦପ୍ତର । ସେ ସରକାରର ପ୍ରଧାନମନ୍ତ୍ରୀ ହେଉଛନ୍ତି ରିନ୍ ପୁଂଚେ । ଏକଦା ମୁଁ ଦିଲ୍ଲୀରେ ଅବସ୍ଥାନ କରୁଥିବା ସମୟରେ ସେ (ପ୍ରଧାନମନ୍ତ୍ରୀ) ମୋତେ ଭେଟିବାକୁ ଚାହୁଁଛନ୍ତି ବୋଲି ଫୋନ୍‌ରେ ଅନୁମତି ମାଗିଲେ ଏବଂ ମୋ ଠାରୁ ସଦିଚ୍ଛାପୂର୍ଣ୍ଣ ବାର୍ତ୍ତାପାଇବା ପରଦିନ ସେ ମୋତେ ଭେଟିଲେ । ଉଭୟଙ୍କ ମଧ୍ୟରେ ଖୁବ୍ ସୌହାର୍ଦ୍ଦ୍ୟପୂର୍ଣ୍ଣ ଆଲୋଚନା ହେଲା । ସେହି ଆଲୋଚନା ଭିତରେ ମୁଁ ତାଙ୍କୁ ଭାରତ ସ୍ୱାଧୀନତା ପାଇବାର ଦଶମାସ ପୂର୍ବରୁ ଗାନ୍ଧିଜୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏସିଆନ୍ ରିଲେସନ୍‌ସ ସମ୍ମିଳନୀରେ ଚୀନ୍ ଓ ତିବ୍ଦତରୁ କିପରି ଦୁଇଦଳ ପ୍ରତିନିଧି ଆସି ଏଥିରେ ଯୋଗ ଦେଇଥିଲେ ଓ କିପରି ଚୀନ୍ ମଧ୍ୟ ଏଇ ଦୁଇଦେଶ ତତ୍ତ୍ୱର କିଛି ବିରୋଧ କି ପ୍ରତିରୋଧ କରି ନଥିଲା (ଏହା ଏହି ପୁସ୍ତକରେ ପୂର୍ବରୁ ଆଲୋଚିତ ହୋଇଛି) ସେ କଥା ତାଙ୍କୁ କହିଲି । ସେ ଆଶ୍ଚର୍ଯ୍ୟ ଚକିତ ହେଲେ । କାରଣ, ସେ ଏକଥା ପୂର୍ବରୁ ଜାଣିନଥିଲେ ।

ଅଧିକାଂଶ ମନୁଷ୍ୟ ବିପଦରେ ପଡ଼ିଥିବାବେଳେ ଅନ୍ୟଠାରୁ ସାହାଯ୍ୟ ଖୋଜନ୍ତି ମାତ୍ର ସାହାଯ୍ୟ ପାଇ ବିପଦମୁକ୍ତ ହେବାପରେ ସାହାଯ୍ୟକାରୀ ବ୍ୟକ୍ତିଟିକୁ ସଂପୂର୍ଣ୍ଣ ପାସୋରି ଯାଆନ୍ତି । ତେବେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ କି ସାମାନ୍ୟ ସାହାଯ୍ୟ ପାଇଁ ଅନ୍ୟକୁ ଚିରଦିନ ପର୍ଯ୍ୟନ୍ତ ମନେରଖିଥାଆନ୍ତି । ପୋଷ୍ଟେଟ୍ ରୋଗର ବିଶିଷ୍ଟ ଚିକିତ୍ସକ ଡଃ. ନୟନ ମହାନ୍ତି ସେହି ବିରଳ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରୁ ଅନ୍ୟତମ । ଏକଦା ମୋର ପୋଷ୍ଟେଟ୍ ରୋଗର ଚିକିତ୍ସା ପାଇଁ ମୁଁ ମୋ ସ୍ତ୍ରୀ ଡଃ. ସରସ୍ୱତୀ ସ୍ୱାଇଁଙ୍କ ସହିତ ଡଃ. ନୟନ ମହାନ୍ତିଙ୍କ ନିକଟକୁ ଯାଇଥିଲି । ସେଠାରେ ପହଞ୍ଚିବା ପରେ ସେ ଆମକୁ ଏପରି କୃତଜ୍ଞତା ପ୍ରଦର୍ଶନ କରିଥିଲେ ଯାହା ମୁଁ ଆଜି ପର୍ଯ୍ୟନ୍ତ ସୁଦ୍ଧା ଭୁଲିପାରିନାହିଁ । ୧୯୭୯ ମସିହାରେ ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ ସେ କିପରି ତାଙ୍କ ପୋଷ୍ଟିଂ ପାଇଁ ମୋ ଦ୍ୱାରା ବିଶେଷ ଉପକୃତ ହୋଇଥିଲେ ତାହା ବଖାଣିବା ବେଳେ ସେ ଯେପରି ଭାବପ୍ରବଣ ହୋଇପଡ଼ିଥିଲେ, ସେହିପରି ଡଃ. ସ୍ୱାଇଁଙ୍କର ସେ ଜଣେ ସୁଯୋଗ୍ୟ ଛାତ୍ର ହୋଇଥିବାରୁ ନିଜକୁ ଖୁବ୍ ଭାଗ୍ୟବାନ୍ ମନେ

କରୁଛନ୍ତି ବୋଲି କହିଥିଲେ । ଡଃ. ମହାନ୍ତିଙ୍କ କଥା ଶୁଣି ଆମେ ଦୁହେଁ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲୁ । ଭାବିଲୁ, ଆଜିର ସମାଜରେ ନୟନବାବୁଙ୍କ ପରି ଆଉ କେତେଜଣ ଅଛନ୍ତି ?

ବିଶ୍ୱବିଖ୍ୟାତ ନାଟ୍ୟକାର ଜର୍ଜ ବର୍ଣ୍ଣାଡ ଶ' ମୋର ଆଦର୍ଶ ଥିଲେ । ତାଙ୍କ ରଚିତ ଲେଖାଗୁଡ଼ିକ ମୋତେ ପଢ଼ିବାକୁ ଖୁବ୍ ଭଲ ଲାଗୁଥିଲା । ସେ ମଧ୍ୟ ଲଣ୍ଡନରେ ଫେବିୟାନ୍ ସୋସାଇଟି (Fabian Society) ଗଠନ କରି ସମାଜବାଦର ପ୍ରଚାର ଓ ପ୍ରସାର ଘଟାଇଥିଲେ । ନିଜ ଢ଼ଙ୍ଗରେ ସେ ଜଣେ ଋଷିପ୍ରତିମ ବ୍ୟକ୍ତି ଥିଲେ । ତାଙ୍କ ନାଟକ Pygmalion ର ଚଳଚ୍ଚିତ୍ର ରୂପାନ୍ତର "My Fair Lady" ସେତେବେଳେ ଖୁବ୍ ଉଚ୍ଚ ପ୍ରଶଂସିତ ହୋଇଥିଲା । ସାଧାରଣ ଭାବରେ ମୁଁ ଫିଲ୍ମ ଦେଖିବାକୁ ବେଶୀ ଯାଏନାହିଁ । ଥରେ ମୋର ଜଣେ ହିନ୍ଦୀ ସାହିତ୍ୟିକ ବଂଧୁ ଶ୍ରୀ ଉଦୟନ ଶର୍ମା ମୋତେ ସେହି ଫିଲ୍ମଟିକୁ ଦେଖିବା ପାଇଁ ଅନୁରୋଧ ଜଣାଇଲେ । ତାଙ୍କ କଥା ନ ଭାଙ୍ଗି ପାରି ସେ, ମୁଁ ଏବଂ ମୋର ଆଉ ଜଣେ ବନ୍ଧୁ (ହିନ୍ଦି ଧାରାବାହିକ 'ଜନସତ୍ତା'ର ସହ ସଂପାଦକ) ଏହିପରି ତିନିଜଣ ସେହି "My Fair Lady" Film ଟି ଦେଖିବାକୁ ଗଲୁ । ଏଫିଲ୍ମଟି ମୋତେ ଏତେ ଭଲ ଲାଗିଥିଲା ଯେ, ବଂଧୁମାନଙ୍କୁ ନେଇ ମୁଁ ପୁନର୍ବାର ସେହି ଫିଲ୍ମଟି ଦେଖିବାକୁ ଭୁଲି ନଥିଲି ।

ଏଇ ନିକଟ ଅତୀତର ଏକ ଘଟଣା । ୨୦୦୩ ମସିହା ଜୁନ୍ ୫ ତାରିଖରେ ମୁଁ ଝାଡ଼ଖଣ୍ଡର ରାଞ୍ଚିଠାରେ ପାଳିତ ହେଉଥିବା 'ସଂପୂର୍ଣ୍ଣ କ୍ରାନ୍ତି ଦିବସ'ରେ ଯୋଗ ଦେଇଥିଲି । ସେହି ସମୟରେ ମୋର ଏକ ବିଚିତ୍ର ଅନୁଭୂତି ହୋଇଥିଲା ଯାହାକୁ ମୁଁ ଲିପିବଦ୍ଧ ନ କରି ରହିପାରୁ ନାହିଁ । ରାଞ୍ଚିରୁ କାର୍ଯ୍ୟକ୍ରମ ସାରି ମୁଁ ସାନ୍ତାଳ ପ୍ରଗଣା ମଧ୍ୟରେ ଥିବା 'ଝୁମୁକା' ବୋଲି ଏକ ସ୍ଥାନକୁ ଯାଇଥିଲି । ସେଠାରେ ସାମ୍ବାଦିକ କର୍ମୀ ସତ୍ୟେନ ପ୍ରସାଦ ସିଂ ଏକ ସଭାର ଆୟୋଜନ କରିଥିଲେ । ସ୍ଥାନଟି ସଂପୂର୍ଣ୍ଣ ଆଦିବାସୀ ଅଞ୍ଚଳ। ଜଣେ ଆଦିବାସୀ ରମଣୀ ନିଜ ଜୀବନର ଦୁଃଖ କାହାଣୀ ବର୍ଣ୍ଣନା ପ୍ରସଙ୍ଗରେ ସେ ଦିନ ଯାହା କହିଲେ ସେଥିରୁ ବଣଜଙ୍ଗଲରେ ଜୀବନ ଅତିବାହିତ କରୁଥିବା ମଣିଷ ଏବେ ମଧ୍ୟ ପ୍ରତି ମୁହୂର୍ତ୍ତରେ କିପ୍ରକାର ଜୀବନ ଯୁଦ୍ଧର ସମ୍ମୁଖୀନ ହେଉଛି, ତାର ଏକ ଝଲକ ମିଳେ । ଥରେ ରାତିରେ ସେ ମହିଳା ଦେଖିଲେ ଯେ, ଗୋଟିଏ ପ୍ରକାଣ୍ଡ ହାତୀ ତାଙ୍କ କୁଡ଼ିଆ ଆଡ଼କୁ ମାଡ଼ି ଆସୁଛି । ସେ ପ୍ରାଣ ବିକଳରେ ଗୋଟିଏ ଗଛରେ ଚଢ଼ି ଯାଇଥିଲେ । ତାର ସ୍ୱାମୀ ମଧ୍ୟ ଆଉ ଗୋଟିଏ ଗଛରେ ଚଢ଼ିଗଲେ । ସେ ସ୍ତ୍ରୀ ଲୋକଟି ତାଙ୍କର ସ୍ୱାଭାବିକ ଶୈଳୀରେ କହି ପକାଇଲେ ଯେ ସେତେବେଳ କୁ ସେ ପ୍ରାୟ ସଂପୂର୍ଣ୍ଣ ଦଶମାସ ଗର୍ଭବତୀ ଥିଲେ । ସେହି ଗଛ ଉପରେ ଚଢ଼ିବା ସମୟରେ ହିଁ ତାଙ୍କର ପିଲା ଜନ୍ମ ହୋଇ ପଡ଼ିଥିଲା । ଏପରିକି ସେହି ଅବସ୍ଥାରେ ସଂପୃକ୍ତ ଆଦିବାସୀ ମହିଳା ଜଣକ ନିଜର ପିଲାର ନାହି ନାଡ କାଟି ତାକୁ ବଞ୍ଚାଇ ରଖିଥିଲେ । ଆରପଟ ଗଛରେ ତା ସ୍ୱାମୀଜଣକ ଏ ସବୁ ଦୃଶ୍ୟ ଦେଖିପାରୁଥିଲେ ହେଁ ହାତୀ ଭୟରେ ତାଙ୍କ ନିକଟକୁ ଆସି ପାରି ନଥିଲେ କିମ୍ବା କୌଣସି ପ୍ରକାର ସାହାଯ୍ୟ ମଧ୍ୟ ତାଙ୍କ ପକ୍ଷରେ

ସମ୍ଭବ ହୋଇ ନଥିଲା । ସକାଳ ହେବା ପରେ ହାତୀ ଚାଲିଗଲା ଉତାରୁ ଉଭୟ ସ୍ୱାମୀ ସ୍ତ୍ରୀ ତଳକୁ ଓହ୍ଲାଇ ନିଜ ଘରକୁ ଯାଇଥିଲେ । ଏକବିଂଶ ଶତାବ୍ଦୀରେ ସୁଦ୍ଧା ମଣିଷକୁ ଏଠି ପ୍ରକୃତି ସହିତ ଏହି ସ୍ତରରେ ଲଢ଼ିବାକୁ ପଡୁଛି !

୧୯୭୭ରେ ଜନତା ସରକାର କେନ୍ଦ୍ରରେ ଆସିବା ପରେ ମୁଁ ଜନତା ଦଳର ଅଖିଳ ଭାରତୀୟ ସାଧାରଣ ସଂପାଦକ ଭାବରେ ଦାୟିତ୍ୱ ନେଲି । ମୁଁ ମୋ ଦିଲ୍ଲୀସ୍ଥ କ୍ୱାର୍ଟର୍ସରେ ସେତେବେଳେ ରହୁଥାଏ । ଦିନେ ହଠାତ୍ ମୋର ପୂଜ୍ୟ ଅଧ୍ୟାପକ ଏବଂ ଓଡ଼ିଶାର ବିଶିଷ୍ଟ ଅର୍ଥନୀତିଜ୍ଞ ଡଃ. ସଦାଶିବ ମିଶ୍ର ମୋ ପାଖକୁ ଆସି ମୋତେ ଭେଟିବା ପାଇଁ ଟେଲିଫୋନ୍ କଲେ । ମୁଁ ଖୁସି ହୋଇ ସଙ୍ଗେ ସଙ୍ଗେ ତାଙ୍କୁ ଆସିବା ପାଇଁ କହିଲି । କାରଣ, ତାଙ୍କ ସହିତ ପୂର୍ବରୁ ଖୁବ୍ ଘନିଷ୍ଠତା ଥାଏ । ସେ ଠିକ୍ ସମୟରେ ମୋ କ୍ୱାର୍ଟର୍ସରେ ଆସି ପହଞ୍ଚିଗଲେ । ତାପରେ ତାଙ୍କ ସହିତ ମୋର ବହୁତ କଥା ଆଲୋଚନା ହେଲା । ଏହି ସମୟରେ ସଦାଶିବ ବାବୁ ହଠାତ୍ ଅସୁସ୍ଥ ହୋଇପଡ଼ିଲେ । ତାଙ୍କ ଦେହରୁ ପ୍ରବଳ ଝାଳ ବାହାରିବା ସହିତ ସେ ମୂର୍ଚ୍ଛାପ୍ରାୟ ହୋଇଗଲେ । ତତ୍କ୍ଷଣାତ୍ ମୁଁ ତାଙ୍କୁ ଖଟ ଉପରେ ଶୁଆଇଦେଇ ହୃଦରୋଗ ବିଶେଷଜ୍ଞଙ୍କୁ ଘରକୁ ଡକାଇ ପଠାଇଲି । ସେ ଆସି ତାଙ୍କୁ ପରୀକ୍ଷା କଲେ ଏବଂ ତାଙ୍କର ସଂପୂର୍ଣ୍ଣ ବିଶ୍ରାମ ପାଇଁ ପରାମର୍ଶ ଦେଲେ । ଡାକ୍ତର ଦେଖିସାରିବା ପରେ ସଦାଶିବବାବୁ ଘରକୁ ଯିବାକୁ ଚାହିଁଲେ । ମାତ୍ର ମୁଁ ତାଙ୍କୁ ସେଥିରୁ ବାରଣ କଲି ଏବଂ ସେଇଦିନକ ମୋ ଘରେ ରହି ବିଶ୍ରାମ ନେବାକୁ ତାଙ୍କୁ ବାଧ କଲି । ଶେଷରେ ସେ ମୋ କଥା ମାନି ରହିଲେ । ମୁଁ ତେଣୁ ରାତିରେ ତାଙ୍କ ପୁଅ ଡଃ.ପ୍ରଭାତ ମିଶ୍ର ପାଖକୁ ଫୋନ୍ କରି ସଦାଶିବ ବାବୁଙ୍କ ସ୍ୱାସ୍ଥ୍ୟ ବିଷୟ ଜଣାଇଦେଲି ଏବଂ ବିଶେଷ ବ୍ୟସ୍ତ ନ ହେବା ପାଇଁ ମଧ ଉପଦେଶ ଦେଲି । ସେଦିନର ମୁହୂର୍ତ୍ତ ଏବଂ ତାଙ୍କର ଅନାବିଳ ସ୍ନେହକୁ ମୁଁ ଆଜି ପର୍ଯ୍ୟନ୍ତ ଭୁଲିନାହିଁ ।

ବାଚସ୍ପତି ଥିବା ସମୟରେ ମୋର ଥରେ ଦକ୍ଷିଣ ଭାରତର ବିଭିନ୍ନ ରାଜ୍ୟ ଭ୍ରମଣ କରିବାର ଏକ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ସେହି ଅନୁଯାୟୀ ମୁଁ ଓ ମୋର ପତ୍ନୀ ଡଃ. ସରସ୍ୱତୀ ସ୍ୱାଇଁ ଦକ୍ଷିଣ ଭାରତର ତିନୋଟି ମୁଖ୍ୟ ରାଜ୍ୟ - ଆନ୍ଧ୍ର, କର୍ଣ୍ଣାଟକ ଓ ତାମିଲନାଡୁ ବୁଲିବାକୁ ଯାଇଥିଲୁ । ଭାରତ ସରକାରଙ୍କ ପ୍ରୋଟୋକଲ ଅନୁଯାୟୀ ମୁଁ ମାଡ୍ରାସରେ ପହଞ୍ଚିବାରେ ମୋତେ ଗଭର୍ଣ୍ଣର ହାଉସରେ ହିଁ ରହିବାକୁ ପଡ଼ିଲା । ସେହିଠାରୁ ଆମେ ମାଡ୍ରାସର ବିଭିନ୍ନ ମନ୍ଦିର, ଦେବାଳୟ ତଥା ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଦେଖିବାକୁ ବାହାରିଲୁ । ଏହି ସମୟରେ କାଞ୍ଚିକାମକୋଟୀ ପୀଠର ଶଙ୍କରାଚାର୍ଯ୍ୟଙ୍କ ଠାରୁ ମୁଁ ଗୋଟିଏ ପତ୍ର ପାଇଲି । ଗଭର୍ଣ୍ଣର ହାଉସ୍ ଜରିଆରେ ଆସିଥିବା ସେ ପତ୍ରଟିରେ ମୋତେ କାଞ୍ଚୀକାମକୋଟି ପରିଦର୍ଶନରେ ଯିବାକୁ ନିମନ୍ତ୍ରଣ କରାଯାଇଥିଲା । ମୁଁ ତାଙ୍କ ଅନୁରୋଧ ରକ୍ଷାକରି ସସ୍ତ୍ରୀକ ସେଠି ପହଞ୍ଚିଲି । ପୂର୍ବରୁ ଆମେ ତାଙ୍କୁ ଜମା ଦେଖି ନଥାଉ । ସେଠାରେ ଆମେ ପହଞ୍ଚିବା କ୍ଷଣି ସେ ପୀଠର ସ୍ୱେଚ୍ଛାସେବକମାନେ ଆମକୁ ବିପୁଳ ସମ୍ବର୍ଦ୍ଧନା ଜଣାଇବା ସହିତ ଶଙ୍କରାଚାର୍ଯ୍ୟଙ୍କୁ ଭେଟିବାର ସମସ୍ତ କାର୍ଯ୍ୟକ୍ରମ ସ୍ଥିର କରିଦେଲେ । ଆମେ ଯେତେବେଳେ ତାଙ୍କୁ ଦେଖା କରିବାକୁ ଏକ ସ୍ୱତନ୍ତ୍ର କୋଠରୀକୁ ଗଲୁ ସେଠାରେ ମୁଁ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ

ହୋଇଗଲି । ତାଙ୍କର କିଛି ସ୍ୱେଚ୍ଛାସେବକ ଶଙ୍କରାଚାର୍ଯ୍ୟଙ୍କୁ ଟେକି ଟେକି ଉକ୍ତ କୋଠରୀ ମଧ୍ୟକୁ ଆଣୁଥାନ୍ତି । କୌତୁହଳବଶତଃ ତାଙ୍କ ସେକ୍ରେଟାରୀଙ୍କୁ ଶଙ୍କରାଚାର୍ଯ୍ୟଙ୍କର ବୟସ ପଚାରିଦେବାରୁ ସେ କହିଲେ ତାଙ୍କୁ ବର୍ତ୍ତମାନ ୧୦୦ରୁ ଉର୍ଦ୍ଧ୍ୱ ବୟସ ହେବ । ସେତେବେଳକୁ ସେ ପ୍ରାୟ କଥାବାର୍ତ୍ତା କରିବାକୁ ସକ୍ଷମ ନଥାନ୍ତି । ଆମେ କେବଳ ସେଠାରେ ତାଙ୍କର ପ୍ରତ୍ୟକ୍ଷ ଆଶୀର୍ବାଦ ହିଁ ଲାଭ କରିଥିଲୁ । ଶଙ୍କରାଚାର୍ଯ୍ୟଙ୍କୁ ସ୍ୱଦେହ ତଥା ସ୍ୱଚକ୍ଷୁରେ ଦେଖି ଆମେ ସେଦିନ କୃତ୍ୟ କୃତ୍ୟ ହୋଇଯାଇଥିଲୁ ।

ମୁଁ ଏକଦା ବାଲେଶ୍ୱର ଫକୀର ମୋହନ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା ଦିବସକୁ ନିମନ୍ତ୍ରିତ ହୋଇଯାଇଥିଲି । ମୁଁ ମୋ ଭାଷଣ ପ୍ରସଙ୍ଗରେ ଆଲୋଚନା କରିଥିଲି ଯେ ବର୍ତ୍ତମାନ ସାରାଦେଶରେ ଘରୋଇ ଉଦ୍ୟମରେ ଛତୁ ଫୁଟିଲା ଭଳି ଇଂଜିନିୟରିଂ ଓ ମେଡ଼ିକାଲ କଲେଜମାନ ଖୋଲାଯାଉଛି, ଏଥିରେ ଭର୍ତ୍ତି ହେବାପାଇଁ ପୂର୍ବଭଳି ହଜାର ହଜାର ଟଙ୍କା ବଦଳରେ ଏବେ ଲକ୍ଷ ଲକ୍ଷ ଟଙ୍କା ଦେବାକୁ ପଡୁଛି । ଏହିପରି ମହାରାଷ୍ଟ୍ରରେ ଖୋଲିଥିବା ଏକ ବେସରକାରୀ କଲେଜରେ କେବଳ ଭର୍ତ୍ତିହେବା ପାଇଁ ଆଡ୍‌ମିସନ୍ ଫିସ୍ ହେଉଛି ୨୭ ଲକ୍ଷ ଟଙ୍କା ବୋଲି ମୁଁ ସେମାନଙ୍କୁ କହିଲି । ଉକ୍ତ କଲେଜ ପୁଣି କ୍ୟାବିନେଟ୍‌ରେ ମନ୍ତ୍ରୀ ଥିବା ବ୍ୟକ୍ତିମାନଙ୍କର । ପୁନଶ୍ଚ, ଏହି ଅଗଣତାନ୍ତ୍ରିକ ଆଡ୍‌ମିସନ୍ ଫିସ୍ ବାବଦରେ ଛାତ୍ରମାନେ ଯେତେବେଳେ ସ୍ୱରଉତ୍ତୋଳନ କଲେ, ସେତେବେଳେ ମହାରାଷ୍ଟ୍ର ସରକାର ଏଥିପାଇଁ ଏକ କମିଟି ଗଠନ କଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି, ଏହି କମିଟିରେ ଯେଉଁମାନେ ସଭ୍ୟ ରହିଲେ ସେହିମାନେ ହିଁ ହେଉଛନ୍ତି ସେ କଲେଜର ପ୍ରକୃତ ପ୍ରତିଷ୍ଠାତା ଅର୍ଥାତ୍ ସେଥିସହିତ ସଂପୃକ୍ତ ମନ୍ତ୍ରୀମାନଙ୍କୁ ନେଇ ଗଠିତ ଉକ୍ତ କମିଟି ହିଁ ଶେଷରେ ସ୍ଥିର କରିବେ ଯେ ପିଲାମାନଙ୍କ ଠାରୁ ୨୭ଲକ୍ଷ ଟଙ୍କା ଆଡ୍‌ମିସନ୍ ଫିସ୍ ନିଆଯିବକି ନାହିଁ ! ମୁଁ ସେଦିନ ଏ ଘଟଣା ନେଇ ଉକ୍ତ ସଭାରେ ମୋ ଉଦ୍‌ବେଗ ପ୍ରକାଶ କରିଥିଲି ।

ମୋ ସ୍ୱାସ୍ଥ୍ୟ ମନ୍ତ୍ରୀତ୍ୱ ସମୟରେ ସରକାରୀ ନିୟମ ଥିଲା ଯେ ପ୍ରତ୍ୟେକ ରାଜ୍ୟକୁ କେନ୍ଦ୍ର ସରକାର ଗୋଟିଏ ଦନ୍ତ ଚିକିତ୍ସା କଲେଜ ଯୋଗାଇଦେବେ । ସେହି ନିୟମ ଅନୁସାରେ ସେ ବର୍ଷ କର୍ଣ୍ଣାଟକ ରାଜ୍ୟରେ ଡେଣ୍ଟାଲ କଲେଜ ଖୋଲାଯିବା କଥା । ସେ ସଂପର୍କୀତ ଫାଇଲ୍ ଯେତେବେଳେ ମୋ ନିକଟକୁ ଆସିଲା ମୁଁ ଜାଣିବାକୁ ପାଇଲି ଯେ କର୍ଣ୍ଣାଟକ ସରକାର ଏ ବାବଦରେ ପିଲାଙ୍କ ଠାରୁ ମୋଟା ଅଙ୍କରେ କ୍ୟାପିଟେସନ୍ ଫିଜ୍ ନେବାର ଯୋଜନା ରଖିଛନ୍ତି । ଏହାକୁ ସିଧା ସଳଖ ଲାଞ୍ଚ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ସେତେବେଳେ ଦନ୍ତ ଚିକିତ୍ସା କଲେଜ ରେ ମାର୍କସ୍ ଭିତ୍ତିରେ ବଛା ହେବା ଖୁବ୍ କାଠିକର ପାଠ ଥିଲା । ତେଣୁ, ମନ୍ତ୍ରୀମାନଙ୍କୁ ଧରାଧରି କରି ଯେ କୌଣସି ମତେ କଲେଜରେ ଭର୍ତ୍ତି ହେବାର ସମ୍ଭାବନା ଯେପରି ଥିଲା ସେଥିପାଇଁ ବ୍ୟାପକ ଲାଞ୍ଚ କାରବାରର ସୁବିଧା ମଧ୍ୟ ରହିଥିଲା । ସ୍ୱାସ୍ଥ୍ୟ ବିଭାଗର ସଚିବମାନଙ୍କ ଠାରୁ ମୁଁ ଏହି ଖବର ପାଇବା ପରେ, ପ୍ରଥମେ କର୍ଣ୍ଣାଟକ ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ଏ ସଂପର୍କରେ ଏକ ସ୍ପଷ୍ଟିକରଣ ଲୋଡ଼ିଥିଲି । ସେଥିରେ ଉଲ୍ଲେଖ ଥିଲା କର୍ଣ୍ଣାଟକ ସରକାର ଯଦି ପିଲାମାନଙ୍କ ଠାରୁ ଆଡ୍‌ମିଶନ ପାଇଁ କୌଣସି କ୍ୟାପିଟେସନ୍

ଫିଜ୍ ନ ନେବାର ପ୍ରତିଶ୍ରୁତି ଦେବେ ତାହେଲେ ତାଙ୍କୁ କେନ୍ଦ୍ରସରକାରଙ୍କ ତରଫରୁ ଦନ୍ତଚିକିତ୍ସା କଲେଜ ଖୋଲିବା ପାଇଁ ଅନୁମତି ମିଳିବ । ଭାରତ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗ ତରଫରୁ ଏ ନିର୍ଦ୍ଦେଶ ପାଇବାପରେ କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀ ବାଧ ହୋଇ ତାଙ୍କ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ମୋ ନିକଟକୁ ପଠାଇଥିଲେ ଏବଂ ତାଙ୍କ ପତ୍ରରେ ସେ କୌଣସି ପ୍ରକାର କ୍ୟାପିଟେସନ୍ ଫିଜ୍ ଗ୍ରହଣ ନକରିବା ପାଇଁ ପ୍ରତିଶ୍ରୁତି ମଧ ଦେଇଥିଲେ । ଅବଶେଷରେ କର୍ଣ୍ଣାଟକରେ ଏହି କଲେଜ ଖୋଲିବା ପାଇଁ ଅନୁମତି ମିଳିଲା ଏବଂ ସୌଭାଗ୍ୟ କ୍ରମେ ତାହା ମୋ ଦ୍ୱାରା ଉଦ୍‌ଘାଟିତ ମଧ ହେଲା । ଏହି ଘଟଣାର ପ୍ରାୟ ୧୦/୧୫ ବର୍ଷ ପରେ ମୁଁ ପୁନର୍ବାର ଜାଣିବାକୁ ପାଇଲି ଯେ କର୍ଣ୍ଣାଟକ ରାଜ୍ୟରେ ସବୁଠାରୁ ଅଧିକ କ୍ୟାପିଟେସନ୍ ଫିଜ୍ ନେଇ ପିଲାମାନଙ୍କୁ ଆଡ୍‌ମିଶନ୍ କରାଯାଉଛି ଏବଂ ବେସରକାରୀ ଲୋକଙ୍କ ଉଦ୍ୟମରେ ରାଜ୍ୟରେ ଛତୁ ଫୁଟିବା ଭଳି ମେଡ଼ିକାଲ ଓ ଇଞ୍ଜିନିୟରିଂ କଲେଜମାନ ଗଢ଼ି ଉଠୁଛି । ଦେଶରେ ଏ ଯେଉଁ ବ୍ୟଭିଚାର ଚାଲିଛି ତା'ର କ'ଣ ଅନ୍ତ ନାହିଁ ?

ଲୋକସଭାର ସ୍ପିକର ଥିବା ସମୟରେ ମୁଁ ମୋ ସ୍ତ୍ରୀଙ୍କ ସହିତ ଥରେ କର୍ଣ୍ଣାଟକ ଗସ୍ତରେ ଯାଇଥିଲି । ସେତେବେଳକୁ ଭାରତର ପୂର୍ବତନ ରାଷ୍ଟ୍ରପତି ଶ୍ରୀ ସଞ୍ଜୀବ ରେଡ୍ଡି କର୍ଣ୍ଣାଟକର ବାଙ୍ଗାଲୋର୍‌ରେ ରହୁଥାନ୍ତି । ପୂର୍ବରୁ ମୋର ଶ୍ରୀଯୁକ୍ତ ରେଡ୍ଡିଙ୍କ ସହିତ ଘନିଷ୍ଠତା ଥିଲା, କାରଣ ୧୯୬୭ ମସିହାରେ ମୁଁ ଲୋକସଭାକୁ ନିର୍ବାଚିତ ହୋଇଯିବା ବେଳକୁ ସଞ୍ଜୀବ ରେଡ୍ଡି Speaker ଥିଲେ ଏବଂ ପରେ ସେ ରାଷ୍ଟ୍ରପତି ହୋଇଥିଲେ । ତାଙ୍କ ସହିତ ମୋର ଅନ୍ତରଙ୍ଗ ସଂପର୍କଥିଲା । ତେଣୁ ଆମେ ଦୁହେଁ ଶ୍ରୀଯୁକ୍ତ ରେଡ୍ଡିଙ୍କୁ ଭେଟିବା ଲାଗି ତାଙ୍କ ବାଙ୍ଗାଲୋର୍‌ସ୍ଥିତ ବାସଭବନକୁ ଗଲୁ । ଆମକୁ ଦେଖି ସେଦିନ ତାଙ୍କ ଖୁସିର ସୀମା ନଥିଲା । ଆତିଥ୍ୟ ପ୍ରଦାନରେ ମଧ ସାମାନ୍ୟ କାର୍ପଣ୍ୟ ଦେଖାଇ ନଥିଲେ ସେ । ତେବେ ତାଙ୍କ ଆଳାପ ଆଲୋଚନା ମଧରେ ସେ ଏପରି ଏକ ବାସ୍ତବ ସତ୍ୟ ଘଟଣା ଆମ ଆଗରେ ବଖାଣିଲେ ଯାହା ଶୁଣି ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇଯାଇଥିଲି । ସେ ଭାରତର ପୂର୍ବତନ ରାଷ୍ଟ୍ରପତି ହୋଇ ମଧ ତାଙ୍କ ନାତିର ନାମଲେଖା ପାଇଁ ତାଙ୍କୁ କିପରି Capitation Fee (ଅନ୍ୟ ଅର୍ଥରେ ଯାହାକୁ ଲାଞ୍ଚ କୁହାଯିବ) ଦେବାକୁ ପଡ଼ିଥିଲା ଏବଂ ଉକ୍ତ ବିଷୟ ମନ୍ତ୍ରୀମାନଙ୍କ କାନରେ ପଡ଼ିଥିଲେ ମଧ ସେମାନେ କିପରି ତାହାର କୌଣସି ପ୍ରତିକାର କରି ନଥିଲେ ସେହି ବିଷୟ ସେ ଆମ ଆଗରେ ଅତ୍ୟନ୍ତ ଭାବପ୍ରବଣ ହୋଇ କହିପକାଇଥିଲେ । ବାସ୍ତବିକ ମୁଁ ସେଦିନ ଭାରତବର୍ଷର ଜଣେ ପୂର୍ବତନ ରାଷ୍ଟ୍ରପତିଙ୍କ ଏପରି ଦୁର୍ଦ୍ଦଶା ଦେଖି ଯେତିକି ଦୁଃଖିତ ହୋଇଥିଲି ଭାରତ ବର୍ଷର ଭବିଷ୍ୟତ ପିଢ଼ି ଓ ତାଙ୍କର ଶିକ୍ଷା ନେଇ ତା'ଠାରୁ ଅଧିକ ଆତଙ୍କିତ ହୋଇପଡ଼ିଥିଲି ।

ଏ ଘଟଣା ୧୯୭୦ ସାଲର ହେବ ବୋଧହୁଏ । ମୁଁ ସେତେବେଳକୁ ପାର୍ଲାମେଣ୍ଟର ମେମ୍ବର ଥାଏ । ସେହି ସମୟରେ ପାର୍ଲାମେଣ୍ଟ ଭିତରେ ଏପରି ଏକ ଘଟଣା ଯାହା ମୁଁ ଆଜି ପର୍ଯ୍ୟନ୍ତ ମନେ ରଖିଛି । ସେତେବେଳେ ବଙ୍ଗଳାର ମହାବିପ୍ଳବୀ ସୂର୍ଯ୍ୟସେନ୍ (ମୋଷ୍ଟର ଦା)ଙ୍କର ଜଣେ ପ୍ରିୟ ଶିଷ୍ୟ ଥିଲେ । ତାଙ୍କ ନାମ ହେଉଛି ଦୀନେଶ୍ ଦାସଗୁପ୍ତା । ସେ

ମୋର ଅତ୍ୟନ୍ତ ପୂଜ୍ୟାସ୍ପଦ ବ୍ୟକ୍ତିଥିଲେ । ଏବେ ସେ ପ୍ରାୟ ୯୩ ବର୍ଷରେ ପଦାର୍ପଣ କଲେଣି । ତଥାପି ମୁଁ ତାଙ୍କୁ ଜଣେ ଯୁବକ ବୋଲି କହେ । ବାର୍ଦ୍ଧକ୍ୟରେ ପହଞ୍ଚ ସୁଦ୍ଧା ସେ ଏବେ ଯେପରି ଜଣେ ଯୁବକ ଭଳି ନିଜର ଉଦ୍ଦାମତା ପ୍ରଦର୍ଶନ କରନ୍ତି ତାହା ବାସ୍ତବିକ ଅନ୍ୟଠାରେ ବିରଳ । ସେ ୧୯୭୦ ସାଲରେ ବଙ୍ଗଳାର ଆଦିବାସୀ ଅଧ୍ୟୁଷିତ ଲୋକମାନଙ୍କର ଏକ ଦାବୀ ନେଇ ପାର୍ଲାମେଣ୍ଟ ଭବନ ଆଗରେ ଗୋଟିଏ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଏଥିପାଇଁ ପୂର୍ବରୁ ପ୍ରାୟ ୫୦ ସରିକି ଆଦିବାସୀ ମୋ ଦିଲ୍ଲୀସ୍ଥ କ୍ୱାଟରରେ ମଧ କୁଣିଆଁ ହୋଇଥାନ୍ତି । ସରକାରଙ୍କୁ ପ୍ରକୃତ ସମସ୍ୟା ବିଷୟରେ ଅବଗତ କରାଇବା ଥିଲା ସେମାନଙ୍କର ପ୍ରକୃତ ଲକ୍ଷ୍ୟ । ମାତ୍ର ସେଦିନ ପାର୍ଲାମେଣ୍ଟ ସମ୍ମୁଖସ୍ଥ ସେ ବିକ୍ଷୋଭ ଏପରି ଆକାର ଧାରଣ କଲା ଯେ ପୋଲିସ୍‌କୁ ଲାଠି ଚାଳନା କରିବାକୁ ପଡ଼ିଲା । ବହୁ କର୍ମୀ ପୋଲିସ୍ ଲାଠିଚାଳନାରେ ରକ୍ତାକ୍ତ ହେଲେ ଏବଂ ସେଥିରେ ସମାଜବାଦୀ ନେତା ରାଜନାରାୟଣ ଙ୍କ ଗୋଡ଼ ଭାଙ୍ଗିଗଲା । ସୌଭାଗ୍ୟ କ୍ରମେ ସେତେବେଳକୁ ପାର୍ଲାମେଣ୍ଟ ଅଧିବେଶନ ଚାଲିଥାଏ । ମୁଁ ସେଦିନ ସେହି କର୍ମୀମାନଙ୍କର ରକ୍ତଭିଜା ଲୁଗାକୁ ନେଇ ପାର୍ଲାମେଣ୍ଟ ମଧକୁ ପ୍ରବେଶ କଲାବେଳକୁ ଉପବାଚସ୍ପତି ବାଚସ୍ପତି ଆସନରେ ବସିଥାନ୍ତି । ସେ ମୋର ଏ ଉଗ୍ରରୂପ ଦେଖି ତତ୍‌କ୍ଷଣାତ୍ ମୋତେ କହିବା ପାଇଁ ଅନୁମତି ଦେଇଦେଲେ । ମୁଁ ସେ ଘଟଣା ସଂପର୍କରେ ଖୁବ୍ ଉତେଜିତ ହୋଇ ମୋ ବକ୍ତବ୍ୟ ଏପରି ପେଶ୍ କଲିଯେ ଘଟଣାଟି ଉପରେ ଗୃହକୁ ମୁଲତବୀ ରଖାଯାଇ ତା ଉପରେ ଭୋଟ ଗ୍ରହଣ କରାଗଲା । କମ୍ୟୁନିଷ୍ଟ ପାର୍ଟି ଯଦି ସେଦିନ ସରକାରଙ୍କୁ ସମର୍ଥନ ଦେଇ ନଥାଆନ୍ତା ତାହେଲେ ହୁଏତ ସରକାର ଭାଙ୍ଗି ଯାଇଥାନ୍ତା । ସେତେବେଳକୁ ଡଃ. ରାମସେବକ ସିଂ ସଂସଦୀୟ ବ୍ୟାପାର ମନ୍ତ୍ରୀ ଥାଆନ୍ତି । ସରକାରଙ୍କୁ ବଞ୍ଚାଇବା ଦାୟିତ୍ୱ ଥାଏ ତାଙ୍କର । କିନ୍ତୁ ସେଦିନ ସେ ମୋର ଭାବପ୍ରବଣତାକୁ ଉପଲବ୍ଧି କରି ସଂସଦରେ ଏ ବିଷୟ ଚର୍ଚ୍ଚା ହେବାପାଇଁ ଯେଉଁ ସୁଯୋଗ ସୃଷ୍ଟି କରିଥିଲେ ତାହା ମୋତେ ଖୁବ୍ ଅଭିଭୂତ କରିଥିଲା ଏବଂ ସ୍ୱାଭାବିକ ଭାବରେ ଏହି ଘଟଣା ପରେ ତାଙ୍କ ସହିତ ମୋର ଘନିଷ୍ଠତା ଆହୁରି ବୃଦ୍ଧି ପାଇଥିଲା ।

୧୯୬୭ ରେ ମୁଁ ଓଡିଶାରୁ ନିର୍ବାଚିତ ହୋଇ ଦିଲ୍ଲୀ ଗଲାପରେ ସେଠାରେ ମୋର ଗୋଟିଏ ଓଡିଆ ପରିବାର ସହିତ ଖୁବ୍ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା । ସମ୍ଭବତଃ ମୋ ନିଜ ପରିବାର ଛାଡ଼ିଦେଲେ ତା'ପରେ ଯାହାକୁ ମୁଁ ଏକ ପରିବାର ବୋଲି ଭାବେ ସେଇଟି ହେଉଛି ମିଶ୍ର ପରିବାର । ଶ୍ରୀ ଶ୍ରୀନିବାସ ମିଶ୍ର, ଡଃ ସୁଶୀଳା ମିଶ୍ର ତାଙ୍କର ଦୁଇ ପୁଅ ଓ ଗୋଟିଏ ଝିଅକୁ ନେଇ ଗଠିତ ଏହି ମିଶ୍ର ପରିବାର । ଶ୍ରୀଯୁକ୍ତ ମିଶ୍ର ଜଣେ ବୈଜ୍ଞାନିକ ଥିଲେ । ପୂର୍ବରୁ ଅବଶ୍ୟ ମୁଁ ତାଙ୍କୁ ଜାଣିଥିଲି । କାରଣ ମୁଁ ରେଭେନ୍‌ସା କଲେଜରେ ପାଠ ପଢ଼ିବା ବେଳେ ଶ୍ରୀଯୁକ୍ତ ମିଶ୍ର ପଦାର୍ଥ ବିଜ୍ଞାନରେ ଅଧାପକ ଥିଲେ । ସେହିପରି ତାଙ୍କ ସ୍ତ୍ରୀ ସୁଶୀଳା ମିଶ୍ର ଯାହାଙ୍କୁ କି ମୁଁ ସ୍ନେହରେ ସୁଶୀଳା ନାନୀ ବୋଲି ଡାକେ ସେ ମଧ ମୋ ସ୍ତ୍ରୀ ଡଃ ସରସ୍ୱତୀ ସ୍ୱାଇଁଙ୍କର ରେଭେନ୍‌ସା କଲେଜରେ ସହପାଠିନୀ ଥିଲେ । ଉଭୟଙ୍କ ମଧରେ ବଡ଼ ଭଉଣୀ ଓ ସାନ ଭଉଣୀର ସଂପର୍କ ଗଠି ଉଠିଥିଲା । ତେଣୁ ଦିଲ୍ଲୀରେ ରହଣୀ ସମୟରେ ସେ ସଂପର୍କ ଦ୍ୱିଗୁଣିତ

ହୋଇଥିଲା । ସେହିଠାରେ ଥିବା ସମୟରେ ଶ୍ରୀଯୁକ୍ତ ମିଶ୍ରଙ୍କ ହୃଦରୋଗ ରେ ଆକସ୍ମିକ ବିୟୋଗ ହୋଇଥିଲା । ସେଥିରେ ସୁଶୀଳା ନାନୀ ଭାଙ୍ଗି ନପଡ଼ି ପିଲାମାନଙ୍କ ସଂପୂର୍ଣ୍ଣ ଦାୟିତ୍ୱ ନିଜେ ବହନ କରିଥିଲେ । ଦୁଇପୁଅ ଓ ଝିଅକୁ ଉଚ୍ଚ ଶିକ୍ଷିତ କରାଇଥିଲେ । ସଂପ୍ରତି ଦୁଇପୁଅ ଆମେରିକାରେ ଏବଂ ଝିଅ ମିନି ଡାକ୍ତରୀ ପଢ଼ି ଲଣ୍ଡନରେ ଏକ ଉଚ୍ଚ ପଦବୀରେ ଅବସ୍ଥାପିତ । ସୁଶୀଳା ନାନୀଙ୍କ ଭଳି ସ୍ନେହୀ ଓ ସ୍ୱାଧୀନ ଚେତା ନାରୀ ମୁଁ ମୋ ଜୀବନରେ ଖୁବ୍ କମ୍ ଦେଖିଛି । ନିଜର ପିଲାମାନଙ୍କୁ ସେ ଏଭଳି ଉପାଦାନରେ ବଢ଼ାଇଛନ୍ତି ଯେ ସେମାନେ ସୁଦୂର ଆମେରିକା ଓ ଲଣ୍ଡନ ଇତ୍ୟାଦିରେ ରହୁଥିଲେ ମଧ୍ୟ ପ୍ରତ୍ୟେକ ବର୍ଷ ମା'ଙ୍କୁ ଦେଖିବା ଲାଗି ଯେମିତି ହେଉ ଓଡ଼ିଶା ଆସିବେ । ସେମାନଙ୍କ ମନ ମଧ୍ୟରେ ଥିବା ଓଡିଶା ପ୍ରୀତିକୁ ମୁଁ ବହୁବାର ଲକ୍ଷ୍ୟ କରିଛି । ମା' ଯେପରି ସେମାନଙ୍କ ଜୀବନର ସବୁକିଛି, ଏହିଭାବ ନିରନ୍ତର ପ୍ରବାହିତ ତାଙ୍କ ପିଲାମାନଙ୍କ ଠାରେ । ଏବେ ସେ ଭୁବନେଶ୍ୱରେ ଏକାକୀ ରହୁଛନ୍ତି । ମାତ୍ର ସେଥିରେ ତାଙ୍କର ଦୁଃଖ ନାହିଁ । ତାଙ୍କ ଭଳି ସାହାସୀ ଓ ପ୍ରଚଣ୍ଡ ଆତ୍ମବିଶ୍ୱାସ ସଂପନ୍ନା ନାରୀ ମୁଁ ଆଜି ପର୍ଯ୍ୟନ୍ତ ଦେଖିନାହିଁ ।

ଜରୁରୀକାଳୀନ ପରିସ୍ଥିତି ସମୟରେ ମୁଁ ଗିରଫ ହୋଇ ଅମ୍ବାଲା ଜେଲ୍‌ରେ ରହୁଥିଲି, ସେହି ସମୟରେ ମୋର ଜଣେ ସହଯୋଗୀ ବନ୍ଦୀ ଭାବରେ ମୋ ସହିତ ରହୁଥିଲେ ଶ୍ରୀ ଅରୁଣ ଜେଟ୍‌ଲି । ପରେ ସେ ବି.ଜେ.ପି. ନେତୃତ୍ୱରେ ଗଠିତ ସରକାରରେ ମନ୍ତ୍ରୀ ଥିଲେ । ମୁଁ ରହିବାର କିଛି ଦିନ ପରେ ସେ ଆସି ମୋ ସହିତ ସେହି କୋଠରୀରେ ରହିଲେ । ପୂର୍ବରୁ ସେ ଜଣେ ଭଲ ଛାତ୍ର ନେତା ଥିଲେ । ତେଣୁ ସ୍ୱାଭାବିକ ଭାବରେ ସେ ମୋ ଆଡ଼କୁ ଆକର୍ଷିତ ହୋଇଯାଇଥିଲେ । ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱର ସେତୁ ଟିଏ ସ୍ଥାପିତ ହୋଇଯାଇଥିଲା ସେହି ଜେଲ କୋଠରୀ ମଧ୍ୟରେ । ଏକାଠି ଜଳଖିଆ ଖାଇବା, ହସଖୁସି ସବୁ ଏକାଠି । ଘଣ୍ଟା ଘଣ୍ଟା ଧରି ଦେଶର ସମସ୍ୟା, ଜାତିର ସମସ୍ୟା, ଦେଶର ଭବିଷ୍ୟତ ଦୃଷ୍ଟିଭଂଗୀ କ'ଣ ଓ ଯୁବକମାନେ କିପରି ହେବା ଉଚିତ ଇତ୍ୟାଦି ବିଷୟରେ ଖୁବ୍ ଆଲୋଚନା ହୁଏ । ଏହିପରି ଆଠଦିନ ବିତିଲା ପରେ ଦିନେ ହଠାତ୍ ଅରୁଣ ଜେଟ୍‌ଲିଙ୍କୁ ଅନ୍ୟ ଏକ କୋଠରୀକୁ ଯିବା ପାଇଁ ନିର୍ଦ୍ଦେଶ ଆସିଲା । ମୁଁ ଅନୁସନ୍ଧାନ କରି ତାର କାରଣ ସମ୍ପର୍କରେ ଜାଣିବାକୁ ପାଇଲି ଯେ ସେ ଥିଲେ ଆର୍.ଏସ୍.ଏସ୍ ର ଜଣେ ସକ୍ରିୟ କର୍ମୀ । ଅନ୍ୟପକ୍ଷରେ ମୁଁ ଜଣେ ସୋସାଲିଷ୍ଟ । ସେ ମୋ ସହିତ ବେଶି ଦିନ ଏକତ୍ର ରହିଲେ ମୋ ଦ୍ୱାରା କାଳେ ପ୍ରଭାବିତ ହୋଇଯିବେ ସେଥିନେଇ ତାଙ୍କୁ ଅନ୍ୟ କୋଠରୀକୁ ସ୍ଥାନାନ୍ତରିତ କରାଯାଇଥିଲା । ତେବେ ଅରୁଣ ଜେଟ୍‌ଲି ଯେଉଁ ଦିନ ମୋ ଠାରୁ ବିଦାୟ ନେଇଥିଲେ ସେ ଦୁଃଖଦ ମୁହୂର୍ତ୍ତ ଏ ଯାଏ ସୁଦ୍ଧା ମୋ ମନରେ ସ୍ମୃତି ହୋଇ ରହିଛି ।

୧୯୪୮ ମସିହା କଥା, ମୁଁ ରେଭେନ୍‌ସା ଛାତ୍ର ୟୁନିୟନ୍‌ର ପ୍ରେସିଡେଣ୍ଟ ଥାଏ । ସେହି ସମୟରେ ଡଃ ସର୍ବପଲ୍ଲୀ ରାଧା କିଷନନ୍ ବିଶ୍ୱବିଦ୍ୟାଳୟ କମିଶନ୍‌ର ଚେୟାରମ୍ୟାନ୍ ଥାଆନ୍ତି ଏବଂ ଯୋଗକୁ କଟକ ଆସିଥାନ୍ତି । ମୁଁ ତାଙ୍କୁ ଭେଟି ରେଭେନ୍‌ସା କଲେଜକୁ ଆସିବା ପାଇଁ ଅନୁରୋଧ ଜଣାଇଥିଲି । ସୌଭାଗ୍ୟବଶତଃ ସେ ମଧ୍ୟ ଆସିଥିଲେ । ବାସ୍ତବିକ

ସେହି ଦିନଟି ଥିଲା ମୋ ପାଇଁ ଏକ ଅଭୁଲା ଘଟଣା । ଜୀବନରେ ପ୍ରଥମ ଥର ପାଇଁ ମୁଁ ସେଦିନ ଇଂରାଜୀରେ ଭାଷଣ ଦେଇଥିଲି ଏବଂ ତାହା କୁଆଡେ ଖୁବ୍ ଉଚ୍ଚ କୋଟୀର ଓ ପ୍ରାସଙ୍ଗିକ ହୋଇଥିଲା ବୋଲି ପରେ ଶୁଣିବାକୁ ପାଇଲି । ବଡ଼ ଆଶ୍ଚର୍ଯ୍ୟର କଥା ମୁଁ ମୋ ଭାଷଣରେ ଦେଶର ଯେଉଁ ସମସ୍ୟା ସଂପର୍କରେ ସେଦିନ କହିଥିଲି ଡଃ ରାଧାକିଷନନ୍ ମଧ ତାଙ୍କ ଭାଷଣରେ ସେହି ପ୍ରସଙ୍ଗକୁ ଆହୁରି ପରିବର୍ଦ୍ଧିତ କରି କହିଥିଲେ । ଦେଶର ଉଚ୍ଚସ୍ତରରେ ଚାଲିଥିବା ଦୁର୍ନୀତି ସଂପର୍କରେ ଡଃ ରାଧାକ୍ରିଷନ୍ ସେଦିନ କଟୁ ସମାଲୋଚନା କରିଥିଲେ । ପରେ ସେ ଦେଶର ରାଷ୍ଟ୍ରପତି ହୋଇଥିଲେ କିନ୍ତୁ ସେତେବେଳେ ପୁନଶ୍ଚ ତାଙ୍କର ସାନ୍ନିଧ ଲାଭ କରିବା ମୋ ଭାଗ୍ୟରେ ଜୁଟି ନଥିଲା ।

ମୁଁ ଲୋକସଭାରେ ଥିବା ସମୟରେ ଦେଶର ଅନ୍ୟାନ୍ୟ ରାଷ୍ଟ୍ରପତିଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିବା ସୁଯୋଗ ପାଇଥିଲି । ମୁଁ ବାଚସ୍ପତି ଥିବା ସମୟରେ ଭେଙ୍କଟରମଣ ରାଷ୍ଟ୍ରପତି ଥିଲେ । ତେଣୁ ତାଙ୍କ ସହିତ ମୋର ସ୍ୱାଭାବିକ ଭାବରେ ଖୁବ୍ ଉତ୍ତମ ସଂପର୍କ ଗଢ଼ି ଉଠିଥିଲା । ଲୋକସଭାରେ ଘଟୁଥିବା ବିଭିନ୍ନ ଘଟଣା କିମ୍ବା କୌଣସି ସମସ୍ୟା ଜନିତ ଜଟିଳ ପରିସ୍ଥିତି ମୋ ନିକଟରେ ଦେଖାଦେଲେ ମୁଁ ତାଙ୍କ ସହିତ ପରାମର୍ଶ କରି ନିଷ୍ପତ୍ତି ମାନ ଗ୍ରହଣ କରୁଥିଲି । ସେକ୍ରେଟାରୀ ଜେନେରାଲ ସୁବାସ୍ କାଶ୍ୟପଙ୍କୁ କେନ୍ଦ୍ରକରି ଉପୁଜିଥିବା ସମସ୍ୟା, ସୁପ୍ରିମକୋର୍ଟର ଜଜ୍ ରାମସ୍ୱାମୀଙ୍କୁ ପାର୍ଲାମେଣ୍ଟରେ ଭର୍ତ୍ସନା କରିବା ଇତ୍ୟାଦି ଭିନ୍ନ ଭିନ୍ନ ଘଟଣାରେ ମୁଁ ତାଙ୍କର ମୂଲ୍ୟବାନ ପରାମର୍ଶ ଅନୁସାରେ କାର୍ଯ୍ୟ କରିଥିଲି । ପୂର୍ବତନ ରାଷ୍ଟ୍ରପତି ଡଃ ଶଙ୍କର ଦୟାଲ ଶର୍ମାଙ୍କ ସହିତ ସେହିପରି ମୋର ଖୁବ୍ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା । ମୁଁ ବାଚସ୍ପତି ଥିବା ସମୟରେ ସେ ଥିଲେ ଉପରାଷ୍ଟ୍ରପତି ତଥା ରାଜ୍ୟ ସଭାର ଚେୟାରମ୍ୟାନ । ତେଣୁ ଉଭୟଙ୍କ ମଧ୍ୟରେ ସମ୍ପର୍କ ଖୁବ୍ ଭଲଥିଲା, ପରେ ସେ ହେଲେ ରାଷ୍ଟ୍ରପତି । ବିଶେଷ କରି ସେ ସନ୍ଥ ଜୀବନୀ ପଢ଼ିବାକୁ ଖୁବ୍ ଭଲ ପାଆନ୍ତି । ମୁଁ ଯେତେବେଳେ ତାଙ୍କୁ ଭେଟିବାକୁ ଯାଏ ସେ ମୋତେ ମିଠା ଖାଇବାକୁ ଦିଅନ୍ତି ଏବଂ ତା ସହିତ ସନ୍ଥ ଜୀବନୀ ମଧ ପଢ଼ିବାକୁ ଉପହାର ଦିଅନ୍ତି । ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେବାପରେ ମଧ ତାଙ୍କ ସହିତ ମୋର ସମ୍ପର୍କ ଅତୁଟ ରହିଥିଲା ।

ରାଷ୍ଟ୍ରପତି ଜୈଲ୍ ସିଂ ଏବଂ କେ. ଆର. ନାରରାୟଣନ୍ ଙ୍କ ସହିତ ମୋର ସମ୍ପର୍କ ଖୁବ୍ ଘନିଷ୍ଠ ଥିଲା । ଜ୍ଞାନୀ ଜୈଲ୍ ସିଂ ହେଉଛନ୍ତି ଭାରତର ଅନ୍ୟତମ ରାଷ୍ଟ୍ରପତି ଯିଏ କି ଖୁବ୍ ଦରିଦ୍ରତମ ପରିବାରରୁ ଆସିଥିଲେ । ଇନ୍ଦିରାଗାନ୍ଧୀଙ୍କ ଦ୍ୱାରା ସେ ରାଷ୍ଟ୍ରପତି ମନୋନୀତ ହୋଇଥିଲେ । ତେବେ ସେ ରାଷ୍ଟ୍ରପତି ପଦବୀରୁ ଅବ୍ୟାହତି ନେବା ପରେ ହିଁ ତାଙ୍କ ସହିତ ମୋର ବନ୍ଧୁତା ହୋଇଥିଲା । ଭାରତ ତିବ୍ବତ ମୈତ୍ରୀ ସଂଘର ସଭାରେ ସେ ତିବ୍ବତ ସମ୍ପର୍କରେ ଯେଉଁ ଭାଷଣ ଦେଇଥିଲେ ତାହା ତତ୍କାଳୀନ ଭାରତ ସରକାରଙ୍କୁ ସୁହାଇ ନଥିଲା । ମାତ୍ର ସେ ସତକଥା କହିବାକୁ ଆଦୌ ପଛାଇ ନଥିଲେ । ସେହିପରି ସେ ଆମମାନଙ୍କ ସହିତ ମିଶି ଭାରତୀୟ ଭାଷାମାନଙ୍କ ସପକ୍ଷରେ ନିଜର ଦୃଢ଼ ମତ ପୋଷଣ କରିଥିଲେ ଏବଂ ସେହି ଦୃଷ୍ଟିରୁ ତାଙ୍କ ସହିତ ମୋର ବନ୍ଧୁତା ଗଢ଼ିଉଠିଥିଲା ।

ଭାରତର ଅନ୍ୟତମ ରାଷ୍ଟ୍ରପତି ଶ୍ରୀଯୁକ୍ତ ନାରାୟଣନ୍ ମୋ ବିଚାରରେ ଜଣେ ସଫଳ

ବ୍ୟକ୍ତିତ୍ୱ । ନିଜେ ରାଷ୍ଟ୍ରପତି ଥିବା ସମୟରେ ମଧ ସେ ଦେଶରେ ଉଦାରୀକରଣର କୁପ୍ରଭାବ ସଂପର୍କରେ ବିଭିନ୍ନ ଭାଷଣ ଦେଇଛନ୍ତି, ଦଳିତ ଓ ନିମ୍ନ ବର୍ଗର ଲୋକମାନଙ୍କର ଜୀବନ ଧାରଣ ମାନ ବଢ଼ାଇବା ପାଇଁ ମଧ ସେ ସ୍ୱରଉତ୍ତୋଳନ କରିଛନ୍ତି । ତାଙ୍କ ଭଳି ଜଣେ ଜ୍ଞାନୀ ଓ ପଛୁଆ ବର୍ଗର ଲୋକମାନଙ୍କ ପାଇଁ କାର୍ଯ୍ୟ କରୁଥିବା ବ୍ୟକ୍ତି ମୁଁ ଖୁବ୍ କମ୍ ଦେଖିଛି ଏବଂ ସମ୍ଭବତଃ ସେଥିପାଇଁ ତାଙ୍କ ସହିତ ମୋର ଆତ୍ମିକ ସଂପର୍କ ଗଢ଼ି ଉଠିଥିଲା ।

ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥାଆନ୍ତି । ସେହି ସମୟରେ ନିର୍ବାଚନ ହେବାରୁ ସେ ପୁଣି ବିଧାନସଭା ପାଇଁ ବଡ଼ଚଣାରୁ କଂଗ୍ରେସ ପ୍ରାର୍ଥୀ ହୋଇଥାଆନ୍ତି । ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରୁଥାଆନ୍ତି ମୋର ପରମବନ୍ଧୁ ସମାଜବାଦୀ, ନୃତତ୍ତ୍ୱବିତ୍ ସ୍ୱର୍ଗତ ଡ: କୁଳମଣି ମହାପାତ୍ର । (ପରବର୍ତ୍ତୀ କାଳରେ ସେ ଉତ୍କଳ ସର୍ବୋଦୟ ମଣ୍ଡଳର ସଭାପତି ହୋଇଥିଲେ ।) ସେ ସମୟରେ ସେ ଥାଆନ୍ତି ସମାଜବାଦୀ ଆନ୍ଦୋଳନର ଜଣେ ଆଗୁଆ ଯୁବନେତା । ତାଙ୍କ ପାଇଁ ପ୍ରଚାର କରିବାକୁ ମୁଁ ଯାଇଥାଏ । ସେହି ନିର୍ବାଚନ ପ୍ରଚାର ଭିତରେ ଥରେ ମୁଁ ଓ ନବବାବୁ ସାମ୍ନା ସାମ୍ନି ହୋଇଗଲୁ । ମୁଁ ନବବାବୁଙ୍କୁ ଯେଉଁ ଅବସ୍ଥାରେ ଦେଖିଲି ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ସେ ଫରିକଛା ମାରି ଦେଇ ଗୋଟାଏ ସାଇକେଲ ପେଲି ନିର୍ବାଚନ ପ୍ରଚାର କାର୍ଯ୍ୟରେ ଧପାଲିଛନ୍ତି । ମୋ ସହିତ ଦେଖା ହୋଇଯିବାରୁ ସାଇକେଲରୁ ଓହ୍ଲାଇପଡ଼ି ପଚାରିଲେ, "କ'ଣ ? କେମିତି ଚାଲିଛି ?" ମୁଁ ଓଲଟି ପଚାରିଲି, "ଆପଣଙ୍କର କେମିତି ଚାଲିଛି ?" ସେ କହିଲେ, "ଦେଖୁଛ ତ, ପ୍ରଚାରରେ ଲାଗିଯାଇଛି ।" ଭାରତର କୌଣସି ସ୍ଥାନରେ ମଧ ଲୋକେ କିମ୍ବା ନେତା ବିଶ୍ୱାସ କରିବେ ନାହିଁ ଯେ ଜଣେ ମୁଖ୍ୟମନ୍ତ୍ରୀ ଥାଇ ସୁଦ୍ଧା ନିଜ ନିର୍ବାଚନ ପ୍ରଚାର ସାଇକେଲ୍‌ରେ ବୁଲି କରୁଥିବେ । ଏମିତି ଥିଲେ ନବବାବୁ ।

ରାଜ ନୀତିରେ ଏପରି କେତେକ ବ୍ୟକ୍ତି ଅଛନ୍ତି ଯେଉଁମାନେ କ୍ଷମତା ପାଇଁ ନୀତି ଆଦର୍ଶକୁ ମଧ ଜଳାଞ୍ଜଳି ଦେଇଦିଅନ୍ତି, ମାତ୍ର ଆଉ କେତେକ ଋଷି ପ୍ରତିମ ବ୍ୟକ୍ତି ଅଛନ୍ତି ଯେଉଁମାନେ ଆଦର୍ଶ ପାଇଁ କ୍ଷମତାକୁ ଅତ୍ୟନ୍ତ ତୁଚ୍ଛ ମନେ କରନ୍ତି । ନବକୃଷ୍ଣ ଚୌଧୁରୀ ସେହିଭଳି ଜଣେ ଆଦର୍ଶ ବ୍ୟକ୍ତିତ୍ୱ । ଏକଦା ସେ ମୁଖ୍ୟ ମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରେ ଅନୁଗୁଳରେ ରହୁଥାନ୍ତି । ସେହି ସମୟରେ ଦିନେ ଓଡ଼ିଶାର ପୂର୍ବତନ କଂଗ୍ରେସ ନେତା ଶ୍ରୀ ବନମାଳୀ ପଟ୍ଟନାୟକ ତାଙ୍କୁ ଭେଟିବାକୁ ଅନୁଗୁଳ ଯାଇଥିଲେ । ସେଠାରେ ପହଞ୍ଚିଲା ପରେ ସୌଜନ୍ୟତା ଦୃଷ୍ଟିରୁ ନବବାବୁ ତାଙ୍କୁ ଆସିବାର କାରଣ ସଂପର୍କରେ ପଚାରିଲେ । ବନମାଳୀବାବୁ ନବବାବୁଙ୍କୁ ଖୁବ୍ ଭଲ ଭାବରେ ଜାଣନ୍ତି । ତାଙ୍କ ପ୍ରକୃତି ସହିତ ମଧ ସେ ବେଶ୍ ପରିଚିତ । ତେଣୁ ସେ ଖୁବ୍ ଡରି ଡରି ଅତି ସନ୍ତର୍ପଣରେ କହିଲେ ନବବାବୁ ! ଆପଣ ମୁଖ୍ୟମନ୍ତ୍ରୀ ନହେଲେ ନାହିଁ, ଏବେ ଗଭର୍ଣ୍ଣର ହେବା ପାଇଁ ରାଜି ହୁଅନ୍ତୁ ।" ଏତିକି କଥା ତାଙ୍କ ପାଟିରୁ ବାହାରିଛି କି ନାହିଁ ତା ପରେ ତ ନବବାବୁଙ୍କୁ ଦେଖିବ କିଏ ? ଏକାବେଳେକ ରାଗି ପଞ୍ଚମ । ଏପରିକି ପାଟିରୁ ତାଙ୍କର ବାହାରି ପଡିଲା ଅନେକ ଅସଭ୍ୟ ଭାଷା । ଗୋଳମାଳ ପାଟିତୁଣ୍ଡ ଶୁଣି ଘରଭିତରୁ ମାଳତୀ ଦେବୀ ଦୌଡି ଆସିଲେ ଏବଂ କହିଲେ, "ବାପି !

(ନବବାବୁଙ୍କୁ ମାଳତୀ ଦେବୀ 'ବାପି' ବୋଲି ସମ୍ବୋଧନ କରନ୍ତି) ସିଏ ପରା ବନମାଳୀ! କାହାକୁ କଣ କହୁଛ? ତୁମର କଣ ହିତାହିତ ଜ୍ଞାନ ରହୁନାହିଁ? ତା ପରେ ତ ପୁଣି ଆରମ୍ଭ ହୋଇଗଲା ସେହି ଦୋଅକ୍ଷରୀ ଅଶ୍ରାବ୍ୟ ଗାଳିର ବର୍ଷା ।" ପ୍ରଚଣ୍ଡ ରାଗି କରି ନବବାବୁ କହିଲେ, "ହଇରେ, ବନମାଳୀ ଆସିଛି ମୋତେ ଗଭର୍ଣ୍ଣର କରାଇବାକୁ?" ନବବାବୁ ଥିଲେ ଜଣେ ସେହିଭଳି ବ୍ୟକ୍ତି ଯିଏ କି ମୁଖ୍ୟମନ୍ତ୍ରୀ ହେବାପାଇଁ ଜବାହାରଲାଲ ନେହୁରୁଙ୍କ ଅନୁରୋଧକୁ ମଧ ପ୍ରତ୍ୟାଖାନ କରିଦେଇଥିଲେ । ତେଣୁ ଗଭର୍ଣ୍ଣର ପଦବୀ ତାଙ୍କ ପାଇଁ କିଛି ନଥିଲା । ବରଂ ଗଭର୍ଣ୍ଣର ପଦବୀ ତାଙ୍କ ଆଦର୍ଶର ପରିପନ୍ଥୀ ହୋଇଥିବାରୁ ସେ ସେଦିନ ବନମାଳୀ ବାବୁଙ୍କ ଉପରେ ରାଗିଯାଇଥିଲେ ।

ଏହି ପରିପ୍ରେକ୍ଷୀରେ ମୁଁ ଆଉ ଏକ ଉଦାହରଣ ଦେଇପାରେ ଯେ କ୍ଷମତା ପାଇଁ ବେଳେ ବେଳେ କିପରି ବୁଦ୍ଧିଜୀବି ଚିନ୍ତା ନାୟକ ମାନେ ମଧ ପଥଭ୍ରଷ୍ଟ ହୋଇଥାନ୍ତି । ପ୍ରଖ୍ୟାତନାମା କଂଗ୍ରେସ ନେତା ତଥା ବୁଦ୍ଧିଜୀବୀ ରାଜଗୋପାଳ ଚାରୀଙ୍କୁ ସମସ୍ତେ ଜାଣନ୍ତି । ସେ ହେଉଛନ୍ତି ଭାରତର ପ୍ରଥମ ଗଭର୍ଣ୍ଣର ଜେନେରାଲ । ରାଷ୍ଟ୍ରପତି ହେବା ପାଇଁ ଯଦିଓ ତାଙ୍କର ଅଭିଳାଷ ଥିଲା ତାହା ପୂରଣ ହୋଇନଥିଲା । ତେବେ ସେ ଜବାହାରଲାଲ ମନ୍ତ୍ରୀମଣ୍ଡଳରେ ଗୃହମନ୍ତ୍ରୀ ହୋଇଥିଲେ । ସେଥିରୁ ଅବ୍ୟାହତି ନେଲାପରେ । ସେ ମାଡ୍ରାସରେ ରହୁଥାନ୍ତି । ସେତେବେଳକୁ ଅବଶ୍ୟ ତାମିଲନାଡୁ ଓ ଆନ୍ଧ୍ରପ୍ରଦେଶ ଅଲଗା ହୋଇ ନଥାଏ । ପ୍ରଥମଥର ମାଡ୍ରାସ୍ ଆସେମ୍ବ୍ଲି ପାଇଁ ଯେଉଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା ସେଥିରେ କଂଗ୍ରେସ ପ୍ରାର୍ଥୀ ହାରିଯାଇଥିଲେ ଏବଂ ଟି. ପ୍ରକାଶମ୍ ନାମକ ଜଣେ ଅଣ କଂଗ୍ରେସ ବ୍ୟକ୍ତି ତଥା ଜାତୀୟ ଆନ୍ଦୋଳନର ନେତା ସେଥିରେ ବିଜୟ ଲାଭ କରିଥିଲେ । ଟି. ପ୍ରକାଶମ୍ ଯେଉଁ ଦଳରୁ ନିର୍ବାଚନ ଲଢ଼ି ଆସିଥିଲେ ସେହି ଦଳ ସେଥର ମଧ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ତେଣୁ ଟି. ପ୍ରକାଶମ୍ ମାଡ୍ରାସ ପ୍ରେସିଡେନ୍‌ସିର ମୁଖ୍ୟମନ୍ତ୍ରୀ ହେବା ପ୍ରାୟ ନିଶ୍ଚିତ ହୋଇଯାଇଥିଲା । ଜବାହରଲାଲ ନେହୁରୁ ଆଦୌ ଚାହୁଁନଥାନ୍ତି ଯେ ମାଡ୍ରାସ୍ ଷ୍ଟେଟ୍ ଭଳି ଷ୍ଟେଟ୍‌ର ମୁଖ୍ୟମନ୍ତ୍ରୀ ଜଣେ ଅଣକଂଗ୍ରେସ ବ୍ୟକ୍ତି ହୁଅନ୍ତୁ ବୋଲି । ତେଣୁ ସେ ଚକ୍ରକଟା କରି ସେତେବେଳେ ମାଡ୍ରାସ୍ ଷ୍ଟେଟ୍‌ର ଗଭର୍ଣ୍ଣରଙ୍କୁ ବଦଳାଇ ଦେଲେ ଏବଂ ତାଙ୍କ ସ୍ଥାନରେ ତାଙ୍କର ଅନ୍ତରଙ୍ଗ ବନ୍ଧୁ ଶ୍ରୀପ୍ରକାଶଙ୍କୁ ଗଭର୍ଣ୍ଣର କରି ଆଣିଲେ । ଉଦ୍ଦେଶ୍ୟ ଥିଲା ଯେ, ଯେହେତୁ ଶ୍ରୀପ୍ରକାଶ ତାଙ୍କର ଅନୁଗତ, ମାଡ୍ରାସର ଗଭର୍ଣ୍ଣର ହେଲାପରେ ମାଡ୍ରାସର ମୁଖ୍ୟମନ୍ତ୍ରୀ ମନୋନୀତ କରିବାରେ ସେ ପ୍ରମୁଖ ଭୂମିକା ଗ୍ରହଣ କରିପାରିବେ । ଅର୍ଥାତ୍ ଜବାହାରଙ୍କ ମନୋନୀତ ପ୍ରାର୍ଥୀଙ୍କୁ ହିଁ ସେ ମୁଖ୍ୟମନ୍ତ୍ରୀ କରିବେ । ସେହିକଥା ମଧ ଶେଷରେ ହେଲା । ସେତେବେଳେ ରାଜଗୋପାଳଚାରୀଙ୍କୁ ମାଡ୍ରାସ କଂଗ୍ରେସ ଦଳର ନେତା ରୂପେ ଦାୟିତ୍ୱ ଦିଆଗଲା ଏବଂ ପରେ ପରେ ତାଙ୍କୁ ମାଡ୍ରାସର ମୁଖ୍ୟମନ୍ତ୍ରୀ ହେବା ପାଇଁ ରାଜି କରାଇଦିଆଗଲା । ଗୋଟିଏ ପକ୍ଷରେ ନେହୁରୁ ନିଜ ସପକ୍ଷବାଦୀ ଜଣେ ଗଭର୍ଣ୍ଣରଙ୍କୁ ଆଣିଲେ ଯିଏ କି ମୁଖ୍ୟମନ୍ତ୍ରୀ ବାଛିବାରେ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିବେ । ଅନ୍ୟ ପକ୍ଷରେ ରାଜଗୋପାଳଚାରୀଙ୍କ ଭଳି ଜଣେ ଜ୍ଞାନୀ ତଥା ବୁଦ୍ଧିଜୀବୀଙ୍କୁ କ୍ଷମତା ଲାଳସା ଦେଖାଇ

ତାଙ୍କୁ ମୁଖ୍ୟମନ୍ତ୍ରୀ ବନାଇଦେଲେ ! ସେତେବେଳେ ରାଜଗୋପାଳଚାରୀଙ୍କ ପକ୍ଷରେ ଆବଶ୍ୟକୀୟ ସଂଖ୍ୟାର ଏମ୍.ଏଲ୍.ଏ. ମାନଙ୍କର ସମର୍ଥନ ନ ଥାଇ ସେ ଯେଉଁଭଳି ଭାବରେ ଜବାହାରଙ୍କ ପ୍ରରୋଚନାରେ ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିଥିଲେ, ତାହାପ୍ରତି ସେତେବେଳେ ସମସ୍ତେ ନାସିକା କୁଞ୍ଚନ କରିଥିଲେ । ଗଭର୍ଣ୍ଣରଙ୍କୁ ଖାଲି ଗୋଟିଏ ସଖୀ କଣେଇରେ ପରିଣତ କରିବା ପ୍ରକ୍ରିୟା ସମ୍ଭବତଃ ସେହିଠାରୁ ହିଁ ଆରମ୍ଭ ହୋଇଥିଲା ବୋଲି ମୁଁ କହିବି । ୧୯୫୭ରେ ସେହିପରି ଜବାହାର ନିଜ ଝିଅକୁ କଂଗ୍ରେସର ସଭାପତି ଦାୟିତ୍ୱ ଦେଇ ତାଙ୍କରି କଥାରେ ପୃଥିବୀର ପ୍ରଥମ ଗଣତାନ୍ତ୍ରିକ କମ୍ୟୁନିଷ୍ଟ ସରକାର - ନମ୍ବୁଦିପଦ ସରକାର- ର ଅବସ୍ଥା ସେହିପରି କରିଥିଲେ । କ୍ଷମତା ପାଇଁ ମନୁଷ୍ୟ କିପରି ନିଜର ନୀତି ଆଦର୍ଶ ବାହାରେ କାର୍ଯ୍ୟ କରିପାରେ, ତାହାର ଏକ ଜ୍ୱଳନ୍ତ ଉଦାହରଣ ମୁଁ ସେତିକିବେଳେ ପାଇଥିଲି । ତେଣୁ ଅତୀତରେ ମୋତେ ଯେତେଥର ବିଭିନ୍ନ ରାଜ୍ୟକୁ ଗଭର୍ଣ୍ଣର ହୋଇଯିବା ପାଇଁ ପ୍ରସ୍ତାବ ଆସିଛି ଏ ସଂପର୍କରେ ନବବାବୁଙ୍କ ଦୃଷ୍ଟିକୋଣ ଏବଂ ରାଜାଜୀଙ୍କ ବଶୀକରଣ କଥା ମୋର ସ୍ୱତଃ ମନକୁ ଆସିଯାଏ ଏବଂ ମୁଁ ସ୍ୱେଚ୍ଛାକୃତ ଭାବେ ସେ ସବୁ ପ୍ରତ୍ୟାଖ୍ୟାନ କରିଦେଇଛି ।

ଆମ ଓଡିଶା ଅନେକ ପ୍ରାକୃତିକ ସଂପଦରେ ପରିପୂର୍ଣ୍ଣ । ସେ ରତ୍ନଗର୍ଭା । ତା' ଗର୍ଭରେ ଭରି ରହିଛି ବିଭିନ୍ନ ଖଣିଜ ସଂପଦ । ଓଡିଶାର ଖଣିଜ ପଦାର୍ଥ , ବିଶେଷ କରି କ୍ରୋମ ବିଶ୍ୱବଜାରରେ ଖୁବ୍ ଆଦୃତ । ଉନ୍ନତମାନର କ୍ରୋମ ଦୃଷ୍ଟିରୁ ସାରା ପୃଥିବୀରେ ଦକ୍ଷିଣ ଆଫ୍ରିକା ପ୍ରଥମ ହୋଇଥିବା ବେଳେ ଓଡିଶାର ସୁକିନ୍ଦା ଦ୍ୱିତୀୟ ସ୍ଥାନରେ ରହିଛି । ମାତ୍ର ପରିତାପର ବିଷୟ ଏହିକି ଯେ ଆମ ପାଖରେ ଏତେ ମୂଲ୍ୟବାନ ଧାତୁ ଥାଇ ସୁଦ୍ଧା ଆମେ ଆଜି ଦରିଦ୍ର ଏବଂ ସେହି ଧାତୁ ଗୁଡିକ ଅବାଧରେ ଲୁଟ ହୋଇଚାଲିଛି । ଏ ସଂପର୍କରେ ଏକ ପ୍ରାଥମିକ ତଥ୍ୟ ମୁଁ ମୋର ଜଣେ ବଂଧୁ ,ଡଃ. ଅରୁଣ ଘୋଷ ଙ୍କ ଠାରୁ ପାଇଲି । ସେ ସୁକିନ୍ଦା ବିଷୟରେ ଗବେଷଣା କରି ଏକ ପୁସ୍ତକ ରଚନା କରିଥିଲେ ଯେଉଁଥିରେ କି କ୍ରୋମ ଗୁଡିକ କିପରି ଅଯଥାରେ ନଷ୍ଟ କରାଯାଉଛି ତାହା ବର୍ଣ୍ଣିତ ହୋଇଛି । ସୌଭାଗ୍ୟବଶତଃ ସେ ପୁସ୍ତକଟିକୁ ସେ ମୋ ଦ୍ୱାରା ଉଦ୍‌ଘାଟନ କରାଇଥିଲେ । ଉକ୍ତ ପୁସ୍ତକରେ ସେ Slater Mining ଏବଂ Scientific Mining ବିଷୟରେ ବିସ୍ତୃତ ଆଲୋଚନା କରିଛନ୍ତି ଏବଂ Scientific Mining କଲେ Mines କିପରି କ୍ଷତି ହୁଏ ନାହିଁ ଏବଂ ଏହି ପଦ୍ଧତିରେ ଯେଉଁ କ୍ରୋମ ବାହାରେ ତାହାର କିପରି ବ୍ୟବସାୟିକ ମୂଲ୍ୟ ଖୁବ୍ ଉଚ୍ଚ ଏହି କଥା ସେ ପ୍ରମାଣ କରିଛନ୍ତି । ହେଲେ ଏପର୍ଯ୍ୟନ୍ତ ସୁକିନ୍ଦା ମାଇନ୍‌ସରେ ସେହି ମାଫିଆରାଜ ଚାଲିଛି । କେନ୍ଦ୍ରସରକାରଙ୍କ ମାଇନ୍‌ସ ବିଭାଗରେ କାର୍ଯ୍ୟ କରିଥିବା ଜଣେ ଓଡିଆ I.A.S ଅଫିସରଙ୍କର ଏଥିନେଇ ସନ୍ଦେହଜନକ ମୃତ୍ୟୁ ହୋଇଯାଇଛି । ତଥାକଥିତ ପୁଞ୍ଜିପତିମାନଙ୍କୁ କ୍ରୋମ ସଂକ୍ରାନ୍ତୀୟ ନୀତି ଦୃଷ୍ଟିରୁ ସେ ବିରୋଧ କରୁଥିବାରୁ ତାଙ୍କୁ ପ୍ରକୃତରେ ମାରିଦିଆଯାଇଥିଲା ବୋଲି ଖବର ମିଳିଥିଲା । ମୁଁ ମଧ ଏ ଖବର ଶୁଣି ସେତେବେଳେ ତାଙ୍କ ପରିବାରକୁ ଭେଟିବା ପାଇଁ ଯାଇଥିଲି ଏବଂ ତତ୍‌କାଳୀନ ଗୃହମନ୍ତ୍ରୀ ଇନ୍ଦ୍ରଜିତ୍ ଗୁପ୍ତାଙ୍କୁ ଏହାର ନିରପେକ୍ଷ ତଦନ୍ତ ପାଇଁ ଅନୁରୋଧ ଜଣାଇଥିଲି । କିନ୍ତୁ, ତାର କିଛି ସୁଫଳ ମିଳି

ନଥିଲା କିମ୍ବା ଓଡିଶାରେ ସେଥିନେଇ ଯେଉଁଭଳି ଜନମତ ପ୍ରକାଶ ପାଇବା କଥା ତାହା ମଧ୍ୟ ହୋଇନଥିଲା । ଏହି ଘଟଣାର ବହୁପରେ ମୁଁ ଏବଂ ଡଃ. ଅରୁଣ ଘୋଷ ଏକଦା Scientific Mining ର ସୁଫଳ ତଥା ଏହାର କାର୍ଯ୍ୟକାରିତା ସଂପର୍କୀତ ଏକ ତଥ୍ୟ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ଇନ୍ଦ୍ରକୁମାର ଗୁଜୁରାଲଙ୍କୁ ଦେଇଥିଲୁ ଏବଂ Delhi Scientific Forum ପକ୍ଷରୁ ଏହାକୁ କିପରି କାର୍ଯ୍ୟକାରୀ କରାଯାଇପାରିବ ସେଥିନେଇ ଅନୁରୋଧ ମଧ୍ୟ କରିଥିଲୁ ।

ଜଣେ ସଂଗ୍ରାମୀ ପାଇଁ ବନ୍ଦୀଶାଳା ହେଉଛି ସବୁଠାରୁ ଏକ ବଡ ପବିତ୍ର ସ୍ଥାନ । ଗାନ୍ଧୀ, ଗୋପବଂଧୁ, ଲୋହିଆ ଓ ଜୟପ୍ରକାଶ ଆଦି ବହୁ ମନିଷୀ ଏହି ବନ୍ଦୀଶାଳାରୁ ହିଁ ଜୀବନର ପ୍ରକୃତ ସଂଗ୍ରାମ ଆରମ୍ଭ କରିଥିଲେ ବୋଲି ଆମେ ଜାଣିଛୁ । ମୁଁ ଆମ୍ବାଲା ଜେଲରେ କଟାଇଥିବା ଦିନଗୁଡିକ ଏବେ ମଧ୍ୟ ମୋ ସ୍ମୃତି ଆକାଶରେ ଦପ୍ ଦପ୍ ହୋଇ ଜଳୁଛନ୍ତି । ଦେଶର ଜରୁରୀକାଳୀନ ପରିସ୍ଥିତି ସମୟରେ ମୁଁ ଗିରଫ ହୋଇ ହରିଆନାର ଅମ୍ବାଲା ଜେଲ୍‌ରେ ରହୁଥିଲି । କିଛି ଦିନ ପରେ ଜରୁରୀ ପରିସ୍ଥିତି ଉଠିଗଲା ଏବଂ ଆମେ ସବୁ ମୁକ୍ତ ହେଲୁ । ତେବେ ୧୯୭୭ରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହେଲା ସେଥିରେ ଜନତା ସରକାର କ୍ଷମତାକୁ ଆସିଲା ଏବଂ ଘଟଣା କ୍ରମେ ମୁଁ ଜନତା ଦଳର ସେକ୍ରେଟାରୀ ହୋଇଗଲି । ସେହି ସମୟର ଏକ ମଧୁର ମୂହୁର୍ତ୍ତକୁ ମୁଁ ଆଜି ସୁଦ୍ଧା ଭୁଲି ନାହିଁ । ଏକଦା ଅମ୍ବାଲା ଜେଲର କଏଦି ମାନଙ୍କ ଦ୍ୱାରା ଏକ ଭୋଜିର ଆୟୋଜନ କରାଯାଇଥିଲା ଏବଂ ସୌଭାଗ୍ୟକ୍ରମେ ମୁଁ ସେହି ଜେଲର ଜଣେ ପୂର୍ବତନ କଏଦି ହୋଇଥିବାରୁ ସେଠାକୁ ନିମନ୍ତ୍ରିତ ହୋଇଥିଲି । ସେତେବେଳକୁ ଦେବୀଲାଲ ହରିଆନାର ମୁଖ୍ୟମନ୍ତ୍ରୀ ଥାଆନ୍ତି ଏବଂ ସୁଷମା ସ୍ୱରାଜ ମଧ୍ୟ ମନ୍ତ୍ରୀ ଥାଆନ୍ତି । ଆମେ ତିନିଜଣ ଯାକ ସେହି ଅମ୍ବାଲା ଜେଲ୍‌କୁ ଯାଇଥିଲୁ । ସେଠାରେ ଭୋଜି ସରିବା ପରେ ଆମର ସ୍ଥିର ହେଲା ଯେ ମୁଁ ସେ ଜେଲର ଯେଉଁ ୭ ନମ୍ବର କୋଠରୀରେ ବନ୍ଦିଥିଲି ତାହାକୁ ଆମେ ଦେଖିବାକୁ ଯିବୁ ଏବଂ ଗଲୁ ମଧ୍ୟ । ଆମେ ସବୁ ସେଠାରେ ପହଞ୍ଚିବା କ୍ଷଣି ମୁଁ ଭାବପ୍ରବଣତା ବଶତଃ ସେଇ କୋଠରୀ ମଧ୍ୟକୁ ପ୍ରବେଶ କରିଗଲି । ସେତେବେଳକୁ ଦେବୀଲାଲ ଓ ସୁଷମାଜୀ କୋଠରୀ ବାହାରେ ଛିଡ଼ା ହୋଇଥାନ୍ତି । ମୋର କୋଠରୀ ଭିତରକୁ ପଶିଯିବା ଦେଖି ସେ ଚଟ୍‌କରି କୋଠରୀ ବାହାରପଟୁ ଶିକୁଳି ଲଗାଇଦେଲେ ଏବଂ କହିଲେ "ରବି ରାୟଜୀ । ତାଂରି ଭିତରେ ଥାଆନ୍ତୁ ।" ତାପରେ ଖୁବ୍ ଗୋଟାଏ ହସ ହେଲା ଏବଂ ପ୍ରାୟ ୫ ମିନିଟ୍ ପରେ ମୁଁ ଜେଲ୍ କୋଠରୀ ବାହାରକୁ ଆସିଥିଲି ।

ଡଃ. ଲୋହିଆ ଥରେ ସମ୍ବଲପୁରରୁ ବରପାଲିକୁ ଆସିଥିଲେ । ଚୀନ ଏକଦା ସୈନ୍ୟପଠାଇ ତିବ୍ବତକୁ ନିଜର ଅକ୍ତିଆରକୁ ନେଇଯାଇଥିଲା ଏବଂ ଭାରତର ବହୁ ଅଞ୍ଚଳ ତା'ର ବୋଲି ଦାବୀ କରିଆସୁଥିଲା । ଡଃ ଲୋହିଆ ଚୀନ୍‌ର ଏହି ଦାବୀ କେତେଦୂର ଯଥାର୍ଥ ତାହାରି ଉପରେ ଭାଷଣ ଦେଇଥିଲେ । ତାଙ୍କ ଭାଷଣ ପ୍ରସଙ୍ଗରେ ସେ ମହାକବି କାଳିଦାସଙ୍କର 'କୁମାର ସମ୍ଭବ' କାବ୍ୟରୁ ଏକ ଉଦ୍ଧୃତି ଦେଇ କହିଥିଲେ ଯେ, ଚାଇନାର ପୁରାତନ ସାହିତ୍ୟରେ ଯଦି କାଳିଦାସଙ୍କ ନିମ୍ନଲିଖିତ ଶ୍ଳୋକ ପରି ହିମାଳୟର ବର୍ଣ୍ଣନା ମିଳିବ

ତାହାଲେ ଚାଇନାର ଦାବୀ ଯଥାର୍ଥ, ନଚେତ୍ ଚାଇନା ଏକ ମିଛୁଆ ରାଷ୍ଟ୍ରଭାବେ ପରିଗଣିତ ହେବ। ସେଦିନ ସେ ସଭାରେ ଆବୃତ୍ତି କରିଥିଲେ ସେହି ପ୍ରସିଦ୍ଧ ଶ୍ଳୋକ :

"ଅସ୍ତୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନଗାଧିରାଜଃ
ପୂର୍ବୌ ପରୌ ପୟୋନିଧି ବଗାହ୍ୟଃ
ସ୍ଥିତଃପୃଥିବ୍ୟା ଇବ ମାନଦଣ୍ଡ ।"

ଏହି ଶ୍ଳୋକ ଆବୃତ୍ତି କରିସାରି ଲୋହିଆ ଏହାର ପରବର୍ତ୍ତୀ ପଦ ପୂରଣ କରିବା ପାଇଁ ସଭାଜନଙ୍କୁ ଆହ୍ୱାନ କଲେ । ତନ୍ମଧ୍ୟରୁ ଜଣେ ପଣ୍ଡିତ ହଠାତ୍ ଉଠିପଡି ଉକ୍ତ ଶ୍ଳୋକଟିକୁ ସଂପୂର୍ଣ୍ଣ କଲେ । ଏଥିରେ ଲୋହିଆ ଅତ୍ୟନ୍ତ ଖୁସି ହୋଇଯାଇଥିଲେ ଏବଂ କହିଥିଲେ ଏହି ହେଉଛି ପ୍ରକୃତରେ ଭାରତର ଲୋକଙ୍କ ବୈଶିଷ୍ଟ୍ୟ । ମୋ ଜାଣତରେ ଡଃ ଲୋହିଆ କାଳିଦାସଙ୍କ ସଂସ୍କୃତ "କୁମାର ସମ୍ଭବ' ପୁସ୍ତକଟି ତାଙ୍କ ଗସ୍ତାମ ଗସ୍ତ କାଳରେ ସମାଜବାଦୀ ପଣ୍ଡିତ କାଶୀନାଥ ମିଶ୍ରଙ୍କ ଠାରୁ ପଢ଼ିବାକୁ ନେଇଥିଲେ । ତାଙ୍କର ଅବସର ସମୟରେ ସେ ପୁସ୍ତକଟି ଅଧ୍ୟୟନ କରି ତାକୁ ପୁଣି ଠିକଣା ଯାଗାରେ ନିଜ ଭାଷଣ ପ୍ରସଙ୍ଗରେ ଆବୃତ୍ତି କରିଥିଲେ ।

ଅତୀତରୁ ଚୀନ -ତିବ୍ବତ ଓ ଚୀନ୍ -ଭାରତକୁ ନେଇ ବହୁ ସମସ୍ୟା ଅସମାହିତ ହୋଇ ରହିଛି । ପୂର୍ବ ସରକାରଙ୍କର ଭୁଲ୍ ବୈଦେଶିକ ନୀତି ଏବଂ ଅପରିଣାମଦର୍ଶୀକାର୍ଯ୍ୟ ଯୋଗୁଁ ଭାରତ ଚୀନଠାରୁ ପରାସ୍ତ ହୋଇଥିଲା ଏବଂ ନିଜର କିଛି ଅଂଶ ମଧ ସେଥିଯୋଗୁଁ ହରାଇଥିଲା । ତେବେ ସେହିଦିନଠାରୁ ବଳବତ୍ତର ଥିବା ସେହି ସମସ୍ୟାକୁ ଶ୍ରୀଯୁକ୍ତ ବାଜପେୟୀ ପ୍ରଧାନମନ୍ତ୍ରୀ ଥିବା ବେଳେ ସମାଧାନ କରିଦେଇ ଆସିଛନ୍ତି ବୋଲି ଆଶ୍ୱସ୍ତି ପ୍ରକାଶ କରିଥିଲେ । ତାଙ୍କର ଚୀନ୍ ଗସ୍ତକାଳରେ ସେ ଚୀନ ପ୍ରଧାନମନ୍ତ୍ରୀଙ୍କ ସହିତ ତିବ୍ବତ ଓ ଭାରତଚୀନ ସୀମାବିବାଦ ସଂପର୍କରେ ଏକ ରାଜିନାମା ସ୍ୱାକ୍ଷର କରିଦେଇଆସିଲେ । କିନ୍ତୁ, ଏହି ରାଜିନାମାରେ ଭାରତର ଯେ କେତେଦୂର ସ୍ୱାର୍ଥ ରକ୍ଷା ହେଲା ବା ହେବ ତାହା ସମୟ ହିଁ କହିବ । ଯେଉଁ ଦିନ ଜବାହାରଙ୍କ ଭୁଲନୀତି ଯୋଗୁଁ ଚୀନ୍ ଆମକୁ ଆମ ମାଟିରେ ହରାଇଦେଇ ଚାଲିଗଲା, ସେହିଦିନ ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ ଏହିକିଯେ ଯେଉଁ ଅଟଳବିହାରୀ ବାଜପେୟୀ ଏକଦା ଆମମାନଙ୍କ ସହିତ ମିଶି ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କୁ ସମାଲୋଚନା କରିଥିଲେ ସେ ଏବେ ପ୍ରଧାନମନ୍ତ୍ରୀ ହେବାପରେ ପୁଣି ନିଜେ ଚାଇନା ଯାଇ ସେଠାରେ ତିବ୍ବତକୁ ଚାଇନାର ଅଂଶ ବିଶେଷ ବୋଲି ସ୍ୱୀକାର କରିଦେଇ ଆସିଲେ । ଚୀନ୍ ସହିତ ତିବ୍ବତର କୌଣସି ସଂପର୍କ ନାହିଁ ବୋଲି ବାଜପେୟୀ ଅତୀତରେ ବହୁବାର କହିଥିଲେ ସୁଦ୍ଧା ସେ ତାଙ୍କ ନୀତିରୁ ବିଚ୍ୟୁତ ହୋଇ ଏଭଳି ଏକ ଅନ୍ୟାୟ କାର୍ଯ୍ୟ କଲେ । ସେଥିପାଇଁ ଦେଶର ଜଣେ ସଚେତନ ନାଗରିକ ହିସାବରେ ମୁଁ ଆଦୌ ସ୍ଥିରହୋଇ ବସିପାରିଲି ନାହିଁ । ବାଜପେୟୀଙ୍କ ଏହି ପ୍ରକାର କାର୍ଯ୍ୟ ବିରୁଦ୍ଧରେ ଏକ ପୂର୍ଣ୍ଣ ବିବୃତ୍ତି ଦେବା ପାଇଁ ଉଚିତ ମଣିଲି

ଏବଂ ଦେଲି ମଧ । ମୋର ଏହି ବିବୃତି ପଢ଼ି ତିବ୍ବତ ମୁକ୍ତି ଆନ୍ଦୋଳନର ମହାନ ନେତା ତଥା ପ୍ରସିଦ୍ଧ ଗୁରୁ ଦଲାଇଲାମା ଧନ୍ୟବାଦ ପତ୍ର ପଠାଇଥିଲେ । ଶ୍ରୀଯୁକ୍ତ ବାଜପେୟୀଙ୍କ ଚାଇନା ରାଜିନାମା ସଂପର୍କରେ ମୁଁ ଯେଉଁ ବିବୃତ୍ତି ଦେଇଥିଲି ତାହା ଯେ ପରେ ଅକ୍ଷରେ ଅକ୍ଷରେ ସତ୍ୟ ହେବ ଏହା ମୁଁ କଳ୍ପନା ସୁଦ୍ଧା କରି ନଥିଲି । ମୋ ବିବୃତିରେ ମୁଁ ସେତେବେଳେ କହିଥିଲି ଯେ ଆମ ଦେଶର ଅନ୍ୟତମ ରାଜ୍ୟ ଅରୁଣାଚଳ ପ୍ରଦେଶ ଚୀନ୍‌ର ଏକ ରାଜ୍ୟ ତାଲିକାର ଅନ୍ତର୍ଭୁକ୍ତ । ତେଣୁ ଏଥିପ୍ରତି ପୂର୍ବରୁ ସଚେତନ ରହିବା ନିହାତି ଆବଶ୍ୟକ । ମାତ୍ର ଦୁଃଖର କଥା ଆମର ମାନନୀୟ ପ୍ରଧାନମନ୍ତ୍ରୀ ଯେତେବେଳେ ଚାଇନା ପ୍ରଧାନମନ୍ତ୍ରୀଙ୍କ ସହିତ ବେଜିଂରେ ଚୁକ୍ତି ସ୍ୱାକ୍ଷର କରିବାରେ ବ୍ୟସ୍ତଥିଲେ ଠିକ୍ ସେତେବେଳେ ଚୀନ୍‌ର ସୈନ୍ୟମାନେ ଅରୁଣାଚଳ ପ୍ରଦେଶରେ ପ୍ରବେଶ କରିଥିଲେ । ବାଜପେୟୀ ଭାରତକୁ ଫେରିବା ପରେ ଏହା ସ୍ୱୀକାର ମଧ କଲେ । ତେଣୁ ମୋର ଅରୁଣାଚଳ ପ୍ରଦେଶ ସଂପର୍କରେ ଯେଉଁ ଆଶଂକା ଜାତ ହୋଇଥିଲା ତାହା ପରମୁହୂର୍ତ୍ତରେ ସତ୍ୟରେ ପରିଣତ ହୋଇଥିଲା । ଆମେ ଯଦି ଏଇ ବେଳୁ ସତର୍କ ନ ହେବା ତାହାଲେ ଦିନେ ନା ଦିନେ ଅବିଶ୍ୱାସୀ ଚୀନ୍ ଆମ ଅରୁଣାଚଳ ପ୍ରଦେଶକୁ ନିଜର ହସ୍ତଗତ କରିଦେବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ମଣିପୁର ସଂପର୍କରେ ଆଉ ଏକ ଘଟଣା ମୋ ମନରେ ସ୍ମୃତି ହୋଇ ରହିଛି । ଏହା ଜରୁରୀକାଳୀନ ପରିସ୍ଥିତି ପରର ଘଟଣା । ସେତେବେଳକୁ ମୁଁ ଓ ମଧୁଲିମାୟେ ଜନତାଦଳରେ ସାଧାରଣ ସଂପାଦକ ଥିଲୁ । ସମସ୍ତ ରାଜ୍ୟ ବୁଲି ଜନତାଦଳକୁ ସଂଗଠିତ କରିବା ଥିଲା ଆମ ଦୁହିଁଙ୍କର ପ୍ରଧାନ କାର୍ଯ୍ୟ । ସେହି ପରିପେକ୍ଷୀରେ ଆମେ ଥରେ ମଣିପୁର ଯାଇଥିଲୁ । କେନ୍ଦ୍ରରେ ସେତେବେଳକୁ ଜନତା ସରକାର କ୍ଷମତାରେ ଥାଏ । ମଣିପୁରରେ ମଧ ଆମଦଳ ସଂଖ୍ୟାଗରିଷ୍ଠତା ଲାଭ କରିଥାଏ । ତେଣୁ ମଣିପୁରର ଭାବି ମୁଖ୍ୟମନ୍ତ୍ରୀଙ୍କୁ ଚୟନ କରିବା ଉଦ୍ଦେଶ୍ୟରେ ଆମେ ମଣିପୁର ଗସ୍ତ କରିଥିଲୁ । ସେଠାରେ ପହଞ୍ଚି ଆମ ମନୋନୀତ ଏକ ମୁଖ୍ୟମନ୍ତ୍ରୀ ବାଛିବାପରେ ଆମେ ସେଠାକାର ଗଭର୍ଣ୍ଣରଙ୍କୁ ଭେଟିବାକୁ ଗଲୁ । ଡଃ ଏଲ୍.ପି.ସିଂ ଥାନ୍ତି ସେତେବେଳକୁ ମଣିପୁରର ଗଭର୍ଣ୍ଣର । ଡଃ ସିଂଙ୍କ ନାମ ମୁଁ ବହୁ ପୂର୍ବରୁ ଶୁଣିଥିଲି କାରଣ ୧୯୪୨ ସାଲରେ ସେ କଟକର ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ ଏବଂ ଜଣେ ଦକ୍ଷ ପ୍ରଶାସକ ଭାବରେ ତାଙ୍କର ବହୁ ସୁନାମ ଥିଲା । ଅବସର ଗ୍ରହଣ ପରେ ସେ ସେଠାକାର ଗଭର୍ଣ୍ଣର ହୋଇଥିଲେ । ମୁଁ ଯେତେବେଳେ ତାଙ୍କୁ ସେଠାରେ ଦେଖିଲି ଟିକିଏ ସନ୍ଦେହରେ ପଡିଗଲି । ଭାବିଲି ଇଏ ସେଇ ଏଲ.ପି. ସିଂ ତ ? ଲୋଭ ସମ୍ବରଣ କରି ନପାରି ପଚାରିଦେଲି ଆପଣ ସେଇ ଏଲ.ପି. ସିଂ ତ ଯିଏ ବହୁଦିନ ତଳେ କଟକର ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ ! ସେ ଉତ୍‌ଫୁଲ୍ଲିତ ହୋଇ କହିଲେ "ହାଁ ! ହାଁ ! ମଗର୍ ରବିରାୟଜୀ ଆପ୍ କାହାଁକେ ହେଁ ?" ମୁଁ କହିଲି "ମୈଁ ଓଡିଶା କା ହୁଁ ।" ତାପରେ ଦୁହିଁଙ୍କ ମଧରେ ବେଶ୍ କିଛି ସମୟ ଭାବର ଆଦାନ ପ୍ରଦାନ ଚାଲିଲା ଓଡିଆରେ ।

୧୯୭୯ ସାଲର କଥା । କେନ୍ଦ୍ରରେ ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ଥାଏ । ସେତେବେଳକୁ ମୋର ଥରେ କଲିକତା ଯିବା ପାଇଁ ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଥିଲା । ମୋର ସେହି ଗସ୍ତକାଳରେ

ମୁଁ ମୋ ସେକ୍ରେଟାରୀଙ୍କୁ କହି ମଦରଟେରେସାଙ୍କ ସେବା କେନ୍ଦ୍ର ପରିଦର୍ଶନ ପାଇଁ ଏକ କାର୍ଯ୍ୟକ୍ରମ ମଧ୍ୟ ପ୍ରସ୍ତୁତ କରିଥିଲି । ମୁଁ ସେଠାରେ ଅନ୍ତତଃ ୪/୫ ଘଣ୍ଟା ରହିଥିଲି । ରାସ୍ତାକଡର ଗରିବ ପିଲା, ଅସହାୟ ବୃଦ୍ଧ ତଥା ମହିଳାଙ୍କର ସେଠାରେ ଯେଉଁଭଳି ସେବା କରାଯାଉଥିଲା ତାହା ମୋତେ ସେଦିନ ଖୁବ୍ ପ୍ରଭାବିତ କରିଥିଲା । ମଦର ଟେରସାଙ୍କ ଭଳି ଜଣେ ମହିୟସୀ ମହିଳା ସୁଦୂର ୟୁରୋପରୁ ଆସି କଲିକତାରେ ଏଭଳି ଭାବରେ ରୋଗପ୍ରପୀଡିତ ଜନତାଙ୍କର ସେବା କରିବା , ଅସହାୟ ଶିଶୁ ମାନଙ୍କୁ କୋଳେଇ କାଖେଇ ମା ଭଳି ଯତ୍ନ ନେବା, ରୋଗଗ୍ରସ୍ତ ବ୍ୟକ୍ତି ତଥା ପିଲାମାନଙ୍କର କ୍ଷତ ସ୍ଥାନକୁ ନିଜ ହାତରେ ପରିଷ୍କାର କରୁଥିବା କାର୍ଯ୍ୟଦେଖି ମୁଁ ସତରେ ସେଦିନ ଅଭିଭୂତ ହୋଇଯାଇଥିଲି । ଏହାର ଅନେକ ବର୍ଷ ପରେ ମଦର ଟେରେସାଙ୍କୁ 'ସନ୍ଥ' ବା 'Saint' ଘୋଷଣା କରାଯାଇଛି । ରୋମାନ୍ କାଥେଲିକ ଖ୍ରୀଷ୍ଟଧର୍ମର ସର୍ବୋଚ୍ଚ ଧର୍ମଗୁରୁ ପୋପ୍ ମଦର ଟେରେସାଙ୍କୁ ଆନୁଷ୍ଠାନିକ ଭାବେ 'ସନ୍ଥ' ବୋଲି ଘୋଷଣା କରିଛନ୍ତି । ଅତୀତରେ ମୁଁ ମଧ୍ୟ ୨/୩ ଥର ଭାଟିକାନ୍ ଯିବାର ସୌଭାଗ୍ୟ ଲାଭ କରିଥିଲି । ସେହି ଭାଟିକାନ୍ ତରଫରୁ ପୃଥିବୀର ଲକ୍ଷ ଲକ୍ଷ ଲୋକଙ୍କ ଗହଣରେ ପୋପ୍ ମଦର ଟେରସାଙ୍କୁ 'ସନ୍ଥ' ବୋଲି ଘୋଷଣା କରିଛନ୍ତି । ମଦରଟେରେସାଙ୍କ ଭଳି କରୁଣାମୟୀ ମହିୟସୀ ମହିଳା ପୃଥିବୀରେ ବିରଳ ।

୧୯୯୦ ରେ ମୁଁ ବାଚସ୍ପତି ଥିବା ସମୟରେ ଏକ ସଂସଦୀୟ ପ୍ରତିନିଧି ମଣ୍ଡଳୀର ନେତୃତ୍ୱ ନେଇ ମୋତେ ଥରେ ହଙ୍ଗେରୀ ଯିବାକୁ ପଡ଼ିଲା । ମୋର ଗସ୍ତ କାର୍ଯ୍ୟକ୍ରମ ପ୍ରାୟ ଚୂଡାନ୍ତ ହେବା ପୂର୍ବରୁ ମୁଁ ହଙ୍ଗେରୀରେ ଭାରତ ପକ୍ଷରୁ ରାଜଦୂତ ଥିବା ଶ୍ରୀ ଅହମଦ୍ ଙ୍କ ଠାରୁ ଏ ସଂପର୍କରେ କିଛି ପରାମର୍ଶ ଚାହିଁଲି । ସୌଭାଗ୍ୟକ୍ରମେ ତାଙ୍କଠାରୁ ହଙ୍ଗେରୀ ବିଷୟରେ ବହୁ ତଥ୍ୟ ମଧ୍ୟ ହାସଲ କଲି । ସେତେବେଳେ ହଙ୍ଗେରୀର ସୋଭିଏତ୍ ୟୁନିୟନ୍ କମ୍ୟୁନିଷ୍ଟ ବ୍ଲକ୍‌ର ଅନୁଗତ । ତେଣୁ ସେଠାରେ ମଧ୍ୟ କମ୍ୟୁନିଷ୍ଟ ଶାସନ ବଳବତ୍ତରଥିଲା । ହଙ୍ଗେରୀରେ ତତ୍‌କାଳୀନ କମ୍ୟୁନିଷ୍ଟ ଶାସନ ବିରୁଦ୍ଧରେ ଏକ ଗଣ ଆନ୍ଦୋଳନ ହୋଇଥିଲା । ସେହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ 'ଇମ୍ରେନାଜ୍' (Imre Nagy) । ସ୍ୱାଧୀନଚେତା ବିପ୍ଳବୀ ଇମ୍ରେନାଜ ସେତେବେଳେ ହଙ୍ଗେରୀ ଉପରେ ଋଷର ଅଖଣ୍ଡ ପ୍ରଭୁତ୍ୱକୁ ସ୍ୱୀକାର କରିପାରି ନଥିଲେ । ଋଷବିନା ହଙ୍ଗେରୀ ସେତେବେଳେ କୌଣସି ନିଜସ୍ୱ ସିଦ୍ଧାନ୍ତ ନିଜେ ନେଇପାରୁନଥିଲା । ତାର ବସ୍ତୁତଃ କୌଣସି ସାର୍ବଭୌମତ୍ୱ ନଥିଲା । ତେଣୁ ହଙ୍ଗେରୀର ଆତ୍ମ ନିୟନ୍ତ୍ରଣ ଅଧିକାରକୁ ଫେରିପାଇବା ପାଇଁ ଇମ୍ରେନାଜ ଏକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ମାତ୍ର ଏହା ଋଷର କମ୍ୟୁନିଷ୍ଟ ନେତାମାନଙ୍କ ଦେହରେ ଗଲାନାହିଁ । ସେମାନେ ଇମ୍ରେନାଜଙ୍କ ଏହି ଆନ୍ଦୋଳନକୁ ଦବାଇଦେବାଲାଗି ଯତ୍ ପରୋନାସ୍ତି ଉଦ୍ୟମ କଲେ ଏବଂ ଶେଷରେ ଇମ୍ରେନାଜଙ୍କୁ ୧୯୫୮ ମସିହାରେ ପ୍ରାଣବଳୀ ଦେବାକୁ ପଡ଼ିଥିଲା । ଇମ୍ରେନାଜଙ୍କ ପରେ ପରେ ତାଙ୍କର ସମର୍ଥକମାନଙ୍କ ଅବସ୍ଥା ମଧ୍ୟ ତଦ୍ରୂପ ହୋଇପଡିଲା । ସେମାନେ ନିଜକୁ କମ୍ୟୁନିଷ୍ଟ ଶାସକ ମାନଙ୍କ ପାଖରେ ଆଉ ସୁରକ୍ଷିତ ମନେ କରିପାରିଲେ ନାହିଁ । ସେମାନଙ୍କ ଜୀବନ ଏକାବେଳକେ ବିପନ୍ନ ହୋଇପଡିଲା । ସେହି ସମୟରେ ଭାରତର

ପ୍ରଧାନମନ୍ତ୍ରୀ ଥାଆନ୍ତି ଜବାହାରଲାଲ ନେହୁରୁ ଏବଂ ଡଃ ଅହମଦ ଥିଲେ ହଙ୍ଗେରୀ ପାଇଁ ଭାରତର ରାଷ୍ଟ୍ରଦୂତ । ସେତେବେଳେ ନେହୁରୁଙ୍କ ପକ୍ଷରୁ ମିଃ ଅହମ୍ମଦଙ୍କୁ ପ୍ରଚ୍ଛନ୍ନ ସୂଚନା ଦିଆଯାଇଥିଲା ଯେ, ଋଷ ବିରୋଧରେ ସ୍ୱର ଉତ୍ତୋଳନ କରି ବିପ୍ଳବୀ ଇମ୍ରେନାଜଙ୍କ ଅବସ୍ଥା ଯେପରି ହେଲା ତାହା ଯେପରି ଇମ୍ରେନାଜଙ୍କ ଅନୁଗତମାନଙ୍କ ଭାଗ୍ୟ ରେ ନ ଘଟେ । ସେଥିପାଇଁ ମିଃ. ଅହମ୍ମଦ ସେତେବେଳେ ଇମ୍ରେନାଜଙ୍କ ବହୁ ଅନୁଗତଙ୍କୁ ଭାରତୀୟ ଦୂତାବାସରେ ଆଶ୍ରୟ ଦେଇଥିଲେ ଏବଂ ସବୁପ୍ରକାର ସାହାଯ୍ୟ ମଧ୍ୟ ଯୋଗାଇଦେଇଥିଲେ । ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ଅବସ୍ଥାପିତ ହୋଇଥିବା ରାଷ୍ଟ୍ରଦୂତ ତଥା ସେମାନଙ୍କ ଦୂତାବାସ ଉପରେ ସଂପୃକ୍ତ ରାଷ୍ଟ୍ର ବା ଦେଶ ହସ୍ତକ୍ଷେପ କରି ନ ପାରିବାର ଯେଉଁ ସୁବିଧା ରହିଥିଲା ତାହାରି ବଳରେ ମିଃ ଅହମ୍ମଦ ଇମ୍ରେନାଜଙ୍କ ଅନେକ ସମର୍ଥକଙ୍କୁ ଭାରତୀୟ ଦୂତାବାସରେ ଶରଣ ଦେଇଥିଲେ ଏବଂ ସେମାନଙ୍କୁ ଋଷର କମ୍ୟୁନିଷ୍ଟ ଶାସକ ମାନଙ୍କର କୋପଦୃଷ୍ଟିରୁ ବଞ୍ଚାଇପାରିଥିଲେ । ୧୯୯୧ ସାଲରେ ମୋର ହଙ୍ଗେରୀ ଗସ୍ତବେଳକୁ ତାହା ଏକ ସ୍ୱାଧୀନ ଗଣତାନ୍ତ୍ରିକ ସାର୍ବଭୌମ ରାଷ୍ଟ୍ର ରେ ପରିଣତ ହୋଇସାରିଥିଲା । ସୋଭିଏତ ୟୁନିୟନ ମଧ୍ୟ ଖଣ୍ଡ ବିଖଣ୍ଡିତ ହୋଇଯାଇଥିଲା ସେତେବେଳକୁ । ମୋ ଗସ୍ତକାଳରେ ମୁଁ ଯେତେବେଳେ ତତ୍‌କାଳୀନ ହଙ୍ଗେରୀ ରାଷ୍ଟ୍ରପତିଙ୍କୁ ସାକ୍ଷାତ କଲି ସେତେବେଳେ ଜାଣିବାକୁ ପାଇଲି ଯେ ସେ ମଧ୍ୟ ଏକଦା ଅତୀତରେ ଇମ୍ରେନାଜଙ୍କର ଜଣେ ଦୃଢ଼ ସମର୍ଥକ ଥିଲେ । ଆଉ ସବୁଠାରୁ କୌତୂହଳର ବିଷୟ ହେଉଛି ଯେ, ସେତେବେଳେ ଭାରତୀୟ ଦୂତାବାସରେ ଇମ୍ରେନାଜଙ୍କ ଯେଉଁ ସମର୍ଥକମାନେ ଆଶ୍ରୟ ନେଇଥିଲେ ଇଏଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କ ସହିତ ଆଲୋଚନା କଲାବେଳେ ସେ ମିଃ ଅହମ୍ମଦଙ୍କ ପ୍ରତି ଚିରକୃତଜ୍ଞ ବୋଲି ପ୍ରକାଶ କରିଥିଲେ ଏବଂ କେବଳ ତାଙ୍କରି ଯୋଗୁଁ ସେମାନଙ୍କର ଜୀବନ ରକ୍ଷା ହୋଇଥିଲା ବୋଲି ସ୍ୱୀକାର କରିଥିଲେ । ମୁଁ ଉକ୍ତ ବିଷୟ ପୂର୍ବରୁ ମିଃ ଅହମ୍ମଦଙ୍କ ଠାରୁ ଶୁଣିଛି ବୋଲି ତାଙ୍କୁ କହିଥିଲି । ସେ ଏତେ ପରିମାଣରେ ଭାବବିହ୍ୱଳ ହୋଇପଡ଼ିଥିଲେ ଯେ ସେ ମୋ ହାତ ଧରି କାନ୍ଦି ପକାଇଥିଲେ । ତାଙ୍କର ଏହି ଅଶ୍ରୁ ଭାରତ ପ୍ରତି ଥିବା କୃତଜ୍ଞତା ଜନିତ ତର୍ପଣ ବୋଲି ମୁଁ ସେଦିନ ମନେ କରିଥିଲି । ଆଲୋଚନା ବେଳେ ସେ ଭାରତର ସମ୍ବିଧାନକୁ ଏକ ଆଦର୍ଶ ସମ୍ବିଧାନ ରୂପେ ଗ୍ରହଣ କରନ୍ତି ବୋଲି ମୋତେ କହିଥିଲେ ଏବଂ ସେଠାରୁ ଆସିଲା ପରେ ତାଙ୍କ ପାଖକୁ ଖଣ୍ଡେ ଭାରତ ସମ୍ବିଧାନର କପି ପଠାଇବା ପାଇଁ ମୋତେ ଅନୁରୋଧ କରିଥିଲେ । ତାଙ୍କ ଅନୁରୋଧ ରକ୍ଷାକରି ମୁଁ ଭାରତ ଆସିବା ପରେ ତାଙ୍କ ପାଖକୁ ଆମ ସମ୍ବିଧାନର ଏକ କପି ପଠାଇଥିଲି । ଆମେ ସେଠାରେ ରହିବା ସମୟରେ ସେମାନେ ଆମକୁ ଯେଉଁ ଆତିଥ୍ୟ ପ୍ରଦର୍ଶନ କରିଥିଲେ ତାହା ଆଦୌ ଭୁଲିବାର ନୁହେଁ । ସେ ଯେତେବେଳେ ଭାରତବର୍ଷ ସଂପର୍କରେ ଯାହା ସହିତ ଆଲୋଚନା କରନ୍ତି ସେତେବେଳେ ଏହିପରି ଏକ ଭାବପ୍ରବଣ ମୁହୂର୍ତ୍ତ ସ୍ୱତଃ ସୃଷ୍ଟି ହୋଇଯାଏ ବୋଲି ସ୍ୱୀକାର କରିଥିଲେ ।

ବିଜୁବାବୁଙ୍କ ସହିତ ୧୯୭୧ ସାଲରେ ଯେଉଁ ସଂପର୍କ ପ୍ରତିଷ୍ଠା ହେଲା ତାହା ବଢ଼ି ବଢ଼ି ଗୋଟାଏ ପାରିବାରିକ ସଂପର୍କରେ ପରିଣତ ହୋଇଯାଇଥିଲା । ନବୀନ୍ ମୋତେ 'ଚାଚା'

ବୋଲି ସମ୍ବୋଧନ କରେ । ବିଜୁବାବୁଙ୍କ ମୃତ୍ୟୁପରେ ଦିନେ ହଠାତ୍ ଦିଲ୍ଲୀରେ ନବୀନ ପଟ୍ଟନାୟକଙ୍କ ପାଖରୁ ଫୋନ୍ ଆସିଲା । ସେ କହିଲେ, "ଚା ଚା, ମୁଁ ଆସିବି ।" ମୁଁ କହିଲି "ହଉ ଆସ" । ସେତେବେଳକୁ ସେ ଆସ୍କାରୁ ଲୋକସଭା ସଦସ୍ୟ ହୋଇ ନିର୍ବାଚିତ ହୋଇଥାଆନ୍ତି । ସେ ଆସି କହିଲେ, "ମୁଁ ପ୍ରଥମ ଥର ପାଇଁ ତ ସାଂସଦ ହେଲି । ମୋତେ ସଂସଦୀୟ ବିଧିବିଧାନ କିଛି ଜଣାନାହିଁ । ମୁଁ କ'ଣ କରିବି ।" ମୁଁ କହିଲି, " ତୁମେ ଯଦି ପରିଶ୍ରମ କରି ପାରିବ ତେବେ ଜଣେ ଭଲ ସାଂସଦ ହୋଇପାରିବ ।" ଏହାପରେ ସେ ମୋ ନିକଟକୁ ପ୍ରତିଦିନ ଦୁଇଘଣ୍ଟା ଆସି ମୋ ସହିତ ଏ ସଂପର୍କରେ ଆଲୋଚନା କରିବାକୁ ଚାହିଁଲେ ଏବଂ ଆସିଲେ ମଧ୍ୟ । ଲୋକସଭା କାର୍ଯ୍ୟବିଧି ସଂପର୍କରେ ବିଶେଷ ଜ୍ଞାନ ଅର୍ଜନ ପାଇଁ ମୁଁ ତାଙ୍କୁ ଲୋକସଭାର ସେକ୍ରେଟାରୀ ସି. କେ. ଜୈନଙ୍କ ନିକଟକୁ ମଧ୍ୟ ପଠାଇଲି । ଏସବୁ ଫଳରେ ସେ ହିଁ ସେ ସମୟର ଏକମାତ୍ର ଓଡ଼ିଆ ସାଂସଦ ଯିଏ କି ଲୋକସଭାରେ maiden speech ଟିଏ ଦେଇପାରିଥିଲେ ।

ଏହି ସମୟରେ ଦିନେ ନବୀନ ମୋତେ ପ୍ରଶ୍ନ କରିଥିଲେ, ବିଜୁବାବୁଙ୍କର ବିଜେପି ସହିତ ସଂପର୍କ କିପରି ଥିଲା ? ମୁଁ ତାଙ୍କୁ କହିଥଲି ଯେ, ବିଜୁବାବୁ ସାଂପ୍ରଦାୟିକତାକୁ ଘୃଣା କରୁଥିଲେ ଏବଂ ବିରୋଧ ମଧ୍ୟ କରୁଥିଲେ । ମୁଁ ତାଙ୍କୁ କହିଲି, ଯେତେବେଳେ ଜନତା ଦଳ ୧୯୮୦ରେ ଭାଙ୍ଗିଗଲା ଓ ବିଜେପି ଦଳ ଗଢ଼ା ହେଲା ମୁଁ, ବିଜୁବାବୁ ଏବଂ ମଧୁଲିମାୟେ ଅଡ଼ି ବସିଥିଲୁ ଯେ ଯିଏ ରାଷ୍ଟ୍ରୀୟ ସ୍ୱୟଂ ସେବକର ସଂଘ ର ସଭ୍ୟ ଥିବ ସିଏ ଆମ ଦଳରେ ରହି ପାରିବ ନାହିଁ । ଏକଥା ନବୀନ୍ ମୋଠାରୁ ଶୁଣି ସାରିଲା ପରେ ମଧ୍ୟ ବିଜେପି ସହିତ ମେଣ୍ଟ କରିଥିଲେ ଏବଂ ନିଜ ଆଡୁ ମୋ ପାଖକୁ ଆସିବା ବନ୍ଦ କରି ଦେଇଥିଲେ । ମୁଁ ମଧ୍ୟ ଆଉ ତାଙ୍କ ସହିତ ସଂପର୍କ ରଖିପାରିନାହିଁ ।

ହଁ, ସେ ଯେତେବେଳେ ଏହିଭଳି ମୋ ପାଖକୁ ଆସୁଥିଲେ ମୁଁ ତାଙ୍କୁ ଓଡ଼ିଆ ଭାଷା ଶିଖିବାକୁ ପରାମର୍ଶ ଦେଇଥିଲି । ସେ ମଧ୍ୟ କିଛି ଦିନ ଜନୈକ ଆକାଶବାଣୀ, ଦିଲ୍ଲୀର କର୍ମଚାରୀ ଶ୍ରୀପଣ୍ଡାଙ୍କ ଠାରୁ ଓଡ଼ିଆ ଶିକ୍ଷା କରୁଥିଲେ । ଅବସ୍ଥା ଚକ୍ରରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ସତ, ଦୁର୍ଭାଗ୍ୟର ବିଷୟ, ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷା କହି ସୁଦ୍ଧା ପାରୁ ନାହାନ୍ତି !

ଆମ ସଂବିଧାନ ପ୍ରଣେତା ଆମ୍ବେଦକରଙ୍କର ଏକ ପ୍ରସିଦ୍ଧ ପୁସ୍ତକ ହେଲା Annhilation of Castes (ଜାତି ପ୍ରଥାର ବିନାଶ) । ଏ ପୁସ୍ତକଟିକୁ ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ କଲେଜ ପାଠ୍ୟକ୍ରମରେ ରଖାଯିବା ଉଚିତ ବୋଲି ମୁଁ ବାଚସ୍ପତି ଥିବାବେଳେ ବିଭିନ୍ନ ସ୍ଥାନରେ ବାରମ୍ବାର କହିଥିଲି । ମୁଁ ବାଚସ୍ପତି ପଦରୁ ଯିବାପରେ ପୁନଶ୍ଚ ଯେତେବେଳେ ୧୯୯୧ରେ ଲୋକସଭାର ସଭ୍ୟ ହେଲି ସେତେବେଳେ ନରସିଂହ ରାଓଙ୍କ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥାଏ । ଶିକ୍ଷାମନ୍ତ୍ରୀ ଥାଆନ୍ତ ଅର୍ଜୁନ ସିଂହ । ସରକାରଙ୍କର ଉକ୍ତ ବହିଟିକୁ ପାଠ୍ୟ ପୁସ୍ତକ ରୂପେ ପ୍ରଚଳନ କରିବାର କିଛି ପ୍ରସ୍ତାବ ଅଛି କି ବୋଲି ମୁଁ ଅର୍ଜୁନ ସିଂଙ୍କ ଉଦ୍ଦେଶ୍ୟରେ ଏକ ପ୍ରଶ୍ନ ପାର୍ଲାମେଣ୍ଟରେ ରଖିଥିଲି । ସେ ଉତ୍ତର ଦେଲେ ଯେ ସରକାର ଏ

ବିଷୟ ପରୀକ୍ଷା କରି ଦେଖିବେ । କିନ୍ତୁ ଏହା ପରେ ପରେ କଂଗ୍ରେସ ସରକାର ଭାଙ୍ଗିଗଲା । ଏ ପର୍ଯ୍ୟନ୍ତ ମଧ୍ୟ କୌଣସି ସରକାର ତାହା କାର୍ଯ୍ୟକାରୀ କଲେ ନାହିଁ । ଜାତିପ୍ରଥାର ଉଦ୍ଭବ, ବିକାଶ ଓ ପରିଣତି ସଂପର୍କରେ ତାହା ଏକ ପ୍ରମାଣିକ ପୁସ୍ତକ ଯାହା ଏ ଦେଶର ପ୍ରତ୍ୟେକ ଛାତ୍ରଛାତ୍ରୀ ପଢ଼ିବା ଉଚିତ୍ ।

ଖ୍ୟାତନାମା ଗାନ୍ଧୀବାଦୀ ସ୍ୱର୍ଗୀୟ ଜେ.ବି. କୃପାଳିନୀ ମୋତେ ଖୁବ୍ ଭଲ ପାଉଥିଲେ । ସେ ଅସୁସ୍ଥ ଥିବା ବେଳେ ମୁଁ ଓ ମଧୁଲିମାୟେ ପ୍ରାୟତଃ ତାଙ୍କୁ ଦେଖିବାକୁ ଯାଉ । ଆମ ସହିତ ସେ ସବୁବେଳେ ଥଟ୍ଟା ଟାପରା କରନ୍ତି । ସେହିଭଳି ତାଙ୍କର ଏକ ମଜାକଥା ମନେ ପଡୁଛି । ୧୯୮୦-୮୧ରେ ମୁଁ କଟକରୁ ଲୋକସଭା ପାଇଁ ଉପନିର୍ବାଚନ ଲଢୁଥାଏ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସ୍ତ୍ରୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ମୋର ପ୍ରତିଦ୍ୱନ୍ଦ୍ୱୀ ଥାଆନ୍ତି । କୃପାଳିନୀଜୀ ମୋ ନିର୍ବାଚନ ପାଣ୍ଠିକୁ ପାଞ୍ଚ ଶହ ଟଙ୍କା ଦାନ କରିଥାଆନ୍ତି । ଦୁର୍ଭାଗ୍ୟବଶତଃ, ମୁଁ ସେ ନିର୍ବାଚନରେ ହାରିଗଲି । ନିର୍ବାଚନ ପରେ ମୁଁ ଦିଲ୍ଲୀ ଯାଇଥାଏ । ଦିଲ୍ଲୀରେ ପହଞ୍ଚି କୃପାଳିନୀଜୀ ଙ୍କୁ ଦେଖା କରିବା ପାଇଁ ମୁଁ ଓ ମଧୁଲିମାୟେ ଗଲୁ । ସେ ମୋତେ ଦେଖୁ ଦେଖୁ କହିଲେ, "ଆରେ, ରବି ! ତୁମ୍ ହାର୍ ଗୟା ? କ୍ୟୁଁ ହାରା ? ହମାରା ରୁପେୟା ଲୌଟା ଦୋ ।" ମୁଁ ଓ ମଧୁ ହସି ହସି ବେଦମ୍ ହେଲୁ । ତାଙ୍କର ସ୍ନେହ ଭୁଲିବାର ନୁହେଁ ।

କାଶ୍ମୀରର ଏକଦା ଅପ୍ରତିଦ୍ୱନ୍ଦ୍ୱୀ ନେତା ଏବଂ ବହୁବର୍ଷ ଧରି ପ୍ରଧାନମନ୍ତ୍ରୀ ଥିବା ଶେଖ୍ ଅବଦୁଲ୍ଲାଙ୍କ ସହିତ ମଧ୍ୟ ମୋର ଘନିଷ୍ଠ ସଂପର୍କ ରହିଥିଲା । ଶେଖ ଅବଦୁଲ୍ଲାଙ୍କର ବହୁମୂତ୍ର ରୋଗ ଥିଲା । ମୁଁ ସେତେବେଳେ ଭାରତର ସ୍ୱାସ୍ଥ୍ୟମନ୍ତ୍ରୀ ଥାଏ । ସେ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥାନ (AIIMS) ର ଜଣେ ଖୁବ୍ ନାମଯାଦା ବିଶେଷଜ୍ଞଙ୍କ ନିକଟରେ ଚିକିତ୍ସିତ ହେଉଥାଆନ୍ତି । ସେ ବିଶେଷଜ୍ଞ ମୋତେ ଖବର ଦେଲେ ଯେ ସେଦିନ ତାଙ୍କ ଘରକୁ ଶେଖ୍ ଅବଦୁଲ୍ଲା ସସ୍ତ୍ରୀକ ଆସିବେ । ସେ ମୋତେ ଦେଖା କରିବା ଚାହୁଁଛନ୍ତି । ମୁଁ ଗଲି । ସେଦିନର ସାକ୍ଷାତ ପରେ ଆମ ଘନିଷ୍ଠତା ବଢ଼ିଗଲା । ତାପରେ ସେହି ସ୍ୱାସ୍ଥ୍ୟମନ୍ତ୍ରୀ ଥିବାବେଳେ ମୁଁ ଥରେ କାଶ୍ମୀର ଗସ୍ତରେ ଯାଇଥିଲି । ଶେଖ୍ ଙ୍କୁ ସୌଜନ୍ୟମୂଳକ ସାକ୍ଷାତ କଲି । ପ୍ରାୟ ୩ଘଣ୍ଟା ଆମେ କଥାବାର୍ତ୍ତା ହେଲୁ । ସେ କହିଲେ, ଅନେକଙ୍କ ଧାରଣା ଯେ ମୁଁ କାଶ୍ମୀରକୁ ଭାରତଠାରୁ ଅଲଗା କରିବାକୁ ଚାହୁଁଥିଲି । ଏହା ଏକ ସଂପୂର୍ଣ୍ଣ ଭୁଲ୍ ଧାରଣା ବୋଲି କହି ସେ କ୍ଷୋଭ ପ୍ରକାଶ କଲେ । ନେହେରୁଙ୍କ ସହିତ କିପରି ତାଙ୍କର ଘନିଷ୍ଠତା ଥିଲା ଓ ପରେ ଅପଡ଼ ହୋଇଗଲା ସେ କଥା ସେ ବର୍ଣ୍ଣନା କଲେ ।

୧୯୯୩ ସାଲରେ ମୁଁ ଲୋକସଭାର ସଦସ୍ୟ ଥାଏ । ସେହି ସମୟରେ ଥରେ କଟକ ଶହୀଦ ଭବନରେ ଆୟୋଜିତ ଦେଶର ସାଂପ୍ରଦାୟିକ ପରିସ୍ଥିତି ଶୀର୍ଷକ ଏକ ଆଲୋଚନା ସଭାକୁ ଜଣେ ଯୁବକ ମୋତେ ନିମନ୍ତ୍ରଣ କରି ଡାକିଥାନ୍ତି । ସେଦିନ ମୁଁ ମୋ ଭାଷଣ ପ୍ରସଙ୍ଗରେ କାଶ୍ମୀର ସଂପର୍କରେ କେତେକ ତଥ୍ୟ ପ୍ରଦାନ କରିଥିଲି ଯାହା ଅନେକଙ୍କୁ ବିସ୍ମିତ କରିଥିଲା । କାଶ୍ମୀରର ନେତା ଶେଖ ଅବଦୁଲ୍ଲା କିପରି ନିଜର ଲୋକପ୍ରିୟତା ଯୋଗୁଁ

ସେଠାରେ ଶେର୍-ଇ-କାଶ୍ମୀର ବୋଲାଇଥିଲେ ତାହା ମୁଁ କହିଥିଲି । ସେ ସମୟରେ କାଶ୍ମୀରର ହିନ୍ଦୁ ମହାରାଜା ହରି ସିଂ (କରଣ ସିଂଙ୍କ ପିତା)ଙ୍କ ଅହେତୁକ ବ୍ରିଟିଶ୍ ପ୍ରୀତି ଥିଲା । ରାଜ ଅତ୍ୟାଚାର ବିରୁଦ୍ଧରେ ଯେଉଁ ଜନ ଆନ୍ଦୋଳନ ହୋଇଥିଲା ତାର ନେତୃତ୍ୱ ନେଇଥିଲେ ତତ୍କାଳୀନ ଜନପ୍ରିୟ ନେତା ଶେଖ୍ ଅବଦୁଲ୍ଲା । ସାରା ଦେଶରେ ସେ ଜଣେ ବିଶିଷ୍ଟ ଜନନେତା ରୂପେ ଖ୍ୟାତି ଅର୍ଜନ କରିପାରିଥିଲେ । ଦେଶରେ ବି.ଜେ.ପି. ଓ ଆର୍.ଏସ୍.ଏସ୍. କିପରି ରାଷ୍ଟ୍ରୀୟ ଏକତା ବିରୁଦ୍ଧରେ ବିଭିନ୍ନ କାର୍ଯ୍ୟ କରିଛନ୍ତି ତାହା ମଧ୍ୟ ମୁଁ ମୋ ଭାଷଣ ପ୍ରସଙ୍ଗରେ ଉଠାଇଥିଲି, ଭାରତ ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପୂର୍ବରୁ କାଶ୍ମୀରର ରାଜା ହରି ସିଂ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ପାଲରେ ପଡ଼ି କାଶ୍ମୀର ଏକ ମୁସଲମାନ ବହୁଳ ରାଜ୍ୟ ହୋଇଥିବାରୁ ତାହାକୁ ପାକିସ୍ତାନ ସହିତ ଅନ୍ତର୍ଭୁକ୍ତ କରିବାର ଏକ ହୀନ ଚକ୍ରାନ୍ତ କରିଥିଲେ ମାତ୍ର ଶେଖ୍ ଅବଦୁଲ୍ଲା ଜଣେ ମୁସଲମାନ ହୋଇ ମଧ୍ୟ କାଶ୍ମୀର ଜନସାଧାରଣଙ୍କ ତରଫରୁ ଦୃଢ଼ କଣ୍ଠରେ ଘୋଷଣା କରିଥିଲେ ଯେ, କାଶ୍ମୀର ଭାରତ ସହିତ ରହିଛି ଓ ରହିବ । ଏହି ଐତିହାସିକ ସତ୍ୟକୁ ହିନ୍ଦୁ ମୌଳବାଦୀମାନେ ଚପାଇ ଦେବା ଚାହାନ୍ତି । ଅର୍ଦ୍ଧସତ୍ୟ ଅସତ୍ୟ ଠାରୁ ମଧ୍ୟ ଅଧିକ ବିପଜ୍ଜନକ ଓ ବିଭ୍ରାନ୍ତିକର ।

ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଉକ୍ତ ଭାଷଣ ପ୍ରଦାନର କିଛି ଦିନ ପରେ ମୁଁ ଦିଲ୍ଲୀ ଯାଇ ଗୋଟିଏ ବେନାମୀ ଚିଠି ପାଇଲି । ପୋଷ୍ଟକାର୍ଡ଼ରେ ଲେଖାଯାଇଥିବା ଉକ୍ତ ଚିଠିଟି କଟକରୁ ପଠାଯାଇଥିଲା । ସେଥିରେ ମୋତେ ବିଭିନ୍ନ ପ୍ରକାର ଗାଳିଗୁଲଜ କରାଯିବା ସହିତ ଭାରତ ଛାଡ଼ି ମୋତେ ମୁସଲମାନ ବହୁଳ ଦେଶ ଇରାନ୍‌ରେ ବସବାସ କରିବା ନିମିତ୍ତ ପରାମର୍ଶ ଦିଆଯାଇଥିଲା । ଉକ୍ତ ଚିଠି ଲେଖିଥିବା ବ୍ୟକ୍ତିଟି ନିଶ୍ଚୟ ଜଣେ ସଂକୀର୍ଣ୍ଣମନା ହିନ୍ଦୁ ମୌଳବାଦୀ - ଏଥିରେ ସନ୍ଦେହ ନାହିଁ । ସତ୍ୟ ଯେତେ ଅପ୍ରୀତିକର ହେଲେ ମଧ୍ୟ ତାକୁ ସାମ୍ନା କରିବାର ସତ୍‌ସାହସ ମୋର ମହାନ୍ ସଂସ୍କୃତି ମୋତେ ଦେଇଛି ।

୧୯୮୦-୮୧ରେ ମୁଁ ଯେତେବେଳେ ଚୌଧୁରୀ ଚରଣ ସିଂହଙ୍କ ମନ୍ତ୍ରୀମଣ୍ଡଳରେ ପୁଣି ସ୍ୱାସ୍ଥ୍ୟମନ୍ତ୍ରୀ ରୂପେ ଶପଥ ନେଲି ସେତେବେଳେ ସେଥିରେ କଂଗ୍ରେସରୁ ୱାଇ.ବି. ଚୌହାନ ଗୃହମନ୍ତ୍ରୀ ରହିଲେ ଓ ସି.ଏସ୍. ସୁବ୍ରମନ୍ୟମ୍ ପ୍ରତିରକ୍ଷା ବିଭାଗ ଦାୟିତ୍ୱ ନେଲେ । ସେ ମନ୍ତ୍ରୀମଣ୍ଡଳ ୪/୬ ମାସ ମାତ୍ର ରହିଥିଲା । ତାପରେ ସାନି ନିର୍ବାଚନ ହେଲା । ଯିବା ପୂର୍ବରୁ ଅନ୍ତତଃ ଗୋଟାଏ କିଛି ଭଲ କାମ କରି ଦେଇଯିବା ବୋଲି ଭାବିଲି । ଅତି ଶୀଘ୍ର ନିର୍ବାଚନ ହେବା ଅବଧାରିତ । ଏଣୁ ସେହି ନିର୍ବାଚନ ସଂସ୍କାର ସଂପର୍କୀୟ କିଛି ଗୋଟିଏ କାମ କରିଦେଇଯିବା ଉଚିତ୍ ହେବ ବୋଲି ଭାବିଲି । ନିର୍ବାଚନରେ ପ୍ରାର୍ଥୀ ହେଉଥିବା ବ୍ୟକ୍ତିମାନେ ପୁଞ୍ଜିପତିଙ୍କ ପଇସାରେ ନିର୍ବାଚନ ଲଢୁଥିବାରୁ ନିର୍ବାଚିତ ହୋଇ ଆସିବା ପରେ ସେମାନଙ୍କ ପାଇଁ କାମ କରୁଛନ୍ତି । ଏଣୁ ଦୁର୍ନୀତି ବଢୁଛି । ଏଣୁ ବହୁ ଆଗରୁ ଆଲୋଚନା ଚାଲିଥିଲା ଯେ ସରକାର ସାଧାରଣ ପ୍ରାର୍ଥୀମାନଙ୍କୁ ସରକାରୀ ତହବିଲରୁ ନିର୍ବାଚନ ଖର୍ଚ୍ଚ ପାଇଁ ଅର୍ଥ ଯୋଗାଇ ଦେବେ । ସାଧାରଣ ଜୀବନକୁ ନିର୍ମଳ କରିବା ପାଇଁ ଏହି ମର୍ମରେ ଏକ ଆଇନ୍ ପ୍ରଣୟନ କରିବେ ବୋଲି ଏହା ପୂର୍ବବର୍ତ୍ତୀ ସରକାର ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ ।

ଚରଣ ସିଂହ ଜଣେ ସଚ୍ଚୋଟ ବ୍ୟକ୍ତି ଥିଲେ । ପୂର୍ବରୁ କହିଛି ମୋ ସହିତ ମଧ ତାଙ୍କର ସଂପର୍କ ଘନିଷ୍ଠ ଥିଲା । ମନ୍ତ୍ରୀମଣ୍ଡଳ ଭାଙ୍ଗିବା ଉପରେ । ହାତରେ ସମୟ ଅଳ୍ପ । ତଥାପି ମୁଁ ତାଙ୍କୁ ଏହି ପ୍ରସ୍ତାବିଟି ଦେଲି । ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ଏବଂ ଆଇନ୍‌ମନ୍ତ୍ରୀଙ୍କୁ ଡାକି ଏହି ମର୍ମରେ ଚିଠାପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦେଲେ । ସେତେବେଳେ ଏ ଆଇନ୍‌ଟି ଅର୍ଡ଼ିନାନ୍ସ ଛଡ଼ା ଅନ୍ୟ କେଉଁବାଟେ କାର୍ଯ୍ୟକାରୀ କରାଯାଇପାରି ନଥାନ୍ତା । ଦୁଇମାସ ପରେ ହେବାକୁ ଥିବା ନିର୍ବାଚନ ପରେ ଏହାକୁ ନୂଆ ପାର୍ଲାମେଣ୍ଟରେ ବିଧିବଦ୍ଧ ଭାବେ ପାଶ୍ କରାଯାଇଥାଆନ୍ତା । ଡ୍ରାଫ୍ଟ ପ୍ରସ୍ତୁତ ହେଲାବେଳେ ଚଭନ୍‌ଙ୍କୁ ପଚରାଗଲା । ସେ ଭଲଭାବରେ ଜାଣିଥିଲେ ଯେ ନିର୍ବାଚନ ପୂର୍ବରୁ ଏପରି ଆଇନ୍ ଟିଏ ପାଶ୍ ହୋଇଗଲେ ତାହା ପୁଞ୍ଜିପତିଙ୍କ ଠାରୁ ପାଣ୍ଠି ସଂଗ୍ରହରେ ବାଧକ ହେବ ଏବଂ କଂଗ୍ରେସ ପାଇଁ ନିବାର୍ଚନ ବୈତରଣୀ ପାର ହେବା କଷ୍ଟକର ହୋଇଯିବ । ଏଣୁ ସେ ସମ୍ମତ ହେଲେ ନାହିଁ । ବିଲ୍‌ଟି ରାଷ୍ଟ୍ରପତି ଦସ୍ତଖତ କଲାପରେ ଆଇନ୍‌ରେ ପରିଣତ ହେବାକଥା । ସେତେବେଳେ ରାଷ୍ଟ୍ରପତି ଥିବା ସଞ୍ଜିବ ରେଡିଙ୍କୁ ଯାଇ ଚଭନ୍ କହିଦେଲେ ଯେ ତାଙ୍କର ଏଥିରେ ସମ୍ମତି ନାହିଁ । ଅର୍ଡ଼ିନାନ୍ସ ପାଇଁ ଯେତେବେଳେ ବିଲ୍‌ଟି ରାଷ୍ଟ୍ରପତିଙ୍କ ପାଖକୁ ଗଲା ସେ ଦସ୍ତଖତ ଦେବାକୁ ମନା କରିଦେଲେ । ଫଳରେ ତାହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଏ ପର୍ଯ୍ୟନ୍ତ ମଧ ନିର୍ବାଚନ ସଂସ୍କାର ସଂପର୍କୀୟ ସେ ଆଇନ୍ କାର୍ଯ୍ୟକାରୀ ହୋଇପାରିଲା ନାହିଁ ।

୧୯୬୭ରେ ମୁଁ ଲୋକସଭାକୁ ନିର୍ବାଚିତ ହୋଇଯିବାପରେ ସେଇଠି ମୋର ଅଟଳ ବିହାରୀ ବାଜପେୟୀଙ୍କ ସହିତ ପ୍ରଥମ ସାକ୍ଷାତ । ଆମ ଭିତରେ କ୍ରମଶଃ ବନ୍ଧୁତ୍ୱ ସ୍ଥାପନ ହେଲା । ଆମେ ଏକଦା ଖୁବ୍ ବନ୍ଧୁଥିଲୁ । ଏବେ ମଧ ବନ୍ଧୁତା ଅଛି । ସେ ପ୍ରଧାନମନ୍ତ୍ରୀ ହେବାପରେ ମୁଁ ତାଙ୍କୁ କେବେ ବି ଭେଟି ନାହିଁ । ଥରେ ମାତ୍ର ଦେଖା ହୋଇଛି ରାଷ୍ଟ୍ରପତି କେ. ଆର୍. ନାରାୟଣନ୍ ଦେଇଥିବା ଏକ ଭୋଜିସଭାରେ । ମୋତେ ଦେଖି କହିଲେ, "କ'ଣ ରବିରାୟଜୀ, ଆପଣଙ୍କ ସହିତ ଆଉ ଦେଖାସାକ୍ଷାତ ହୋଇ ପାରୁନାହିଁ ।" ମୁଁ କହିଲି, "ଆପଣ ଏବେ ପ୍ରଧାନମନ୍ତ୍ରୀ । ଦେଖାସାକ୍ଷାତ ଆଉ ହେବ କେମିତି ?" ଏ ଘଟଣା ପରେ ସେ ପ୍ରଧାନମନ୍ତ୍ରୀ ଥିବା ଭିତରେ ଆଉ ଥରେ ମାତ୍ର ଫୋନ୍‌ରେ ତାଙ୍କ ସହିତ କଥାବାର୍ତ୍ତା ହୋଇଥିଲା । ସିଏ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଥରେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଏବଂ ଇନ୍ଦିରାଗାନ୍ଧୀ ମୁକ୍ତ ବିଶ୍ୱବିଦ୍ୟାଳୟର କିଛି ଅଧାପକ ହଠାତ୍, ୩୩, ଅତୁଲ୍ ଗ୍ରୋବର ରୋଡ୍‌ରେ ଥିବା ମୋ ଘରେ ଆସି ପହଞ୍ଚିଲେ । ସେମାନେ ଅତ୍ୟନ୍ତ ବ୍ୟସ୍ତ ଜଣାପଡୁଥାଆନ୍ତି । ଆସିବା କାରଣ ପଚାରିବାରୁ ସେମାନେ କହିଲେ, "ସାର୍, ସବୁ ସରିଗଲା । ସରକାର ଶିକ୍ଷାକୁ ମଧ ଘରୋଇକରଣ କରିବାକୁ ସ୍ଥିର କରିସାରିଲେଣି । ତା' ସପକ୍ଷରେ ଏକ ବିଚିତ୍ର ରିପୋର୍ଟ ବାହାରିଛି । ପ୍ରଧାନମନ୍ତ୍ରୀ ଆପଣଙ୍କ ବନ୍ଧୁ । ଆପଣ ସରକାରଙ୍କର ଏହି ପଦକ୍ଷେପ ବିରୁଦ୍ଧରେ ପ୍ରଧାନମନ୍ତ୍ରୀଙ୍କୁ ଲେଖନ୍ତୁ । ମୋର ଅଳ୍ପ ସମୟ ପରେ କଟକ ଅଭିମୁଖେ ଟ୍ରେନ୍ ଧରିବା କଥା । ଚିଠି ଲେଖାହେଲା । ଏପରି ହେଲା କି ମୁଁ ଚିଠିଟି ରେଲୱେ ଷ୍ଟେସନରେ ଦସ୍ତଖତ କଲି ଓ ଚିଠିଟି ପ୍ରଧାନମନ୍ତ୍ରୀ ବାଜପେୟୀଙ୍କ

ରେସ୍‌କୋର୍ସ ବାସଭବନକୁ ପଠାଇ ଦିଆଗଲା । ମୁଁ ଆସି କଟକରେ ପହଞ୍ଚିବା କେତେଦିନ ପରେ ମୋ କଲ୍ୟାଣୀନଗର ବାସଭବନକୁ ବାଜପେୟୀ ଫୋନ୍ କଲେ । ମୁଁ ଆଗ ମୋ ଆଡୁ ପଚାରିଲି, ''କ'ଣ, ଫୋନ୍ କାହିଁକି କଲେ ? କିଛି ଅଘଟଣ ଘଟିଲା କି ?'' ସେ କହିଲେ, ''ଆରେ ଭାଇ, ଏ ଅମ୍ବାନୀ ବିରଳା ରିପୋର୍ଟଟା କ'ଣ ?'' ମୁଁ ତାଙ୍କୁ ମଜାରେ କହିଲି, ''ବାଃ, ବେଶ୍ ପ୍ରଧାନମନ୍ତ୍ରୀ ଆପଣ! ଭାରତର ନୂତନ ଶିକ୍ଷା ବ୍ୟବସ୍ଥା କିପରି ହେବ ସେ ନକ୍ସା ତିଆରି କରିବାକୁ ଅମ୍ବାନୀ ଆଉ ବିରଳାଙ୍କୁ ଲଗାଇ ଆପଣ ରିପୋର୍ଟ ତିଆରି କରାଇଛନ୍ତି । ଅଥଚ ମୋତେ ପଚାରୁଛନ୍ତି କି ରିପୋର୍ଟ ବୋଲି!" ତାପରେ ସେ ପଚାରିଲେ, "ଆପଣଙ୍କ ପାଖରେ ସେ ରିପୋର୍ଟ ଅଛି କି ?" ମୁଁ କହିଲି, "ମୋପାଖରେ ଯଦି ସେ ରିପୋର୍ଟ ନ ଥାଆନ୍ତା ମୁଁ ଆପଣଙ୍କୁ ତା' ସଂପର୍କରେ ଲେଖିଥାଆନ୍ତି କିପରି ?" ତାପରେ ସେ ମୋତେ ଅନୁରୋଧ କଲେ ସେ ରିପୋର୍ଟର ଗୋଟାଏ କପି ତାଙ୍କ ପାଖକୁ ପଠାଇବାକୁ । ସେ ଲେଖାଇଥିବା ରିପୋର୍ଟକୁ ମୁଁ ତାଙ୍କ ପାଖକୁ ପଠାଇବି ! - ଆଶ୍ଚର୍ଯ୍ୟ ଲାଗିଲା । ତଥାପି ଭାବିଲି ପଠାଇଦେବି । ଯୋଗକୁ ତା'ପରଦିନ ସରସ୍ୱତୀ ଦିଲ୍ଲୀ ଯାଉଥିଲେ । ମୁଁ ତାଙ୍କ ହାତରେ ସେ ରିପୋର୍ଟର ଗୋଟିଏ ଫଟୋକପି ପଠାଇଦେଲି ।

ଏଇ ହେଉଛି ଏ ଦେଶର ଅବସ୍ଥା ପୂର୍ବରୁ ଯେତେ ସରକାର ଥିଲେ ସେମାନେ ଶିକ୍ଷାସଂସ୍କାର ପାଇଁ ବିଶିଷ୍ଟ ଶିକ୍ଷାବିତ୍‌ଙ୍କୁ ପରାମର୍ଶ କରୁଥିଲେ । ଯେପରିକି, ଡଃ. କୋଠାରୀ । ଆମେ କୋଠାରୀ କମିଶନ୍ ରିପୋର୍ଟ କାର୍ଯ୍ୟକାରୀ କରିବା ପାଇଁ ତତ୍‌କାଳୀନ କେନ୍ଦ୍ର ସରକାର ଉପରେ ଚାପ ଦେଇଥିଲୁ । ସେଥିପାଇଁ ଆନ୍ଦୋଳନ ମଧ୍ୟ କରିଥିଲୁ । ଦେଶ ଆଜି ଆସି ଏଇଠି ପହଞ୍ଚିଲା ଯେ ପ୍ରଧାନମନ୍ତ୍ରୀ ଦୁଇଜଣ ଯୁବ ଶିଳ୍ପପତି - ଯିଏ କି ଶିକ୍ଷାଦର୍ଶନ କି ଶିକ୍ଷାନୀତି ସଂପର୍କରେ ଶ୍ରୀଅକ୍ଷର ବିବର୍ଜିତ - ତାଙ୍କୁ ଦାୟିତ୍ୱ ଦେଇଛନ୍ତି ଏ ଦେଶର ଶିକ୍ଷା ବ୍ୟବସ୍ଥାରେ ସଂସ୍କାର ଆଣିବା ପାଇଁ । ସେ ରିପୋର୍ଟ ବାହାରିବା ପରେ ଶିକ୍ଷା ବ୍ୟବସ୍ଥା କ'ଣ ହେବ ଲକ୍ଷ୍ୟ କରିବା କଥା ।

ମୁଁ ବାଚସ୍ପତି ପଦରୁ ଓହରି ଯିବାପରେ ଶେଷଥର ପାଇଁ ଲୋକସଭା ନିର୍ବାଚନ ଲଢ଼ିଥିଲି ୧୯୯୧ ସାଲରେ ଏବଂ ୧୯୯୬ ପର୍ଯ୍ୟନ୍ତ ଲୋକସଭା ସଦସ୍ୟ ଥିଲି । ସେହି ସମୟରେ କଂଗ୍ରେସ ପ୍ରଧାନମନ୍ତ୍ରୀ ନରସିଂହ ରାଓ ଉଦାରୀକରଣ ନୀତି ଲାଗୁକଲେ । ସେତେବେଳେ ମନମୋହନ ସିଂହ ଥାଆନ୍ତି ଅର୍ଥମନ୍ତ୍ରୀ । ଶିବରାଜ ପାଟିଲ ଥାଆନ୍ତି ବାଚସ୍ପତି । ଉଦାରୀକରଣ ନୀତିକୁ ନେଇ ମୁଁ ଲୋକସଭାରେ ଯେଉଁ ପ୍ରଶ୍ନ ପଚାରିଥିଲି ତାହା ଏକଦା ସମଗ୍ର ଦେଶରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ସେଦିନ ମୋ ହାତରେ ଥାଏ ତାଞ୍ଜାନିଆ ରାଷ୍ଟ୍ରପତି ଜୁଲିୟସ୍ ନ୍ୟେରେରେଙ୍କ ନେତୃତ୍ୱରେ ଗଠିତ ସାଉଥ୍ ସାଉଥ୍ କମିଶନ୍ ଦେଇଥିବା ରିପୋର୍ଟ । ଏ ରିପୋର୍ଟଟି "South-South Report" ଦକ୍ଷିଣ-ଦକ୍ଷିଣ ରିପୋର୍ଟ ରୂପେ ପରିଚିତ । ଇଉରୋପୀୟ ସାମ୍ରାଜ୍ୟବାଦ ଦ୍ୱାରା ଅତୀତରେ ଲୁଣ୍ଠିତ ହୋଇଥିବା, ଏସିଆ, ଆଫ୍ରିକା, ଲାଟିନ୍ ଆମେରିକା ଇତ୍ୟାଦିର ପ୍ରାୟ ସମସ୍ତ ଗରିବ ଦେଶ ପୃଥିବୀ ର ଦକ୍ଷିଣ ଗୋଲାର୍ଦ୍ଧରେ ଅବସ୍ଥିତ । ଏମାନଙ୍କ

ଅବସ୍ଥା ଅନୁଧ୍ୟାନ କରି ସେଠା ଲୋକଙ୍କ ଜୀବନ ଧାରଣ ମାନ କିପରି ବୃଦ୍ଧି ପାଇବ ସେହି ସଂପର୍କରେ ପ୍ରସ୍ତାବ ଦେବା ପାଇଁ ଯେଉଁ କମିଶନ୍ ଗଢ଼ା ହୋଇଥିଲା ତାହା South-South Commission ବା ଦକ୍ଷିଣ ଦକ୍ଷିଣ କମିଶନ୍ ରୂପେ ପରିଚିତ । ଏ ରିପୋର୍ଟରେ ସ୍ପଷ୍ଟ କରିଦିଆ ଯାଇଥିଲା ଯେ ଯଦି ଉଦାରୀକରଣ ନୀତିକୁ ଏସବୁ ଗରିବ ଦେଶ ଗ୍ରହଣ କରିନିଅନ୍ତି ତେବେ ତାଙ୍କର ଧ୍ୱଂସ ଅନିବାର୍ଯ୍ୟ । ରିପୋର୍ଟଟି ସେତେବେଳେ ନୂଆ କରି ବାହାରିଥାଏ । ଅଧିକାଂଶ ସାଂସଦ ସେ ରିପୋର୍ଟ ଦେଖିନଥାଆନ୍ତି । ସେ ରିପୋର୍ଟରୁ ମୁଁ କିୟଦଂଶ ପଢ଼ିବା ସଙ୍ଗେସଙ୍ଗେ ସମଗ୍ର ରିପୋର୍ଟର ସାରାଂଶ ମୁଁ ମୋ ବକ୍ତବ୍ୟରେ ଦେଲି । ତା'ପରେ କହିଲି, ଏ ରିପୋର୍ଟରେ ଜଣେ ବ୍ୟକ୍ତିଙ୍କ ଦସ୍ତଖତ ଅଛି ଯେ କି, ଏଠାରେ ଉପସ୍ଥିତ ଅଛନ୍ତି । ସବୁ ସାଂସଦ ଆବାକାବା ହୋଇ ମୋ ଆଡ଼କୁ ଚାହିଁଲେ । କାରଣ ଯାହା କହିଲି, ସେତେବେଳେ ଅଧିକାଂଶ ସଭ୍ୟ ଏ ରିପୋର୍ଟ ବିଷୟରେ କିଛି ଜାଣି ନଥିଲେ । ମୁଁ କହିଲି, "ମୁଁ ଯେଉଁ ଭଦ୍ରଲୋକଙ୍କ କଥା କହୁଛି ସେ ନିଶ୍ଚୟ ଜାଣିସାରିବେଣି ମୁଁ କ'ଣ କହୁଛି । ସେ ନିଜେ ଉଠି କହନ୍ତୁ ଏ ଦସ୍ତଖତ ତାଙ୍କର ନାଁ ନାହିଁ ।" କିନ୍ତୁ କେହି ନଉଠିବାରୁ ମୁଁ ବାଧ ହୋଇ କହିଲି, "ସେ South-South Report ରେ ଦସ୍ତଖତ କରିଥିବା ବ୍ୟକ୍ତି ହେଉଛନ୍ତି ଆଜିର ଆମର ଅର୍ଥମନ୍ତ୍ରୀ ମନମୋହନ ସିଂହ । ଯେଉଁ ମନମୋହନ ସିଂହ ସେ ରିପୋର୍ଟରେ ଚେତାବନୀ ଶୁଣାଉଛନ୍ତି ଯେ ଉଦାରୀକରଣ ନୀତି ଅବଲମ୍ବନ କଲେ ତୃତୀୟ ବିଶ୍ୱର ଦେଶମାନେ ଧ୍ୱଂସ ପାଇଯିବେ ସ୍ୱୟଂ ସେହି ବ୍ୟକ୍ତି ଆଜି ଏକ ତୃତୀୟ ବିଶ୍ୱ ଦେଶର ଅର୍ଥମନ୍ତ୍ରୀ ହେବାପରେ ନିଜ ଦେଶରେ ଉଦାରୀକରଣ ନୀତିକୁ ନିଃସଙ୍କୋଚରେ ପ୍ରଚଳନ କରୁଛନ୍ତି । ଏହାଠାରୁ ବଳି ଭାଗ୍ୟର ଆଉ ବଡ଼ ବିଡ଼ମ୍ବନା କ'ଣ ଥାଇପାରେ ! " ସେଦିନ ସରକାରଙ୍କ ଉଦାରୀକରଣ ନୀତି ପଛରେ ଥିବା ଏହି ଦୋମୁହାଁ ନୀତି, ଶଠତା ଓ ଦେଶଦ୍ରୋହର ଯେଉଁ ସମୀକ୍ଷା ମୁଁ କଲି ତାହା କେବଳ ପାର୍ଲାମେଣ୍ଟରେ ନୁହେଁ ସମଗ୍ର ଦେଶରେ ହଇଚଇ ସୃଷ୍ଟି କରିଥିଲା । ତା'ପରେ ଗ୍ୟାଟ (GATT) ରାଜିନାମାରେ ଭାରତର ପ୍ରତିନିଧିରୂପେ ଯୋଗ ଦେଇଥିବା ଉଦାରୀକରଣର ପ୍ରଚଣ୍ଡ ବିରୋଧୀ ପ୍ରଶାସକ ଶ୍ରୀ ଏସ୍. ପି. ଶୁକ୍ଳଙ୍କୁ ମୁଁ ଓଡ଼ିଶା ଅଣାଇ ଗୋଟିଏ ସଭା କରାଇଥିଲି । ସେଥିରେ ସେ ଉଦାରୀକରଣ ନୀତି ପ୍ରଚଳନ ପାଇଁ ରାଜୀବଗାନ୍ଧୀଙ୍କ ଅମଳରୁ କିପରି ପ୍ରଚେଷ୍ଟା ଚାଲିଛି ଏବଂ ତାହା ଲାଗୁ ହେଲେ କି ଭୟଙ୍କର ପରିସ୍ଥିତି ସୃଷ୍ଟି ହେବ ସେ କଥା ସେହି ସଭାରେ ବିଶ୍ଳେଷଣ କରି ବୁଝାଇଥିଲେ ।

ମୁଁ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାସମୟରେ ଥରେ ବିମାନଘାଟିରେ ମୋର ଜ୍ୟୋତିବସୁଙ୍କ ସହିତ ଭେଟହେଲା । ସେଇଠି ତାଙ୍କ ସହିତ ମୋର ପ୍ରଥମ ପରିଚୟ । ସେତେବେଳକୁ ସେ ପଶ୍ଚିମବଙ୍ଗଳାର ମୁଖ୍ୟମନ୍ତ୍ରୀ । ସେଦିନ ଏପରି ହେଲା କି ଆମକୁ ନେବାକୁ ଉଦ୍ଦିଷ୍ଟ ଉଡ଼ାଜାହାଜଟି ସେଦିନ ଆସିଲା ନାହିଁ । ଆମକୁ କୁହାଗଲା ଦିନ ଗୋଟାଏ ଯାଏ ଅପେକ୍ଷା କରିବାକୁ । ଆମେ ଆଉ ଘରକୁ ନଫେରି ଦିହେଁଯାକ ବିମାନବନ୍ଦରର ଅପେକ୍ଷାଗାରରେ ରହିଲୁ । ସେହିଠାରେ ଆମର ପ୍ରଥମ ପରିଚୟ । ପରେ ମୁଁ ଲୋକସଭାର ବାଚସ୍ପତି ହେବାପରେ ଆମ ସଂପର୍କ ଆହୁରି ଘନିଷ୍ଠ ହୋଇଥିଲା । ମୁଁ ବାଚସ୍ପତି ହେବାବେଳେ ସେ

ମତ ଦେଇଥିଲେ ଯେ ସମଗ୍ର ପୂର୍ବଭାରତରୁ ଲୋକସଭାର ବାଚସ୍ପତି ହେବାରେ ରବିରାୟ ପ୍ରଥମ । ଏହା ସମଗ୍ର ପୂର୍ବଭାରତ ପାଇଁ ଗୌରବର ବିଷୟ । ମୁଁ ବାଚସ୍ପତି ଥିବା ସମୟରେ ବଙ୍ଗଳା ବିଧାନସଭାର ରୌପ୍ୟ ଜୁବୁଲି ଉତ୍ସବକୁ ମୋତେ ମୁଖ୍ୟ ଅତିଥି କରି ସେ ନେଇଥିଲେ । ମୁଁ ସେଠାକୁ ଯିବା ପରେ ସେମାନେ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଦେଇଥିଲେ । ମୁଁ ରାଜ୍ୟପାଳ ଭବନରେ ଅତିଥି ହୋଇ ରହୁଥାଏ । ଜ୍ୟୋତିବସୁ ଆସି ଥାଆନ୍ତି । ଆମ ଭିତରେ ଦୀର୍ଘ ଆଲୋଚନା ହେଲା । ତାପରେ ମୁଁ ତାଙ୍କୁ ବଳେଇ ଦେବାକୁ ବାହାରକୁ ଆସିଲି । ସେ ମୋତେ ବାରଣ କରି କହିଲେ, ସାର୍, ଆପଣ ଆସନ୍ତୁ ନାହିଁ । ଲୋକସଭା ବାଚସ୍ପତି ପଦାକୁ ଏପରି ଭାବେ ଆସିବା ଉଚିତ୍ ହେଉ ନାହିଁ । ମୁଁ ସେଇଠାରେ ଚୁପ୍ କରି ଠିଆ ହୋଇଗଲି ଓ ହସିଲି । ଜ୍ୟୋତିବାବୁ ଆମର ପ୍ରୋଟୋକଲ୍ ନିୟମ ଏପରି କଡ଼ାକଡ଼ି ଭାବେ ମାନିବେ ବୋଲି ମୁଁ କଳ୍ପନା କରିନଥିଲି ।

୨୦୦୨ ମସିହାରେ ଲୋକସଭାର ପ୍ରଥମ ବାଚସ୍ପତି ଶ୍ରୀ ମାଭଲଙ୍କର ସ୍ମୃତିରେ ଏକ ସଭା ଲୋକସଭା ବାଚସ୍ପତିଙ୍କ ହଲ୍‌ରେ ଅନୁଷ୍ଠିତ ହେଉଥାଏ । ସେଠି ଭାଷଣ ଦେବାକୁ ଜ୍ୟୋତିବାବୁ ନିମନ୍ତ୍ରିତ ହୋଇ ଆସିଥାଆନ୍ତି । ମୁଁ ଥାଏ ମୁଖ୍ୟ ଅତିଥି । ମୁଁ ଜ୍ୟୋତିବସୁଙ୍କ ସଂପର୍କରେ ସେ ସଭାରେ ଦୁଇଟି କଥା କହିଥିଲି । ଜ୍ୟୋତିବାବୁଙ୍କ ଶାସନ କାଳ ଭିତରେ ପଶ୍ଚିମ ବଙ୍ଗଳାରେ ସାମ୍ପ୍ରଦାୟିକ ଦଙ୍ଗା ହୋଇନାହିଁ କିମ୍ବା ଅନାହାର ମୃତ୍ୟୁ ହୋଇନାହିଁ । ସେ ମୁଖ୍ୟମନ୍ତ୍ରୀ ହେବା ପରଦିନ ହିନ୍ଦୁ ମୁସଲମାନ ଭେଦଭାବ ନରଖି କାର୍ଯ୍ୟ କରିବାକୁ ତାଙ୍କର ଅମଲାତନ୍ତ୍ର ଏବଂ ପୋଲିସକୁ କଡା ନିର୍ଦ୍ଦେଶ ଦେଇଥିଲେ । ଦ୍ୱିତୀୟତଃ, କୃଷି କ୍ଷେତ୍ରରେ ସେ ଅଭୂତପୂର୍ବ ସଂସ୍କାର ଆଣିଥିଲେ । ଜମି ପୁନର୍ବଣ୍ଟନ କରି ସେ ଭାଗଚାଷୀମାନଙ୍କୁ ବିଶେଷ ଅଧିକାର ପ୍ରଦାନ କରିଥିଲେ । ଫଳରେ ବଙ୍ଗଳାରେ କେବେ ଖାଦ୍ୟ ନିଅଣ୍ଟ ପଡ଼ିନାହିଁ । ମୁଁ ସେ ସଭାରେ କହିଥିଲି ଯେ ଜ୍ୟୋତିବସୁଙ୍କୁ ଏ ଦେଶର ପ୍ରଧାନମନ୍ତ୍ରୀ କରାଇ ନଦେବା ମସ୍ତବଡ଼ ଭୁଲ୍ । ମୁଁ ଯେତେବେଳେ ମୋ ବକ୍ତବ୍ୟ ସାରି ବସିପଡିଲି ସେ ଭାବପ୍ରବଣ ହୋଇ ମୋ ହାତ ଉପରେ ହାତ ରଖି ଚାପା ଗଳାରେ କହିଲେ, "ମୋ ଦଳ ମୋତେ ପ୍ରଧାନମନ୍ତ୍ରୀ ହେବା ପାଇଁ ଅନୁମତି ଦେଲା ନାହିଁ ।"

ସୁମିତ୍ରା କୁଲକର୍ଣ୍ଣୀ ଗାନ୍ଧିଜୀଙ୍କର ନାତୁଣୀ । ଗାନ୍ଧୀଜୀଙ୍କ ପୁଅ ରାମଦାସଙ୍କର ସେ ଝିଅ । ୧୯୭୪ରେ ମୁଁ ରାଜ୍ୟସଭାକୁ ନିର୍ବାଚିତ ହୋଇଯାଇଥାଏ । ସେ କଂଗ୍ରେସ ତରଫରୁ ରାଜ୍ୟସଭାକୁ ମନୋନୀତ ହୋଇ ଆସିଥାଆନ୍ତି । ସେ ଆଇ.ଏ.ଏସ୍. ଚାକିରୀ ଛାଡ଼ି କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ପରେ ନିର୍ବାଚିତ ହୋଇ ରାଜ୍ୟସଭା ସଭ୍ୟ ହୋଇଥିଲେ । ତାଙ୍କ ସ୍ୱାମୀ ବାଙ୍ଗାଲୋରରେ ଅଧାପକ ଥାଆନ୍ତି । ରାଜସ୍ଥାନ ଉଦୟପୁରରେ ଗାନ୍ଧିଜୀଙ୍କ ସଂପର୍କରେ ଏକ ସଭା ଅନୁଷ୍ଠିତ ହେଉଥାଏ । ମୁଁ ନିମନ୍ତ୍ରିତ ହୋଇ ସେ ସଭାକୁ ଯାଇଥାଏ । ସେ ମଧ ସେ ସଭାରେ ଉପସ୍ଥିତ ଥାଆନ୍ତି । ମୋ ଭାଷଣରେ ମୁଁ ଗାନ୍ଧୀଜୀଙ୍କର ଗୋଟିଏ ଉକ୍ତିକୁ ଉଦ୍ଧାର କଲି । ସ୍ୱାଧୀନ ଭାରତର ସର୍ବୋଚ୍ଚ ଆସନରେ ଯିଏ ବସିବେ ସେ କିପରି ବ୍ୟକ୍ତି ହୋଇଥିବା ଉଚିତ୍ - ବକ୍ତବ୍ୟଟି ଥିଲା ସେ ସଂପର୍କରେ । ଏ ପଦବୀ ଅଳଙ୍କୃତ

କରିବା ପାଇଁ ତିନିଜଣ ସମ୍ଭାବ୍ୟ ବ୍ୟକ୍ତି - ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏବଂ ରାଜେନ୍ଦ୍ର ପ୍ରସାଦଙ୍କୁ ସେ ଏପଦବୀ ପାଇଁ କାହିଁକି ଯୋଗ୍ୟ ମନେ କରୁନାହାନ୍ତି କହିସାରି ଗାନ୍ଧୀଜୀ କହୁଛନ୍ତି ଯେ ଏ ଆସନରେ ଯିଏ ବସିବ ସେ ଜଣେ ମେହେନ୍ତର ମହିଳା ହୋଇଥିବା ଦରକାର । ଉପରୋକ୍ତ ତିନିଜଣଯାକଙ୍କୁ ଗାନ୍ଧୀଜୀ ଏ ପଦବୀ ପାଇଁ ଅଯୋଗ୍ୟ ମନେକରିବାର କାରଣ ସେମାନେ ସମସ୍ତେ ଉଚ୍ଚବର୍ଣ୍ଣର ଏବଂ ପୁରୁଷ । ଗାନ୍ଧୀଜୀ ଚାହୁଁଥିଲେ ଦେଶର ସର୍ବୋଚ୍ଚ ପଦବୀ ଗ୍ରହଣ କରିବେ ଜଣେ ତେଜସ୍ୱୀ, ସାଧ୍ୱୀ ମହିଳା ଯେ କି ହରିଜନ ହୋଇଥିବେ । ପୁଣି ତାଙ୍କର ଅଭିଳାଷ ଥିଲା ଯେ ସେହି ନାରୀଙ୍କ ପାଖରେ ସେ ତାଙ୍କର ସଚିବ ହୋଇ କାମ କରିବେ । ସେ ତାଙ୍କ ଉକ୍ତ ଲେଖାରେ ଯୁକ୍ତି କରିଛନ୍ତି, ଯଦି ୧୫ବର୍ଷ ବୟସରେ ଏଲିଜାବେଥ୍ ଇଂଲଣ୍ଡର ସାମ୍ରାଜ୍ଞୀ ହୋଇପାରିଲେ ଏଠି କାହିଁକି ଜଣେ ମହିଳା ଦେଶର ସର୍ବୋଚ୍ଚ ନେତ୍ରୀ ନ ହୋଇ ପାରିବେ ? ଉପସ୍ଥିତ ସମସ୍ତ ଜନତା ଗାନ୍ଧୀଜୀଙ୍କର ଏ ଉକ୍ତିଟି ଶୁଣି ସ୍ତବ୍ଧ ହୋଇଗଲେ । ତାପରେ ସୁମିତ୍ରା ଦେବୀ ମୋ ପାଖକୁ ଆସି ପଚାରିଲେ, ଆପଣ ଏ ଲେଖା କେଉଁଠାରୁ ପାଇଲେ ? ମୁଁ ହସିହସି କହିଲି, "ଆପଣ ଖୋଦ୍ ଗାନ୍ଧୀଜୀଙ୍କ ନାତୁଣୀ । ଆପଣ ମୋତେ ପଚାରୁଛନ୍ତି ଏ ଲେଖା ମୁଁ କେଉଁଠାରୁ ପାଇଲି ! ଲେଖାଟା ଆପଣଙ୍କୁ ପ୍ରଥମେ ମିଳିବା ଉଚିତ୍ ଥିଲା" । ସେ କଥାଟା ବୁଝିଗଲେ ଓ ମୋ ଠାରୁ ସେ ଉକ୍ତିଟି ଟିପି ନେଲେ ।

ଡଃ ଲୋହିଆ ଇଂରାଜୀ ଭାଷାରେ ଯେଉଁ ପ୍ରଖ୍ୟାତ Mankind ପତ୍ରିକା ପ୍ରକାଶ କଲେ ସେ ସଂକ୍ରାନ୍ତରେ ଗୋଟିଏ ଦୁଃଖଦ ଘଟଣା ମୋ ମନରେ ଲିପିବଦ୍ଧ ହୋଇଯାଇଛି । ସେତେବେଳେ ପୃଥିବୀ ବସ୍ତୁତଃ ଦୁଇଭାଗ ହୋଇଯାଇଥିଲା । ସତେ କି ଯୁକ୍ତରାଷ୍ଟ୍ର ଆମେରିକା ଏବଂ ସୋଭିଏତ୍ ରୁଷିଆ ପୃଥିବୀକୁ ନିଜ ଭିତରେ ଦୁଇଭାଗ କରି ବାଣ୍ଟି ନେଇଥିଲେ । ଡଃ ଲୋହିଆ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ଅନଗ୍ରସର ଦେଶ ଅର୍ଥାତ୍, 'ତୃତୀୟ ବିଶ୍ୱ' ରୂପେ ପରିଚିତ ଦେଶମାନଙ୍କ ସମସ୍ୟା ମୁଖ୍ୟତଃ ଆଲୋଚନା କରିବା ପାଇଁ Mankind ପତ୍ରିକାର ପରିକଳ୍ପନା କରିଥିଲେ । ଏଥିପାଇଁ ଏହାର ସମ୍ପାଦନା ମଣ୍ଡଳୀରେ ସେ ଉଭୟ ଯୁକ୍ତରାଷ୍ଟ୍ର ଆମେରିକା ତଥା ସୋଭିଏତ୍ ରୁଷିଆରୁ ଏପରି ଦୁଇ ଜଣ ସଭ୍ୟ ରଖିବାକୁ ଚାହୁଁଥିଲେ ଯେ କି ସେହି ତୃତୀୟ ବିଶ୍ୱ ସ୍ୱାର୍ଥକୁ ସମର୍ଥନ ଜଣାଉଥିବା ସଙ୍ଗେ ସଙ୍ଗେ ସେ ସବୁ ଦେଶକୁ ଆମେରିକା ଓ ରୁଷିଆ କବଳିତ କରିବା ପାଇଁ ଚଳାଇଥିବା ଅପଚେଷ୍ଟାର ବିରୋଧ କରୁଥିବେ । ସେହିପରି ଜଣେ ବ୍ୟକ୍ତି ଥିଲେ ଆମେରିକାର ମାର୍ଗୋ ସ୍କିନର୍ । ମୁଁ ୧୯୬୦ରେ ସଂଯୁକ୍ତ ସୋସାଲିଷ୍ଟ ଦଳର ସମ୍ପାଦକ ଥିବାବେଳେ ଶ୍ରୀମତୀ ସ୍କିନର୍ ହାଇଦ୍ରାବାଦରେ ଅନ୍ୟତମ ସମ୍ପାଦକ ରୂପେ ଯୋଗ ଦେଇଥିଲେ ଏବଂ ଫଳତଃ ମୋର ସହକର୍ମୀ ହୋଇଗଲେ । ସେତେବେଳେ ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ ଭାରତର ପ୍ରଧାନମନ୍ତ୍ରୀ ଥାଆନ୍ତି । ସ୍କିନର୍ ଭାରତରେ ଯେତିକି କାଳ ରହିବା ପାଇଁ ଅନୁମତି ପାଇଥିଲେ ସେ ସମୟ ଅବଧି ପୂରିଗଲା । ଶାସ୍ତ୍ରୀ ନିଜର ଅଫିସରମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ଅଡ଼ିବସିଲେ ଯେ ସ୍କିନରଙ୍କ ଭାରତ ରହଣୀ ସମୟ ଅବଧି ପୂରି ଯାଇଥିବାରୁ ସେ ତୁରନ୍ତ

ଭାରତ ଛାଡ଼ିବାକୁ ବାଧ୍ୟ । କିନର ଜଣେ ଅସାଧାରଣ ବୁଦ୍ଧିଜୀବୀ ଓ ସେ ଏକ ନିର୍ଦ୍ଦିଷ୍ଟ ଦାୟିତ୍ୱରେ ଅଛନ୍ତି - ଏଣୁ ସରକାର ତାଙ୍କ ନିଷ୍ପତ୍ତିର ପୁନର୍ବିଚାର କରନ୍ତୁ ବୋଲି ସରକାରଙ୍କୁ ନିବେଦନ କରାଗଲା । ମାତ୍ର କିଛି ଫଳ ହେଲା ନାହିଁ । ସରକାରଙ୍କ ବୈଦେଶିକ ବିଭାଗର ଅଫିସରମାନେ ଯେଉଁଦିନ ତାଙ୍କୁ ନେବାକୁ ଆସିଲେ, ମୁଁ ସେଠି ଉପସ୍ଥିତ ଥିଲି । କିନର୍ ସତ୍ୟାଗ୍ରହ କଲେ । ମାତ୍ର ତା ସତ୍ତ୍ୱେ ତାଙ୍କୁ ବଳ ପ୍ରୟୋଗ କରି ନିଆଯାଇଥିଲା ।

ମୁଁ କେବେ ବି ରାଜ୍ୟ ବିଧାନସଭା ପ୍ରାର୍ଥୀ ହୋଇ ନାହିଁ । ମୋତେ ସବୁବେଳେ ଲାଗିଛି ସଂସଦ ଅପେକ୍ଷା ଏଠି ଅଧିକ ସଙ୍କୀର୍ଣ୍ଣତା । ଶାଗଭିଆ, ପେଜଭିଆ, ବିବାଦ ଅଧିକ ତୀବ୍ର । ଏଠି ମୁଖ୍ୟମନ୍ତ୍ରୀ ହେବାପାଇଁ ବିଜୁବାବୁ ମୋତେ ପ୍ରଲୋଭନ ଦେଖାଇଥିଲେ ମଧ୍ୟ ସେଥିରେ ମୋର ଆଗ୍ରହ ସୃଷ୍ଟି ହୋଇ ନାହିଁ । କାରଣ ଏଠି କେବଳ ନବକୃଷ୍ଣ ଚୌଧୁରୀଙ୍କୁ ଛାଡ଼ି ଦେଲେ ଆଉ ସବୁ ଯିଏ ମୁଖ୍ୟମନ୍ତ୍ରୀ ହେଲେ ସବୁ ଦୁର୍ନୀତିଗ୍ରସ୍ତ । ନବବାବୁଙ୍କର ସେହି 'ଦୋଷ' ହେତୁ ତାଙ୍କୁ ହଟାଇବା ପାଇଁ ଯେପରି ପେଞ୍ଚ ପାଞ୍ଚ ହେଲା ସେ ସବୁ ମୁଁ ଜାଣିଥିଲି । ମୁଁ ବି କେବେ ବିଜୁବାବୁଙ୍କର ରବରଷ୍ଟାମ୍ପ ମୁଖ୍ୟମନ୍ତ୍ରୀ ହୋଇପାରି ନଥାନ୍ତି କିମ୍ବା ଦୁର୍ନୀତି ସହିତ ମଧ୍ୟ ସାଲିସ କରିପାରି ନଥାନ୍ତି । ବିଜୁବାବୁ ପୂର୍ବରୁ ଯଦି ନୀଳମଣି ରାଉତରାୟଙ୍କ ନାମ ନନେଇଥାଆନ୍ତେ ତଥାପି ମୁଁ ସେ ପ୍ରସ୍ତାବରେ ରାଜି ହୋଇ ନଥାଆନ୍ତି ।

ମୁଁ ଡଃ. ଲୋହିଆଙ୍କ ଠାରୁ ଏତିକି ଶିକ୍ଷା କରିଥିଲି ଯେ, ଏକ ବୃହତର ସ୍ୱପ୍ନକୁ ରୂପାୟିତ କରିବା ପାଇଁ ଭୋଟ୍ ରାଜନୀତି ଏକ ଅସ୍ତ୍ର ହୋଇପାରେ । ମାତ୍ର, ତାହା ଏକ ବୃତ୍ତି ବା ପେଶା ହେବା ଅନୁଚିତ୍ । ଡଃ. ଲୋହିଆଙ୍କ ନିର୍ଦ୍ଦେଶରେ ମୁଁ ଭୋଟ୍ ରାଜନୀତିରେ ପ୍ରବେଶ କରିଥିଲି । କ୍ଷମତାରେ ରହି କ୍ଷମତା ରାଜନୀତିର ବାହାର ଭିତର ସହିତ ପରିଚିତ ହେଲି । କ୍ଷମତାରେ ଥିବା ବେଳେ ମଧ ଯେତେବେଳେ ହୃଦ୍‌ବୋଧ ହୋଇଛି "ମୁଁ କିଛି କରିପାରୁନାହିଁ" ସେତେବେଳେ କ୍ଷମତାରୁ ଓହରି ଆସିଛି । ୧୯୭୭ ନିର୍ବାଚନରେ ଜିତି କେନ୍ଦ୍ରରେ ମନ୍ତ୍ରୀ ଥିବା ବେଳେ ମୁଁ ଏକମାତ୍ର ମନ୍ତ୍ରୀ ଯିଏ ସ୍ୱତଃ ଇସ୍ତଫା ଦେଇଦେଇଥିଲା । କାରଣ ସେତେବେଳେ ମୁଁ ଅନୁଭବ କରିଥିଲି ଯେ, ଲୋକ ପ୍ରତିନିଧି ହିସାବରେ ମୁଁ ଲୋକଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିପାରୁ ନାହିଁ । କୌଣସି ଗୁରୁତର ସମସ୍ୟାର ସମ୍ମୁଖୀନ ହେଲାବେଳେ ସଠିକ ସମାଧାନ ପାଇଁ ମୋ ବିବେକର ଆହ୍ୱାନ ଶୁଣିବା ପାଇଁ ମୁଁ ସତତ ଚେଷ୍ଟା କରିଛି । ମୋ ବିବେକର ଅନେକ ପ୍ରହରୀ ମଧ୍ୟ ମୋତେ ସେ ଦିଗରେ ସାହାଯ୍ୟ କରିଛନ୍ତି । ସେହିଭଳି ଜଣଙ୍କୁ ମୋର କୃତଜ୍ଞତା ନ ଜଣାଇଲେ ମୁଁ ନିଜକୁ ଅପରାଧୀ ମଣିବି ।

ମୋ ଜୀବନରେ ସରସତୀଙ୍କର ଅବଦାନ କଥା ତ ସେ ବିଶେଷ କିଛି ଲେଖିବା ପାଇଁ ବାରଣ କରିବେ । ମୋ ଜୀବନରେ ତାଙ୍କ ଭୂମିକା କଥା କହି ବସିଲେ ସିଏ ଏକା ଗୋଟାଏ ବହି ହୋଇଯିବ । ଏଣୁ ଏଠି ସେ ସବୁ ସ୍ମୃତି ଦୋହରାଉ ନାହିଁ । ତଥାପି ସେ ସଂପର୍କରେ ଦୁଇ ତିନିପଦ ଏଠି କୁହାଯାଉ । ମୋର ସହଧର୍ମିଣୀ ସରସତୀ ଆକ୍ଷରିକ ଅର୍ଥରେ ମୋର ସହଧର୍ମିଣୀ । ସେ ନିଜେ ଜଣେ ସମାଜବାଦୀ ହିସାବରେ ଜୀବନ ଆରମ୍ଭ କରିଥିଲେ । ତାଙ୍କ ସରକାରୀ ଚାକିରୀ କାଳରେ ସେ ଆଜି ଓଡ଼ିଶାରେ ବଡ ବଡ ନେତା

ରୂପେ ସୁପରିଚିତ ବନ୍ଧୁ ବ୍ୟକ୍ତିଙ୍କୁ ସେମାନଙ୍କ ଦୁର୍ଦ୍ଦିନରେ ନିୟମିତ ଆର୍ଥିକ ସାହାଯ୍ୟ କରିଛନ୍ତି । ସେମାନଙ୍କର ଅସୁସ୍ଥତା ବେଳେ ସେମାନଙ୍କ ଶୁଶ୍ରୁଷାର ଦାୟିତ୍ୱ ନେଇଛନ୍ତି । ଦୁର୍ଭାଗ୍ୟ ବଶତଃ ସେମାନଙ୍କ ଭିତରୁ କେତେକ ଆମ ଉଭୟଙ୍କ ପ୍ରତି ଯଥେଷ୍ଟ ଅନ୍ୟାୟ କରିଛନ୍ତି । ତଥାପି ସରସତୀ ଅଥବା ମୁଁ ଏଯାଏଁ ମଣିଷ ଉପରୁ ବିଶ୍ୱାସ ହରାଇ ନାହୁଁ । ସରସତୀ କେବଳ ସମାଜ କର୍ମୀଙ୍କୁ ନୁହେଁ ବହୁ ଦରିଦ୍ର ମେଧାବୀ ଛାତ୍ରଙ୍କୁ ପାଠ ପଢିବାରେ ଓ ଡାକ୍ତର ହେବାରେ ଧୈର୍ଯ୍ୟର ସହିତ ସାହାଯ୍ୟ କରି ଆସିଛନ୍ତି । ତାଙ୍କର ଏହି ମନୋବୃତ୍ତିରେ ଏବେ ମଧ୍ୟ ଭଟ୍ଟା ପଡ଼ି ନାହିଁ ।

ମୋର ବନ୍ଧୁ ଦେବୀ ପ୍ରସନ୍ନ ପଟ୍ଟନାୟକ କହନ୍ତି 'ବୁରି ନଜର୍ ବାଲେ'ଙ୍କ କୁଦୃଷ୍ଟିରୁ ସରସତୀ ମୋତେ ତାଙ୍କ ପଣତକାନିରେ ବନ୍ଧାଇ ରଖିଛନ୍ତି । ଏକଦମ୍ ସତ କଥା । ମୁଁ ମନ୍ତ୍ରୀ ଅଥବା ବାଚସ୍ପତି ଥିବାବେଳେ ସେ କୌଣସି ବନ୍ଧୁ, ଆତ୍ମୀୟଙ୍କୁ ମଧ୍ୟ ମୋ ପଦ ପଦବୀର ଦୁରୁପଯୋଗ କରିବାକୁ ଦେଇ ନାହାନ୍ତି । ନିଜେ ମଧ୍ୟ ସେପରି ଦୁରୁପଯୋଗ କରିବାଠ ଦୂରର କଥା ସବୁବେଳେ ମୋର ସହକର୍ମୀ ଓ କର୍ମଚାରୀମାନଙ୍କୁ ମନେ ପକାଇ ଦେଇଛନ୍ତି, "ମୋତେ ଡ: ସାଇଁ ରୂପେ ବ୍ୟବହାର କରନ୍ତୁ, ମିସେସ୍ ରବି ରାୟ ରୂପେ ନୁହେଁ" । ମୁଁ ମନ୍ତ୍ରୀ ଅଥବା ବାଚସ୍ପତି ଥିବାବେଳେ ସେ ନିଜ ଉପରେ ସୁଦ୍ଧା ଏପରି ଅନୁଶାସନ ପ୍ରୟୋଗ କରିଛନ୍ତି ଯେ ମୁଁ ଗସ୍ତରେ ଯିବାବେଳେ ମୋ ସହିତ ନଯିବା ଅଥବା ମୋ ସରକାରୀ ଗାଡ଼ି ନଚଢିବା ଇତ୍ୟାଦି ଦିଗରେ ସେ ବେଳେବେଳେ ଆବଶ୍ୟକତା ଠାରୁ ଅଧିକ ସତର୍କତା ଅବଲମ୍ବନ କରୁଥିଲେ । ସେ ଏହିଭଳି ଭାବେ ସର୍ବଦା ମୋର conscience keeper ହୋଇ ରହିଛନ୍ତି । ପ୍ରକୃତ ଅର୍ଥରେ ସେ ମୋର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ କହିଲେ ଆଦୌ ଅତିଶୟୋକ୍ତି ହେବ ନାହିଁ ।

ବହୁତ ଭାବିଚିନ୍ତି ୧୯୯୭ ସାଲରେ ମୁଁ କୌଣସି ରାଜନୈତିକ ଦଳରେ ନ ରହିବା ପାଇଁ ଦୃଢ଼ ନିଷ୍ପତ୍ତି ଗ୍ରହଣ କଲି । ଏଥିରୁ କେହି ଭାବିବା ଉଚିତ ନୁହେଁ ଯେ, ମୁଁ ରାଜନୀତିରୁ ନିଜକୁ ଅଲଗା କରିଦେଲି । ରାଜନୈତିକ ଦଳରୁ ନିଜକୁ ଅଲଗା କରିଦେବାର ଅର୍ଥ ହେଉଛି ଏହା ପରଠାରୁ ଦେଶର କୌଣସି ରାଜନୈତିକ ଦଳରେ ନିଜକୁ ସଂଶ୍ଳିଷ୍ଟ ବା ସଭ୍ୟଭୁକ୍ତ ନ ହେବା ପାଇଁ ସିଦ୍ଧାନ୍ତ ନେଲି । ଏହିପରି ଏକ ଦୃଢ଼ ସଂକଳ୍ପ ଗ୍ରହଣ ପରେ ପରେ ମୋର କିଛି ବନ୍ଧୁ ଓ ଶୁଭେଚ୍ଛୁ ଦିଲ୍ଲୀସ୍ଥ ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନରେ ଏକ ସମ୍ମିଳନୀର ଆୟୋଜନ କରିଥିଲେ । ଯେଉଁମାନେ ଏହି ସମ୍ମିଳନୀର ଉଦ୍ୟୋକ୍ତା ଥିଲେ ସେମାନେ ସମସ୍ତେ ଲୋକନାୟକ ଜୟପ୍ରକାଶଙ୍କ ପରିଚାଳିତ 'ସଂପୂର୍ଣ୍ଣ କ୍ରାନ୍ତି' ଆନ୍ଦୋଳନ (୧୯୭୪-୭୭)ରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ସେମାନଙ୍କ ମଧରେ ଥିଲେ ସର୍ବଶ୍ରୀ କୁଲ୍‌ଦୀପ ନାୟାର, ସୁପ୍ରିମ୍ କୋର୍ଟର ପୂର୍ବତନ ଜଷ୍ଟିସ୍ ପି. କେ ସାଓ୍ୱନ୍ତ ଏବଂ ଜନସତ୍ତାର ତତ୍‌କାଳୀନ ସଂପାଦକ ଶ୍ରୀଯୁକ୍ତ ପ୍ରଭାସ ଯୋଷୀ । ଏତଦ୍‌ବ୍ୟତୀତ ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ବହୁ ଅଧାପକ ବନ୍ଧୁ ମଧ ଏଥିରେ ଯୋଗ ଦେଇଥିଲେ । ଉକ୍ତ ସମ୍ମିଳନୀରେ ଉପସ୍ଥିତ ହୋଇଥିବା ବଂଧୁମାନେ 'ଲୋକଶକ୍ତି ଅଭିଯାନ' ନାମକ ଏକ ସଂଗଠନ ଗଢ଼ିବାର ସଂକଳ୍ପ ନେଲେ ।

ମୁଁ ମଧ୍ୟ ସେଥିରେ ଯୋଗଦେଇ ମୋର ଭାଷଣ ପ୍ରସଙ୍ଗରେ ସେଦିନ ପ୍ରାତଃ ସ୍ମରଣୀୟ ଯେଉଁ ସାତଜଣ ଜନନେତାଙ୍କ ନାମ ଉଲ୍ଲେଖ କରିଥିଲି ସେମାନେ ହେଲେ – ମହାତ୍ମାଗାନ୍ଧୀ, ନେତାଜୀ ସୁବାଷ ଚନ୍ଦ୍ର ବୋଷ, ଲୋକନାୟକ ଜୟପ୍ରକାଶ, ଡ଼ଃ ରାମମନୋହର ଲୋହିଆ, ଡ଼ଃ. ଆମ୍ବେଦକର, ଖାଁ ଅବଦୁଲ୍ ଗଫର୍ ଖାଁ ଓ ସ୍ୱାମୀ ବିବେକାନନ୍ଦ । ସେଦିନ ମୁଁ ଗୋଟିଏ କଥା ଉପରେ ଜୋର୍ ଦେଇ କହିଥିଲି ଯେ ଏହି ସାତଜଣ ନେତାଙ୍କ ବିଚାରକୁ ଭିତ୍ତିକରି ଯଦି ଦେଶରେ ଲୋକଶକ୍ତିକୁ ସଂଗଠିତ କରିବାର ପ୍ରୟାସ କରାଯିବ, ତାହାଲେ ଦେଶର ସାମଗ୍ରିକ ଉନ୍ନତି ଅଚିରେ ସମ୍ଭବ ହୋଇପାରିବ । ସେଠାରେ ଉପସ୍ଥିତ ସମସ୍ତ ଯୁବବନ୍ଧୁ ତଥା ଅନ୍ୟାନ୍ୟ ସମସ୍ତେ ମୋର ସେ ମତକୁ ସର୍ବାନ୍ତ କରଣରେ ଗ୍ରହଣ କରିନେଇଥିଲେ । ଦେଶର ଯୁବକମାନେ ହିଁ ଏହି ସଂଗଠନର ନେତୃତ୍ୱ ଗ୍ରହଣ କରିବେ ବୋଲି ସେଠାରେ ନିଷ୍ପତ୍ତି ହେଲା । ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟର ଅଧାପକ ଡଃ. ଆନନ୍ଦ କୁମାର ଏହାର ଆବାହକ ରହିଲେ । ଶ୍ରୀ ପ୍ରଫୁଲ୍ଲ ସାମନ୍ତରାୟ ଓଡ଼ିଶା ଶାଖାର ସଭାପତି ଅଛନ୍ତି । ମୁଁ ଲୋକଶକ୍ତି ଅଭିଯାନର ପୃଷ୍ଠପୋଷକ ରୂପେ ମୋର ଶକ୍ତି ମୁତାବକ ଉକ୍ତ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ନିମିତ୍ତ ପ୍ରୟାସ ଚଳାଇଛି ।

ଦେଶରେ ଉଦାରୀକରଣ, ଘରୋଇ କରଣ ଓ ଜଗତିକରଣ ଇତ୍ୟାଦି ନାମରେ ଦୀର୍ଘ ୧୦ ବର୍ଷ ହେବ ଯେଉଁ ଚକ୍ରାନ୍ତ ଚାଲିଛି ତା' ଦ୍ୱାରା ଦେଶର ଗରିବ ଗୁରୁବା ଏବଂ ବିଶେଷ କରି ଯୁବସମାଜ ଯେପରି ତଳିତଳାନ୍ତ ହେଲେଣି ସେ କଥା କାହାରିକୁ ଅଛପା ନାହିଁ । କେନ୍ଦ୍ର ତଥା ରାଜ୍ୟମାନଙ୍କରେ ଯେଉଁ ଦଳ ସରକାରରେ ଥାଉ ନା ପଛକେ ସେମାନେ ସାଧାରଣ ଲୋକଙ୍କ ଭାତ ପତ୍ରରେ ଧୂଳି ଦେଇ ସରକାରର ନୂତନ ଆର୍ଥିକନୀତି ଆଳରେ କେବଳ ନବ୍ୟସାମ୍ରାଜ୍ୟବାଦ ନୀତିକୁ ପ୍ରୋତ୍ସାହନ ଦେବାଛଡ଼ା ସେମାନଙ୍କର ଅନ୍ୟ ଗତ୍ୟନ୍ତର ନାହିଁ । କେବଳ ବାମପନ୍ଥୀ ଶକ୍ତିମାନେ ହୁଏତ ଏହାର ବ୍ୟତିକ୍ରମ ହୋଇପାରନ୍ତି । ସାରା ଦେଶରେ ଯେ ପର୍ଯ୍ୟନ୍ତ ଚାଷୀ, ମୂଲିଆ, ଶ୍ରମିକ, ଯୁବକ ଓ ସର୍ବୋପରି ନାରୀ ସମାଜ ଏହା ବିରୁଦ୍ଧରେ ସଂଗଠିତ ନ ହୋଇଛନ୍ତି ସେ ପର୍ଯ୍ୟନ୍ତ ଦେଶ ରସାତଳଗାମୀ ହେବା ଅତି ସ୍ୱାଭାବିକ ।

ଏଇ ନିକଟରେ ଘଟିଯାଇଥିବା କେତୋଟି ଘଟଣା ଏଇ ପରିପ୍ରେକ୍ଷୀରେ ହଠାତ୍ ମନକୁ ଆସିଯାଉଛି । ଆଜି ଟାଙ୍ଗରପଡ଼ା ଓ ବେଦାନ୍ତ ଖଣି ମାମଲା ନେଇ ରାଜ୍ୟରେ ପ୍ରବଳ ଝଡ଼ ଉଠିଛି । ଶହ ଶହ କୋଟି ଟଙ୍କା ଲାଞ୍ଚ ନେଇ ମୁଖ୍ୟମନ୍ତ୍ରୀ ବିଭିନ୍ନ ଶିଳ୍ପପତିଙ୍କୁ ଅନୁଗ୍ରହିତ କରୁଥିବା ସମ୍ବାଦ ପ୍ରକାଶ ପାଉଛି । ହାଇକୋର୍ଟର ଖଣି ଲିଜ୍ ବାତିଲ୍ ରାୟ ଏ ସନ୍ଦେହକୁ ଅଧିକ ଦୃଢ଼ିଭୂତ କରିଛି । ତେବେ ଏସବୁ ସମସ୍ୟା ଯେଉଁମାନେ ହାତକୁ ନେଇ ସଂଗ୍ରାମ ଆରମ୍ଭ କରିଛନ୍ତି । ସେମାନଙ୍କୁ ମନେ ରଖିବାକୁ ହେବ ଯେ ଏ ସଂଗ୍ରାମ ଦୁଃସାଧ୍ୟ ଏବଂ ଦୀର୍ଘ ହେବ । ଅତୀତରେ କଙ୍ଗୋର ରାଷ୍ଟ୍ରପତି ଲୁମ୍ବୁମ୍ବା ଏବଂ ଚିଲିର ରାଷ୍ଟ୍ରପତି ଆୟେନ୍ଦେ ନିଜ ନିଜ ଦେଶରେ ମୂଲ୍ୟବାନ ଖଣିମାନଙ୍କୁ ରାଷ୍ଟ୍ରାୟତ୍ତ କରିବା ପରେ ତାଙ୍କୁ ପୁଞ୍ଜିପତି ଓ ସାମ୍ରାଜ୍ୟବାଦୀଙ୍କ ମିଳିତ ଚକ୍ରାନ୍ତ ଫଳରେ ହତ୍ୟା କରାଯାଇଥିଲା । ସେ ପ୍ରକ୍ରିୟା ଆମ

ଦେଶରେ ମଧ୍ୟ ଆରମ୍ଭ ହୋଇଗଲାଣି । କେନ୍ଦ୍ରରେ ଖଣି ବିଭାଗର ଜଣେ ଉଚ୍ଚପଦସ୍ଥ ଓଡ଼ିଆ ଆଇ.ଏ.ଏସ୍. ଅଫିସର ଶ୍ରୀ ମୋହନ ମହାପାତ୍ର କିଛିକାଳ ପୂର୍ବେ ଅତି ରହସ୍ୟଜନକ ଭାବେ ପ୍ରାଣ ହରାଇଛନ୍ତି । କୁହାଯାଉଛି ସେ ଏକ ବହୁତଳ ହର୍ମ୍ୟ (ଯେଉଁଠାରେ କି ତାଙ୍କ ଦପ୍ତର କାର୍ଯ୍ୟାଳୟ ଥିଲା)ରୁ ଡେଇଁ ଆତ୍ମହତ୍ୟା କରିଛନ୍ତି । ତାହା ଆତ୍ମହତ୍ୟା କି ହତ୍ୟା, ସେ ରହସ୍ୟ ଏ ଯାଏ ଉଦ୍‌ଘାଟିତ ହୋଇ ପାରିଲା ନାହିଁ । ଏବେ ଯେଉଁମାନେ ଉଦାରୀକରଣ ଓ ଜଗତିକରଣକୁ ପ୍ରତିରୋଧ କରିବେ, ପୁଞ୍ଜିବାଦ ଓ ନବସାମ୍ରାଜ୍ୟବାଦକୁ ମୁକାବିଲା କରିବେ ସେମାନେ 'ହତ୍ୟା', ଏବଂ ତଥାକଥିତ 'ଆତ୍ମହତ୍ୟା', ବା 'ରାସ୍ତା ଦୁର୍ଘଟଣା' ଇତ୍ୟାଦିର ଶୀକାର ହେବା ବିଚିତ୍ର ନୁହେଁ ।

ନିକଟରେ କାଞ୍ଚିକାମକୋଟି ଶଙ୍କରାଚାର୍ଯ୍ୟ ଜେଲ୍ ଯାଇଛନ୍ତି । ବହୁ ନାରକୀୟ ଘଟଣା ତାଙ୍କ ସମ୍ପର୍କରେ ଧୀରେ ଧୀରେ ଉଦ୍‌ଘାଟିତ ହେଉଛି । ତେବେ ଏହି ବାବାମାନଙ୍କର ଆମ ମଧ୍ୟବିତ୍ତ ଶ୍ରେଣୀ ହିଁ ମୁଖ୍ୟ ପୃଷ୍ଠପୋଷକ । ସାଧାରଣ ଜନତା ଏମାନଙ୍କୁ ବିଶେଷ ଗୁରୁତ୍ୱ ଦିଅନ୍ତି ନାହିଁ । ଏହି ପ୍ରସଙ୍ଗରେ ମୋର ଦୁଇଟି ଘଟଣା ମନେ ପଡ଼ୁଛି । ୧୯୬୭ରେ ମୁଁ ଲୋକସଭା ପାଇଁ ପୁରୀରୁ ପ୍ରାର୍ଥୀ ଥାଏ । ସେ ସମୟରେ ପୁରୀର ତତ୍‌କାଳୀନ ଶଙ୍କରାଚାର୍ଯ୍ୟ ଗୋହତ୍ୟା ବିରୁଦ୍ଧରେ ଅନଶନ କରିଥାଆନ୍ତି । ମୁଁ ନିର୍ବାଚନ ପ୍ରଚାର କାର୍ଯ୍ୟରେ ପୁରୀ ସାହିବସ୍ତି ବୁଲୁଥାଏ । ଶଙ୍କରାଚାର୍ଯ୍ୟଙ୍କ ଅନଶନର ପ୍ରତିକ୍ରିୟା ଜାଣିବା ପାଇଁ ଯେଉଁଠି ବି ସାଧାରଣ ଲୋକଙ୍କୁ ପଚାରୁଥାଏ ସେମାନେ ହସି ହସି କହୁଥାଆନ୍ତି "ଆଜ୍ଞା, ସେ ରାତିରେ ଖାଇ ଦିନରେ ଅନଶନ କରୁଛନ୍ତି ।" ଏହା ହୁଏତ ସତ୍ୟ ହୋଇ ନଥାଇପାରେ, ମାତ୍ର ସ୍ଥାନୀୟ ସାଧାରଣ ମଳିମୁଣ୍ଡିଆ ଲୋକଙ୍କ ଆଖିରେ ତାଙ୍କ ଭାବମୂର୍ତ୍ତୀ ଏହିପରି ।

ଏଇ ପରିପ୍ରେକ୍ଷୀରେ ଗୋଟିଏ ମଜା କଥା ମନେ ପଡ଼ୁଛି ଏମାର ମଠ ମହନ୍ତଙ୍କ ସମ୍ପର୍କରେ । ୧୯୩୭ରେ ମୁଁ ଗୋପ୍‌ରେ ୪ର୍ଥ ଶ୍ରେଣୀର ଛାତ୍ର । ସେତେବେଳେ ଭାରତୀୟମାନଙ୍କୁ 'ଦାୟିତ୍ୱପୂର୍ଣ୍ଣ' ସରକାର ଗଢ଼ିବା ପାଇଁ ସୁଯୋଗ ଦେବାକୁ ଇଂରେଜ ସରକାର ଘୋଷଣା କରିଥାଆନ୍ତି ଓ ପ୍ରଥମ ନିର୍ବାଚନ ହେଉଥାଏ । କଂଗ୍ରେସରୁ ଛିଡ଼ା ହୋଇଥାଆନ୍ତି ବିଶିଷ୍ଟ ଚଷାନେତା (ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ) ଶ୍ରୀ ମୋହନ ଦାସ । ତାଙ୍କ ବିରୁଦ୍ଧରେ ସାଧୀନ ଭାବେ ଛିଡ଼ା ହୋଇଥାନ୍ତି ଏମାର ମଠ ମହନ୍ତ । ଏମାର ମଠ ମହନ୍ତ ଖୁବ୍ ବିତ୍ତଶାଳୀ, ବିରାଟ ଜମି ମାଲିକ । ସେତେବେଳେ ଅବଶ୍ୟ କେବଳ ଟିକସଦାତାଙ୍କର ଭୋଟ ଦାନ ଅଧିକାର ଥିଲା । ମହନ୍ତ ପୁରୀରୁ ଅବଢ଼ା ମଗାଇ ଶହ ଶହ ଲୋକଙ୍କୁ ଖୁଆଇଲେ । ତାଙ୍କୁ ଭୋଟ ଦେବାପାଇଁ ଅବଢ଼ା ଛୁଆଁଇ ଶପଥ କରାଇଲେ । ବିରାଟ କୀର୍ତ୍ତନ ଶୋଭାଯାତ୍ରା କରାଇଲେ । ଅପରପକ୍ଷରେ କଂଗ୍ରେସର ସ୍ଲୋଗାନ୍ ଥାଏ "ମଠ ଧନ କୋଠ ହେଉ", "ଏମାର ମଠର ଅଭଡ଼ା ଖାଅ, ହଳଦିଆ ବାକ୍ସ (ଅର୍ଥାତ୍, କଂଗ୍ରେସ ବାକ୍ସ)ରେ ଭୋଟ ଦିଅ ।" କଂଗ୍ରେସ ଶତକଡ଼ା ୯୫ ଭୋଟ ପାଇଥିଲା ଓ ମହନ୍ତେ ଅମାନତ ହରାଇଲେ ।

ଏଇ ନିକଟରେ ମୋ ଦୃଷ୍ଟିକୁ ଆସିଥିବା ଏକ ଦୁର୍ନୀତି ସଂପର୍କରେ ଯଥାସାଧ୍ୟ ମୁଁ ଏକ ପଦକ୍ଷେପ ନେଇଛି । ବିହାରର ଧାନବାଦ୍ ଦେଶର ତଥା ଉକ୍ତ ରାଜ୍ୟର ଏକ ବିଶେଷ ବାଣିଜ୍ୟିକ କେନ୍ଦ୍ର । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହେରୁ ଧାନ୍‌ବାଦର ସିନ୍ଦ୍ରୀଠାରେ ଦେଶର ପ୍ରଥମ ପବ୍ଲିକ୍ ସେକ୍ଟର ସାର କାରଖାନା ଶୁଭ ଦେଇଥିଲେ । ସେତେବେଳେ ଉକ୍ତ କାରଖାନା ତା'ର ସୁପରିଚାଳନା ପାଇଁ ବେଶ୍ ଖ୍ୟାତି ଅର୍ଜନ କରିଥିଲା । ବର୍ତ୍ତମାନ ଉକ୍ତ ସହର ଦେଶରେ ଅପରାଧୀକରଣର ଏକ ପ୍ରମୁଖ କେନ୍ଦ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ମାନବ ଅଧିକାରର ସୁରକ୍ଷା ପାଇଁ ସତତ ଲଢ଼େଇ କରୁଥିବା ମୋର ବନ୍ଧୁ ଶ୍ରୀ ରାମ ଆଶ୍ରେ ସିଂଙ୍କ ଅନୁରୋଧକ୍ରମେ ମୁଁ ବହୁତ ସଭା ସମିତିରେ ଯୋଗ ଦେବା ପାଇଁ ସେ ସହରକୁ ଯାଇଛି । ଶ୍ରୀ ସିଂ ଧାନବାଦ ସହରରେ ବ୍ୟାପ୍ତ ଭ୍ରଷ୍ଟାଚାର ଓ ଅପରାଧୀକରଣ ବିରୁଦ୍ଧରେ ଧାରାବାହିକ ଭାବେ ଲଢୁଥିବାରୁ ତାଙ୍କୁ ଅପରାଧୀମାନଙ୍କର ବହୁବାର ଶୀକାର ହେବାକୁ ପଡ଼ିଛି । ସେ ଗତ ଦୁଇମାସ ତଳେ ମୋତେ ଦିଲ୍ଲୀରେ ଭେଟି ଥିଲେ । କେନ୍ଦ୍ର ସରକାରଙ୍କ ଦ୍ୱାରା ପରିଚାଳିତ ସିନ୍ଦ୍ରୀ ସାର କାରଖାନାରେ ଚାଲିଥିବା ଭ୍ରଷ୍ଟାଚାର ସମ୍ପର୍କରେ ସେ ମୋତେ ଆବଶ୍ୟକୀୟ ସମସ୍ତ ଦଲିଲ୍ ଦସ୍ତାବିଜ୍ ଦେଇଛନ୍ତି ଓ ସେ ବିଷୟରେ ପ୍ରଧାନମନ୍ତ୍ରୀଙ୍କୁ ଅବଗତ କରାଇବା ପାଇଁ ମୋତେ ଅନୁରୋଧ କରିଛନ୍ତି । ଉକ୍ତ କାରଖାନାର ଉପରିସ୍ଥ କର୍ମଚାରୀମାନେ କିପରି ଶହ ଶହ କୋଟି ଟଙ୍କା ତୋଷାରପାତ କରିଛନ୍ତି ସେ ସମ୍ପର୍କୀୟ ଏକ ରିପୋର୍ଟ ମଧ୍ୟ ସେ ମୋତେ ଦେଇଛନ୍ତି । ମୁଁ ସେଗୁଡ଼ିକୁ ଅନୁଧ୍ୟାନ କଲାପରେ ପ୍ରଧାନମନ୍ତ୍ରୀ ଡକ୍ଟର ମନମୋହନ ସିଂଙ୍କୁ ଭେଟିବା ପାଇଁ ମନସ୍ଥ କରିନେଲି । ୧୯୯୦ ସାଲରୁ ତାଙ୍କ ସହିତ ମୋର ବେଶ୍ ବ୍ୟକ୍ତିଗତ ପରିଚୟ ଥିବାରୁ ତାଙ୍କୁ ମୁଁ ନିଜେ ଟେଲିଫୋନ୍ କରି ନିର୍ଦ୍ଦିଷ୍ଟ ସମୟ ଠିକ୍ କରି ଭେଟିଲି । ତାଙ୍କ ସହିତ ଆଲୋଚନା ପରେ ଏ ବିଷୟରେ ଯାହା କରଣୀୟ ତାହା କରିବେ ବୋଲି ସେ ମୋତେ ପ୍ରତିଶ୍ରୁତି ଦେଲେ । ଏ ବିଷୟରେ ସେ କି ପ୍ରକାର କାର୍ଯ୍ୟାନୁଷ୍ଠାନ କରୁଛନ୍ତି ତାହା ମୋତେ ଜଣାଇବାର ଅପେକ୍ଷାରେ ଅଛି ।

ଏବେ ଭାରତ ସରକାର ପାର୍ଲାମେଣ୍ଟରେ "ପେଟେଣ୍ଟ କାନୁନ୍" ସଂଶୋଧନ ବିଲ୍ ଆଣିବେ ବୋଲି ଘୋଷଣା କରିଛନ୍ତି । ଏକଥା କାହାରିକୁ ଅଛପା ନାହିଁ ଯେ ୧୯୯୨ ସାଲ୍‌ରେ ନରସିଂହ ରାଓଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ଭାରତର ୧୯୭୦ ସାଲର ପେଟେଣ୍ଟ କାନୁନରେ ଆମୂଳଚୂଳ ପରିବର୍ତ୍ତନ କରିବା ପାଇଁ ନିଷ୍ପତ୍ତି ନେଇ ସେତେବେଳେ ଡକ୍ଟର ମନମୋହନ ସିଂ ଭାରତର ଅର୍ଥମନ୍ତ୍ରୀ ହେଲେ । ଏହା ପୂର୍ବରୁ ସେ ବିଶ୍ୱ ବ୍ୟାଙ୍କର ଅର୍ଥନୀତିକ ପରାମର୍ଶଦାତା ରୂପେ କାର୍ଯ୍ୟ କରୁଥିବାରୁ ଭାରତବର୍ଷରେ ଉଦାରୀକରଣ କାର୍ଯ୍ୟକ୍ରମକୁ ସୁଚାରୁରୂପେ ପରିଚାଳନା କରିପାରିବାର ତାଙ୍କର ବିଶେଷ ଯୋଗ୍ୟତା ଅଛି ବୋଲି କୁହାଯାଉଥିଲା । ସେ ସେଇଆ ହିଁ କଲେ । ଏଇ ପରିପ୍ରେକ୍ଷୀରେ ସରକାର ସେତେବେଳେ ଭାରତର ପ୍ରଚଳିତ ପେଟେଣ୍ଟ କାନୁନ୍‌ରେ ଆମୂଳଚୂଳ ପରିବର୍ତ୍ତନ କରିବାର ନୀତିକୁ

ସଂଶୋଧନ କରିବା ପାଇଁ ଘୋଷଣା ମଧ୍ୟ କଲେ । ମୁଁ ସେତେବେଳେ ଲୋକସଭାର ସଭ୍ୟ ଥିଲି । ପାର୍ଲାମେଣ୍ଟରେ ବାମପନ୍ଥୀ ଦଳ ଓ ଆମ୍ଭେମାନେ ଭାରତରେ ପ୍ରଚଳିତ ୧୯୭୦ର "ପ୍ରୋସେସ୍ ପେଟେଣ୍ଟ କାନୁନ୍"କୁ କସ୍ମିନ୍ କାଳେ ନ ବଦଳାଇବା ପାଇଁ ସଂସଦ ଭିତରେ ଓ ବାହାରେ ଆନ୍ଦୋଳନ ମଧ୍ୟ କଲୁ । ଏବେ କେନ୍ଦ୍ରରେ ମନମୋହନଙ୍କ ସରକାର ବିଶ୍ୱ ବାଣିଜ୍ୟ ସଂଘର କଥାରେ ୧୯୭୦ ମସିହାରୁ ପ୍ରଚଳିତ ପେଟେଣ୍ଟ କାନୁନ୍‌କୁ ବଦଳାଇ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ସ୍ୱାର୍ଥ ରକ୍ଷା ପାଇଁ ବଦ୍ଧ ପରିକର ହୋଇଛନ୍ତି ।

ଆମ ଦେଶରେ ୧୯୭୦ ପେଟେଣ୍ଟ କାନୁନ୍ ଯୋଗୁଁ ଜୀବନ ରକ୍ଷା ପାଇଁ ଉଦ୍ଦିଷ୍ଟ ଏଲୋପାଥିକ ଔଷଧଗୁଡ଼ିକୁ ସାଧାରଣ ଗରୀବ ଗୁରୁବା ଲୋକେ ବେଶ୍ ଶସ୍ତା ଦରରେ ପାଇ ପାରୁଛନ୍ତି । ଭାରତର ଦେଶୀ ଡ୍ରଗ୍ କମ୍ପାନୀମାନେ ବେଶ୍ ଶସ୍ତା ଦରରେ ଜୀବନ ରକ୍ଷା ପାଇଁ ଉପଯୋଗୀ ଔଷଧଗୁଡ଼ିକୁ ସାଧାରଣ ଲୋକମାନଙ୍କୁ ଯୋଗାଇବାରେ ମଧ୍ୟ ସମର୍ଥ ହୋଇ ପାରିଛନ୍ତି । ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ଇନ୍ଦର କୁମାର ଗୁଜ୍‌ରାଲ୍‌ଙ୍କର ଅଧ୍ୟକ୍ଷତାରେ ଏକ ସଂସଦୀୟ କମିଟି ସର୍ବସମ୍ମତିକ୍ରମେ ୧୯୭୦ ସାଲରେ ତତ୍କାଳୀନ ପାର୍ଲାମେଣ୍ଟ ଦ୍ୱାରା ପାସ୍ ହୋଇଥିବା ପେଟେଣ୍ଟ କାନୁନ୍‌କୁ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ରକ୍ଷା ଦୃଷ୍ଟିରୁ କସ୍ମିନ୍ କାଳେ ବଦଳା ଯାଇ ପାରିବ ନାହିଁ ବୋଲି ସାବଧାନ ବାଣୀ ଶୁଣାଇବା ସତ୍ତ୍ୱେ ବର୍ତ୍ତମାନ କେନ୍ଦ୍ର ସରକାର ବିଶ୍ୱବାଣିଜ୍ୟ ସଂସ୍ଥାର ନିର୍ଦ୍ଦେଶ ପାଳନ କରିବା ପାଇଁ ଏହା ବଦଳାଇବାକୁ ବଦ୍ଧ ପରିକର ।

ଭାରତବର୍ଷରେ ଉଦାରୀକରଣକୁ କାର୍ଯ୍ୟକରିବା ଦୃଷ୍ଟିରୁ ଭାରତ ସରକାର ୧୯୭୦ ସାଲ ପେଟେଣ୍ଟ କାନୁନ୍‌କୁ ପରିବର୍ତ୍ତନ କରିବା ପାଇଁ ବଦ୍ଧ ପରିକର ବୋଲି ଭାରତ ସରକାରଙ୍କ ବର୍ତ୍ତମାନର ବାଣିଜ୍ୟ ବିଭାଗ ମନ୍ତ୍ରୀ କମଲନାଥଙ୍କ ବିବୃତିରୁ ସ୍ପଷ୍ଟ ହୋଇସାରିଛି । ଦେଶରେ ଜନସାଧାରଣଙ୍କ ପକ୍ଷରୁ ପ୍ରବଳ ପ୍ରତିରୋଧ ନ ହେଲେ ସରକାର ୨୦୦୫ ବଜେଟ୍ ଅଧିବେଶନରେ ଏହାକୁ ପାସ୍ କରାଇବା ପାଇଁ ବଦ୍ଧ ପରିକର ହୋଇଛନ୍ତି । ଏହାର ଭୟଙ୍କର ପରିଣତି ଅଗ୍ରେ ଧାବତି ! ଧାବତି ! ଏହା ଫଳରେ ଜୀବନ ଉପଯୋଗୀ ଔଷଧର ଦାମ ହୁ ହୁ ହୋଇ ବଢ଼ିବା ଅବଶ୍ୟମ୍ଭାବୀ । ସାଧାରଣ ଲୋକ ବିଭିନ୍ନ ପ୍ରକାର ସଂକ୍ରାମକ ରୋଗ ଯଥା- ହଇଜା, ମ୍ୟାଲେରିଆ, ଏଡ୍‌ସ୍ ପ୍ରଭୃତିର ସାଧରଣ ଔଷଧ - ଯାହାର ଦାମ୍ ଆକାଶ ଛୁଆଁ ହୋଇଯିବ - କିଣିବାରୁ ବଞ୍ଚିତ ହୋଇ ଶହ ଶହ ସଂଖ୍ୟାରେ ମୃତ୍ୟୁ ବରଣ କରିବେ । ମହାମାରୀ ହେତୁ ଦେଶ ମଶାଣିରେ ପରିଣତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ । ଏହାକୁ ଜନ ସାଧାରଣ କ'ଣ ମୁଣ୍ଡପାତି ସହିନେବେ ?

୧୯୩୦ "ୟଙ୍ଗ୍ ଇଣ୍ଡିଆ" ପତ୍ରିକାର ଜାନୁୟାରୀ ସଂଖ୍ୟାରେ ଗାନ୍ଧୀଜୀ ଇଷ୍ଟ ଇଣ୍ଡିଆ କମ୍ପାନୀ ଭଳି ସେ ସମୟର ବହୁରାଷ୍ଟ୍ରୀୟ କମ୍ପାନୀଙ୍କ ଶୋଷଣ ସମ୍ପର୍କରେ ଯେଉଁ ବିଶ୍ଳେଷଣ କରିଛନ୍ତି ତାହା ବିଶେଷ ପ୍ରଣିଧାନଯୋଗ୍ୟ । ସେତେବେଳେ ଗାନ୍ଧୀଜୀ ଯେଉଁ ସତର୍କ ବାଣୀ

ଶୁଣାଇଥିଲେ ଆଜି ଉଦାରୀକରଣର କୁପରିଣାମ ପରିପ୍ରେକ୍ଷୀରେ ତାହା ଭାରତ ତଥା ଅନ୍ୟାନ୍ୟ ବିକାଶଶୀଳ ଦେଶପାଇଁ ଅକ୍ଷରେ ଅକ୍ଷରେ ସତ ପ୍ରମାଣିତ ହୋଇଛି । ଗାନ୍ଧୀଜୀଙ୍କ ନିମ୍ନୋକ୍ତ ଉକ୍ତିରୁ ତାହା ବେଶ୍ ପରିସ୍ଫୁଟ ହୋଇଯିବ :

"ବର୍ଷ ପରେ ବର୍ଷ ଭାରତରୁ କୋଟି କୋଟି ମୁଦ୍ରା କୌଣସି ନା କୌଣସି ଗୋଟାଏ ଆଳ ଦେଖାଇ ବିଲାତକୁ ବୁହା ଚାଲିଛି । ଇଂରେଜମାନେ ଭବିଷ୍ୟତରେ ଏହା ଯଦି ବନ୍ଦ ନ କରନ୍ତି ଏବଂ ଯଦି ସେମାନେ ସେମାନଙ୍କର ଅନ୍ୟାୟ ଅର୍ଜିତ ଧନରୁ କିଛି ଛାଡ଼ିବାକୁ ରାଜି ନ ହୁଅନ୍ତି ତାହେଲେ ଭାରତ ଅଥବା ବିଲାତରେ ମୂକ ଜନତା ପାଇଁ ନିସ୍ପୃହ ଭାବେ ତା' ସମସ୍ୟା ପରୀକ୍ଷା କରିବାର ଅନୁକୂଳ ପରିବେଶ ସୃଷ୍ଟି ହୋଇପାରିବ ନାହିଁ ।

ମାଟିରେ ମାଟି ହୋଇ ଖଟୁଥିବା ଚାଷୀଠାରୁ ମିଳିଥିବା ଧନ ଯେ ଚାଷୀ ସ୍ୱେଛାକୃତ ଭାବେ ଦେଇ ଦେଉ ନାହିଁ ଏହା ସ୍ପଷ୍ଟ । ସେମାନଙ୍କ ଠାରୁ ବାଧ୍ୟ କରି ଆଦାୟ କରାଯାଇଥିବା ଏହି ଧନ ଯେ ସେମାନଙ୍କ ନିଜର ଉନ୍ନତି ଅଥବା ଅଭିବୃଦ୍ଧି ପାଇଁ ଉଦ୍ଦିଷ୍ଟ ନୁହେଁ ତାହା ମଧ୍ୟ ସ୍ପଷ୍ଟ । ମହାନ୍ ଇଂରେଜ ସାମ୍ରାଜ୍ୟର ଡମ ସେମାନଙ୍କୁ ସ୍ପର୍ଶ କରିପାରି ନାହିଁ । ଏପରିକି ତିମୁର ଓ ନାଦିରଶାହଙ୍କ ଆକ୍ରମଣ ମଧ୍ୟ ଭାରତର ଗାଁମାନଙ୍କୁ ସ୍ପର୍ଶ କରିପାରି ନଥିଲା । ଯଦି ଅରାଜକତା ଆସେ ତାହା ମଧ୍ୟ ସେମାନଙ୍କୁ ସ୍ପର୍ଶ କରିପାରିବ ନାହିଁ ।

ବିନା ବାଧାରେ ଲୋକଙ୍କ ଠାରୁ ଏହି ବିପୁଳ ଅର୍ଥ କିପରି ଆଦାୟ କରାଯାଇପାରିବ ସେଥି ନିମନ୍ତେ ଏପରି ହିଂସାର ଆଶ୍ରୟ ନିଆଯାଇଛି ଯାହା ଅଭୂତପୂର୍ବ । ସେସବୁ ଏପରି ଜଘନ୍ୟ ଅଥଚ ଚତୁର ଉପାୟରେ ଆଦାୟ କରାଯାଇଛି ଯେ ସେହି ଜଘନ୍ୟତା ବା ଚତୁରତା ହଠାତ୍ ଆଖିରେ ପଡ଼ି ନାହିଁ କି ବୁଝିହେବ ନାହିଁ । ମୋତେ ଲାଗେ, ଇଂରେଜ ଶାସନ ହିଂସାର ଏକ ମୂର୍ତ୍ତିମନ୍ତ ପ୍ରତୀକ । କିଛି ସାପ ଅଛନ୍ତି ଯାହାକୁ ଦେଖୁ ଦେଖୁ ଶୀକାର ହେଉଥିବା ଜୀବ ବେଚାରା ଅଚଳ ହୋଇଯାଏ । ସାପ ସେଠି ଆଉ ଅଧିକ ପରାକ୍ରମ ପ୍ରଦର୍ଶନ କରିବାର ଆବଶ୍ୟକତା ନଥାଏ । ତଥାପି, ଦୁଃଖର ସହିତ ପଚାରିବାକୁ ପଡୁଛି, ଇଂରେଜମାନଙ୍କର ଶକ୍ତି ଆମ ଭାରତରେ କିଛି ସଫଳତା ହାସଲ କରିପାରିଛି କି ?"

ସଙ୍ଗଠିତ ହିଂସା କିପରି କାର୍ଯ୍ୟକରେ ତାହା ଆମକୁ ବୁଝିବାକୁ ପଡ଼ିବ । ଏବଂ ଏହା କାଁ ଭାଁ ଅବିଚାରିତ ଭାବେ ହଠାତ୍ ସୃଷ୍ଟି ହେଉଥିବା ହିଂସା ତୁଳନାରେ ଯେ ଯଥେଷ୍ଟ ଅଧିକ ହାନୀକାରକ- ଏହା ମଧ୍ୟ ହୃଦୟଙ୍ଗମ କରିବାକୁ ପଡ଼ିବ । ଯୋଜନାବଦ୍ଧ ହିଂସା, ଛଳନା ଓ ଶଠତାର ମୁଖା ଭିତରେ ଆତ୍ମଗୋପନ କରିଥାଏ । କିଛି ମହତ୍ ଉଦ୍ଦେଶ୍ୟ ଘୋଷଣା ନାଁରେ, କିଛି କମିଶନ୍, ସଭା ସମ୍ମିଳନୀ ମାଧ୍ୟମରେ, ଏପରିକି ଜନସାର୍ଥ ପୂରଣ ପାଇଁ ଉଦ୍ଦିଷ୍ଟ ବୋଲି ପ୍ରତୀତ ହେଉଥିବା ଅଥଚ କେବଳ ଶୋଷକର ନ୍ୟସ୍ତ ସାର୍ଥ ହିଁ ପୂରଣ କରୁଥିବା କିଛି କାର୍ଯ୍ୟକ୍ରମ ମାଧ୍ୟମରେ ଏହି ଦୁରଭିସନ୍ଧି ପ୍ରାୟତଃ ଆତ୍ମପ୍ରକାଶ କରିଥାଏ । ଲୋଭ ଓ ଚକ୍ଷକତା ହିଂସାର ଯୁଗପତ୍ ସ୍ରଷ୍ଟା ଓ ସୃଷ୍ଟି । ରକ୍ତ, ମାଂସ, ଚର୍ମହୀନ କଙ୍କାଳ ପରି ସମ୍ପୂର୍ଣ୍ଣ

ଉଲଗ୍ନ ହିଂସା ଆତଙ୍କିତ ମଣିଷକୁ ଘଉଡ଼େଇ ଦିଏ । ଏ ହିଂସା କ୍ଷଣସ୍ଥାୟୀ । ମାତ୍ର ଯେତେବେଳେ ଏ ହିଂସା ଶାନ୍ତି ଓ ପ୍ରଗତିର ମୁଖା ପିନ୍ଧିଥାଏ, ତାର ଆୟୁଷ ଅନେକ ବେଶୀ ।

'ହିରଣ୍ୟ ପାତ୍ର' ରେ ଲୁକ୍କାୟିତ ଏ ଭଳି ଭୟଙ୍କର ହିଂସା ଦୁର୍ବଳ ଓ ଶୋଷିତଙ୍କୁ ମଧ୍ୟ ବେଳେବେଳେ ଗୋପନ ହିଂସା ଅଥବା ପ୍ରକାଶ୍ୟ ହିଂସାର ଆଶ୍ରୟ ନେବାକୁ ଉତ୍ସାହିତ କରିଥାଏ । ଏ ଉଭୟ ଧରଣର ହିଂସା ମଝିରେ ଅହିଂସାକୁ କାର୍ଯ୍ୟ କରିବାକୁ ପଡ଼ିଥାଏ । ମାତ୍ର ଅହିଂସା ହିଁ ଯଦି ମାନବସମାଜକୁ ପରିଚାଳିତ କରୁଥିବା ସର୍ବୋଚ୍ଚ ନିୟମ ତେବେ ଅତ୍ୟନ୍ତ କଠିନ ପରିସ୍ଥିତିର ସମ୍ମୁଖୀନ ହୋଇ ମଧ୍ୟ ଏହା ନିଜ ନିର୍ଦ୍ଧାରିତ ପଥରେ ଆଗେଇ ଯାଇ ପାରିବ ।

ଆଜି ଅହିଂସା ପଥରେ ସବୁଠାରୁ ବଡ଼ ଅନ୍ତରାୟ ହେଉଛି ଇଂରେଜ ଶାସନ କୃପାରୁ ସୃଷ୍ଟ ହେଉଥିବା କିଛି ସ୍ୱଦେଶୀ ନ୍ୟସ୍ତସ୍ୱାର୍ଥ । ଏ ନ୍ୟସ୍ତସ୍ୱାର୍ଥ ପଇସାବାଲାଙ୍କର, କମ୍ପାନୀ ଅଂଶୀଦାରଙ୍କର, ଜମିଦାରଙ୍କର ଓ କଳକାରଖାନା ମାଲିକଙ୍କର । ଅବଶ୍ୟ ଏ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ଯେ ଜନସାଧାରଣଙ୍କ ରକ୍ତ ଶୋଷି ପରିପୁଷ୍ଟ ହୋଇଛନ୍ତି ଏ ସମ୍ପର୍କରେ ସବୁବେଳେ ସଚେତନ ନଥାଆନ୍ତି । ମାତ୍ର ଯଦି ବି ସଚେତନ ହୋଇଯାଆନ୍ତି, ଏମାନେ ଯେଉଁ ବିଲାତି ମୁନିବଙ୍କର ହାତବାରିସୀ ହୋଇଛନ୍ତି ସେମାନଙ୍କ ପରି ଏମାନେ ବି ହୃଦୟବାନ ହୋଇଯାଆନ୍ତି ।

ମାତ୍ର ଉଭୟ ଏ ଦେଶୀ ଓ ବିଦେଶୀ ଶୋଷକଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରୁଥିବା ଅହିଂସାକୁ ଧୈର୍ଯ୍ୟ ଧରିବାକୁ ପଡ଼ିବ । ଅହିଂସକ କର୍ମୀର ମୁଖ୍ୟ ଲକ୍ଷ୍ୟ ହେବ ହୃଦୟ ପରିବର୍ତ୍ତନ । ଅବଶ୍ୟ ଏଥିପାଇଁ ସେ ଅନନ୍ତ କାଳ ଅପେକ୍ଷା କରିନପାରେ । ଯେତେବେଳେ ଧୈର୍ଯ୍ୟର ହିଡ଼ ଭାଙ୍ଗିବ ସେତେବେଳେ ଅହିଂସକ କର୍ମୀ ବିପଦ ବରଣ କରିବାକୁ ପ୍ରସ୍ତୁତ ହୋଇଯିବ । ସେତେବେଳେ ସେ ଅସହଯୋଗ ବା ସେହିଭଳି ଅନ୍ୟାନ୍ୟ ସକ୍ରିୟ ସତ୍ୟାଗ୍ରହ ପନ୍ଥା ପ୍ରୟୋଗ କରିବାକୁ ଯୋଜନା କରିବ ।"

ଭାରତର ଉଭୟ ଜନନେତା ଓ ଜନସାଧାରଣ ଗାନ୍ଧୀଜୀଙ୍କର ଉପରୋକ୍ତ ଚେତାବନୀର ସାରବତ୍ତା ଉପଲବ୍ଧି କରି ଉଦାରୀକରଣର କୁଫଳ ବିରୁଦ୍ଧରେ ଗାନ୍ଧୀ ପ୍ରଦର୍ଶିତ ଅହିଂସାତ୍ମକ ପନ୍ଥାରେ ଆନ୍ଦୋଳନ ଆରମ୍ଭ କରିବା ଉଚିତ । ଉଦାରୀକରଣର ଭୟଙ୍କର ପରିଣାମରୁ ମୁକ୍ତିର ମାର୍ଗ କେବଳ ସତ୍ୟାଗ୍ରହ ଓ ଅସହଯୋଗ ମାଧ୍ୟମରେ ହିଁ ମିଳିବ ।

ଗାନ୍ଧିଜୀ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତାଙ୍କ ଦ୍ୱାରା ସମ୍ପାଦିତ 'ହରିଜନ' ପତ୍ରିକା ପାଇଁ ଯେଉଁ ଲେଖା ଲେଖିଥିଲେ ତାହା ବିଶେଷ ପ୍ରଣିଧାନଯୋଗ୍ୟ । ସେ ନିଜେ ଜାଣି ନଥିଲେ ଯେ ଏହା ତାଙ୍କର ଅନ୍ତିମ ଲେଖା ହେବ ବୋଲି । ଉକ୍ତ ଲେଖାରେ ସେ କଂଗ୍ରେସ ଦଳକୁ ଭାଙ୍ଗି ଦେଇ ତା'ସ୍ଥାନରେ ଲୋକ ସେବକ ମଣ୍ଡଳ ନାମରେ ଏକ ସଂଗଠନର ଲକ୍ଷ୍ୟ ଓ ସମ୍ବିଧାନର ଏକ ଚିଠା ମଧ କରିଥିଲେ । ଯେଉଁମାନେ ଲୋକ ସେବକ ହେବେ ସେମାନଙ୍କୁ

କ୍ଷମତା ଛାଡ଼ିବାକୁ ପଡ଼ିବ ବୋଲି ଉକ୍ତ ସମ୍ବିଧାନରେ ଏକ ଆବଶ୍ୟକୀୟ ସର୍ତ୍ତ ଥିଲା । ସେ ଜାଣି ନଥିଲେ ଯେ 'ହରିଜନ'ର ଏହି ଲେଖା ଲେଖିବା ପରଦିନ ହିଁ ତାଙ୍କୁ ନାଥୁରାମ ଗଡ଼ସେର ଗୁଳିର ଶିକାର ହେବାକୁ ପଡ଼ିବ । ଆମକୁ ଚିରଦିନ ପାଇଁ ତାଙ୍କୁ ହରାଇବାକୁ ପଡ଼ିଲା । ମୋର ନିଶ୍ଚିତ ମତ ଯେ ବର୍ତ୍ତମାନ ଦେଶ ଯେଉଁ ସଙ୍କଟମୟ ପରିସ୍ଥିତି ଦେଇ ଗତିକରୁଛି ଗାନ୍ଧିଜୀଙ୍କ ବିଚାର ହିଁ ଉକ୍ତ ସଂକଟରେ ଏକମାତ୍ର ବିକଳ୍ପ ।

ଜୀବନ ଏକ ଅସରନ୍ତି ଅନ୍ୱେଷଣ । ଏକ ଅସରନ୍ତି ଯାତ୍ରା । ଜୀବନର ଶେଷ ମୁହୂର୍ତ୍ତ ଯାଏ ଜଣେ ସମାଜବାଦୀ ସୈନିକ ରୂପେ ସକ୍ରିୟ ରହିବି - ଏହାହିଁ ମୋର କାମନା । ଚଲାପଥରେ ପାଇଥିବା ଅସଂଖ୍ୟ ତିକ୍ତ ମଧୁର ଅନୁଭୂତିରୁ ହଠାତ୍ ଯାହା ମନକୁ ଆସିଯାଇଛି ସେଥିରୁ ଅଳ୍ପ କେତୋଟି ଏଠି ଲିପିବଦ୍ଧ କଲି । ମୋର ଆଗାମୀ ପିଢ଼ି ଯଦି ଏଥିରୁ କିଛି ପ୍ରେରଣା ପାଏ ମୋର ଠାରୁ ଆଉ ଅଧିକ କିଏ ଖୁସି ହେବ !



# କେତୋଟି ସ୍ମରଣୀୟ ମୁହୂର୍ତ୍ତ ଚୁମ୍ବକ୍‌ରେ

ଜନ୍ମ - ୨୬, ନଭେମ୍ବର,୧୯୨୬

ଗ୍ରାମ - ଭର୍ଥରାଗଡ଼, ବନମାଳିପୁର, ଜି:-ଖୋର୍ଦ୍ଧା

ପିତା - ଶ୍ରୀଯୁକ୍ତ ଘନଶ୍ୟାମ ରାୟ

ମାତା - ଶ୍ରୀମତୀ ସୁନାମଣି ଦେବୀ

ପତ୍ନୀ - ଡଃ ସରସ୍ୱତୀ ସାଇଁ

| | |
|---|---|
| ୧୯୪୭ | ରେଭେନ୍ସା କଲେଜରେ ଜାତୀୟ ପତାକା ଉତ୍ତୋଳନ ଓ ତାକୁ କେନ୍ଦ୍ରକରି ହୋଇଥିବା ଆନ୍ଦୋଳନରେ କାରାବରଣ । ଦେଶରେ ପ୍ରଥମ ଥର ପାଇଁ ବ୍ରିଟିଶ୍ ଶାସନ ଥାଇ ମଧ୍ୟ ଏହି ଆନ୍ଦୋଳନ ଫଳରେ ଶିକ୍ଷାୟତନରେ ତ୍ରୀରଙ୍ଗା ପତାକା ଉଡ଼ାଇବା ପାଇଁ ଅନୁମତି ପ୍ରଦାନ । |
| ୧୯୪୮-୪୯ | ରେଭେନ୍ସା କଲେଜ ଛାତ୍ର ଇଉନିୟନ୍ ସଭାପତି । |
| ୧୯୪୯-୫୦ | ମଧୁସୂଦନ ଆଇନ ମହାବିଦ୍ୟାଳୟର ପ୍ରଥମ ସଭାପତି । |
| ୧୯୫୩-୫୪ | ଯୁଗ୍ମ ସମ୍ପାଦକ, ଅଖିଳ ଭାରତ ସମାଜବାଦୀ ଯୁବକ ସଭା । |
| ୧୯୫୬ | ରାମ ମନୋହର ଲୋହିଆଙ୍କ ନେତୃତ୍ୱରେ ଗଠିତ ସଂଯୁକ୍ତ ସମାଜବାଦୀ (SSP)ଦଳର ଜାତୀୟ କାର୍ଯ୍ୟକାରିଣୀ ସମିତି ସଭ୍ୟ, ଓଡ଼ିଶାରେ ଏହି ନୂଆ ଦଳର ଶାଖା ପ୍ରତିଷ୍ଠା । |
| ୧୯୫୭ | କଟକ ଜିଲ୍ଲା ବନ୍ୟା ପ୍ରପୀଡ଼ିତଙ୍କ ପାଇଁ ସତ୍ୟାଗ୍ରହ କରି କାରାବରଣ |
| ୧୯୬୦ | ସମ୍ପାଦକ, ସଂଯୁକ୍ତ ସମାଜବାଦୀ ଦଳ; ସରକାରୀ ଦପ୍ତର, ସଂସଦ ଓ ବିଧାନ ସଭାମାନଙ୍କରେ ଇଂରାଜୀ ବ୍ୟବହାର ବିରୋଧ କରି କାରାବରଣ । |
| ୧୯୬୪ | ଦୁର୍ନୀତି ବିରୁଦ୍ଧରେ ହେଉଥିବା ଛାତ୍ର ଆନ୍ଦୋଳନକୁ ସମର୍ଥନ କରି ପୁରୀରେ ଭାରତ ରକ୍ଷା ଆଇନ୍ (DIR) ବଳରେ ଗିରଫ । |
| ୧୯୬୭ | ୪ର୍ଥ ଲୋକସଭାକୁ ପୁରୀ ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ଏବଂ ଲୋକସଭାରେ ସଂଯୁକ୍ତ ସୋସାଲିଷ୍ଟ ପାର୍ଟିର ନେତା ନିର୍ବାଚିତ । |

| | |
|---|---|
| ୧୯୬୮ | ଭାରତ-ପାକିସ୍ତାନ ରାଜିନାମା ଅନୁଯାୟୀ ପାକିସ୍ତାନକୁ ଭାରତର କିଛି ଅଂଶ ଦିଆଯିବାର ପ୍ରତିବାଦରେ ଗୁଜରାଟର କଛ୍‌ଠାରେ ସତ୍ୟାଗ୍ରହ । ପୁରୀ ରାଜଭବନକୁ ଏକ ମହିଳା ଅଥବା ଶିଶୁ ଚିକିତ୍ସାଳୟରେ ପରିବର୍ତ୍ତନ କରିବାକୁ ଦାବି କରି କାରାବରଣ ।<br><br>ଲୋକସଭା ସଭ୍ୟ ହିସାବରେ ସୋଭିଏତ୍ ରୁଷିଆ, ହଙ୍ଗେରୀ, ଇଜିପ୍ଟ, ଫ୍ରାନ୍ସ, ଓ ଇଂଲଣ୍ଡ ଗସ୍ତ । |
| ୧୯୭୪-୮୦ | ଓଡ଼ିଶାରୁ ରାଜ୍ୟସଭାକୁ ନିର୍ବାଚିତ । |
| ୧୯୭୫ | ସଂସଦୀୟ ପବ୍ଲିକ୍ ଏକାଉଣ୍ଟସ୍ କମିଟି ସଭ୍ୟ, କେନ୍ଦ୍ର ସିଲ୍କବୋର୍ଡ ସଭ୍ୟ, ଜରୁରୀ ପରିସ୍ଥିତିରେ କାରାବରଣ । |
| ୧୯୭୭-୭୮ | ଲୋକପାଳ ବିଲ୍‌କୁ ନେଇ ସଂସଦରେ ଗଠିତ ଜଏଣ୍ଟ ସିଲେକ୍ଟ କମିଟିର ସଭ୍ୟ; ଭାରତ-ଜାପାନ ମୈତ୍ରୀ ସଂଘର ପ୍ରତିଷ୍ଠାତା ସଭ୍ୟ; ଲୋହିଆ ଏକାଡେମୀର ସଭାପତି, ସମତା ଟ୍ରଷ୍ଟର ଚେୟାରମ୍ୟାନ; ଜାତୀୟ ସାମ୍ପ୍ରଦାୟିକ ସଦ୍‌ଭାବନା ସମିତିର ସଭାପତି; ସଭାପତି 'ଭାରତୀ' ।<br><br>ପ୍ରେସ୍ କାଉନ୍‌ସିଲ୍ ଗଠନ ପାଇଁ ଗଢ଼ା ହୋଇଥିବା ସାଂସଦୀୟ କମିଟିର ଚେୟାରମ୍ୟାନ୍ । |
| ୧୯୭୭-୮୦ | ଜନତା ଦଳର ସାଧାରଣ ସମ୍ପାଦକ । |
| ୧୯୭୯ | ମୋରାରଜୀ ଦେଶାଇ ମନ୍ତ୍ରୀ ମଣ୍ଡଳରେ ସ୍ୱାସ୍ଥ୍ୟ ତଥା ପରିବାର କଲ୍ୟାଣ ମନ୍ତ୍ରୀ ରୂପେ ଯୋଗଦାନ; ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ(WHO) ବୈଠକକୁ ଏକ ପାର୍ଲାମେଣ୍ଟାରୀ ଦଳର ନେତୃତ୍ୱ । |
| ୧୯୮୯ | କେନ୍ଦ୍ରାପଡ଼ା ସଂସଦୀୟ ନିର୍ବାଚନ ମଣ୍ଡଳୀରୁ ୯ମ ଲୋକସଭାକୁ ନିର୍ବାଚିତ ।<br><br>ଡିସେମ୍ବର ୧୯ ରେ ସର୍ବସମ୍ମତି କ୍ରମେ ନବମ ଲୋକସଭାର ବାଚସ୍ପତି ରୂପେ ନିର୍ବାଚିତ ।<br><br>ବାଚସ୍ପତି ରୂପେ ତାଙ୍କ କାର୍ଯ୍ୟକାଳର ବିଶେଷତ୍ୱ:- |
| ୧) | ଦେଶର କୌଣସି ଦଳ ସଂସଦରେ ଏକକ ସଂଖ୍ୟାଗରିଷ୍ଠତା ଲାଭ ନକରିବାରୁ ପ୍ରଥମ ଥର ପାଇଁ ଦେଶରେ ଝୁଲା ସଂସଦ (hang parliament) ଗଠିତ । ସମସ୍ତ ରାଜନୈତିକ ଅନିଶ୍ଚିତତା ସତ୍ତ୍ୱେ ସର୍ବସମ୍ମତି କ୍ରମେ ଶ୍ରୀ ରାୟ ବାଚସ୍ପତି ନିର୍ବାଚିତ । |

୨) ଦଳ ବଦଳ ଆଇନ୍ କଡ଼ାକଡ଼ି ଭାବେ ଲାଗୁ କରି କିଛି ମନ୍ତ୍ରୀଙ୍କ ସମେତ ଲୋକସଭାର ଛଅ ଜଣ ସଭ୍ୟଙ୍କୁ ବରଖାସ୍ତ ପାଇଁ ଐତିହାସିକ ରାୟ ।

୩) ସୁପ୍ରିମ୍ କୋର୍ଟ ବିଚାରପତି ଶ୍ରୀ ରାମସ୍ୱାମୀଙ୍କୁ ଦୁର୍ନୀତି ଅଭିଯୋଗରେ ବିଚାରପତି ଆସନରୁ ବିତାଡ଼ନ ପାଇଁ ଏକ କମିଟି ଗଠନ ଓ ସମସ୍ତ ଷଡ଼ଯନ୍ତ୍ର ସତ୍ତ୍ୱେ ତାହା କାର୍ଯ୍ୟକାରୀ କରିବା ପାଇଁ ଐତିହାସିକ ପଦକ୍ଷେପ ।

୪) ସଂସଦରେ ଗୁରୁତ୍ୱପୂର୍ଣ୍ଣ ବିଷୟ ମାନଙ୍କର ଜରୁରୀ ଆଲୋଚନା ପାଇଁ ରଖିଥିବା 'ଶୂନ୍ୟ କାଳ' (Zero Hour) ବିଧିରେ ସଂସ୍କାର ଆଣି ତାକୁ ଅଧିକ କ୍ରିୟାଶୀଳ କରାଇବା

୫) ୨୦ ଡିସେମ୍ବର ୧୯୮୯ରୁ ପ୍ରଥମ ଥର ପାଇଁ ପାର୍ଲାମେଣ୍ଟର କେନ୍ଦ୍ରୀୟ ହଲ୍‌ରୁ ସାଂସଦୀୟ ଆଲୋଚନାର ରେଡ଼ିଓ ଏବଂ ଟି.ଭି. ପ୍ରସାରଣ ବ୍ୟବସ୍ଥା । ଏହାଦ୍ୱାରା ସଂସଦ ଲୋକଙ୍କର ନିକଟବର୍ତ୍ତୀ ହେଲା ଏବଂ ସଂସଦୀୟ ଆଲୋଚନାରେ ସ୍ୱଚ୍ଛତା (transparency) ଆସିଲା ।

୬) ତାଙ୍କ ସମୟରେ ପ୍ରଧାନମନ୍ତ୍ରୀ ଭି.ପି.ସିଂହ ଆଣିଥିବା ଏକ ବିଶ୍ୱାସ ପ୍ରସ୍ତାବ ସେହିଦିନ ଆଲୋଚିତ ହୋଇ ଗୃହିତ ହେବା ଏକ ଐତିହାସିକ ଘଟଣା ହୋଇ ରହିଛି । (ମାତ୍ର ଏଗାର ମାସ ପରେ ପୁଣି ଇତିହାସର ପୁନରାବୃତ୍ତି ଘଟିଲା ଯେତେବେଳେ ଉକ୍ତ ସରକାର ଆଉ ଏକ ବିଶ୍ୱାସ ପ୍ରସ୍ତାବରେ ହାରି ସରକାରରୁ ଓହରି ଗଲେ ।)

୭) ଦେଶର ସନାମଧନ୍ୟ ସାଂସଦମାନଙ୍କ ବ୍ୟକ୍ତିତ୍ୱ ଏବଂ କାର୍ଯ୍ୟାବଳୀକୁ ସ୍ମରଣ କରାଇବା ପାଇଁ ତାଙ୍କ ସମୟରେ ସଂସଦ ଆନୁକୂଲ୍ୟରେ "Eminent Parliamentarians Manograph Series" ପ୍ରକାଶ ପାଇଥିଲା ।

୧୯୮୯-୯୧ ବାଚସ୍ପତି ହିସାବରେ ତାଙ୍କ ନେତୃତ୍ୱରେ ପାର୍ଲାମେଣ୍ଟ ପ୍ରତିନିଧି ଗୋଷ୍ଠୀଙ୍କର ହଙ୍ଗେରୀ, ପୋଲାଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, ଫ୍ରାନ୍ସ, ହାରାରେ ଓ ନିକୋସିଆ ଗସ୍ତ ।

୧୯୯୧ Parliamentary Diploamacy ପୁସ୍ତକ ରଚନା; ବହୁରାଷ୍ଟ୍ରୀୟ କମ୍ପାନୀ କାରଗିଲ ଗୁଜରାଟର କାଣ୍ଡଲାଠାରେ ନିର୍ମାଣ କରୁଥିବା ଲୁଣ କାରଖାନା ବିରୁଦ୍ଧରେ ସେଠି ସତ୍ୟାଗ୍ରହ ।

Common Parliamentary Association ର ସଭାପତି ନିର୍ବାଚିତ ।

୧୯୯୨ International Peace and Goodwill Foundation of India ତରଫରୁ Outstanding Citizen ପୁରସ୍କାର ।

୧୯୯୫ ଭାରତ-ତିବ୍ବତ ମୈତ୍ରୀ ସଂଘର ସଭାପତି ହିସାବରେ ବର୍ଲିନ ଠାରେ ଅନୁଷ୍ଠିତ ସଂଘର ଆନ୍ତର୍ଜାତିକ ସମ୍ମିଳନୀକୁ ଏକ ପ୍ରତିନିଧି ଗୋଷ୍ଠୀର ନେତୃତ୍ୱ ନେଇ ଯୋଗଦାନ ।

୧୯୯୭ ଆଉ ନିର୍ବାଚନରେ ଭାଗ ନ ନେବାକୁ ଏବଂ କ୍ଷମତା ରାଜନୀତିକୁ ନ ଫେରିବାକୁ ନିଷ୍ପତ୍ତି । ଲୋକଶକ୍ତି ଅଭିଯାନର ଦିଲ୍ଲୀରେ ଅଘମାରମ୍ଭ ।

ଏହି ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ:-

ଶାସନର ଉଚ୍ଚସ୍ତରରେ ଚାଲିଥିବା ଭ୍ରଷ୍ଟାଚାର, ଶାସନର ମାତ୍ରାଧିକ୍ୟ କେନ୍ଦ୍ରୀକରଣ, ଅବକ୍ଷୟବାଦୀ ଖାଉଟି ସଂସ୍କୃତି ଏବଂ ଜଗତୀକରଣ ବିରୁଦ୍ଧରେ ଆନ୍ଦୋଳନ ।

୧୯୯୮ କାଶୀ ବିଦ୍ୟାପୀଠ, ବାରଣାସୀ ଦ୍ୱାରା ସମ୍ବର୍ଦ୍ଧିତ ।

୨୦୦୧ Indian International Friendship Society ଦ୍ୱାରା ଭାରତ ଜ୍ୟୋତି ପୁରସ୍କାର ।

ଏହାଛଡ଼ା ବିଭିନ୍ନ ସମୟରେ ଚୌଖମ୍ବା (ହିନ୍ଦି), 'ଜନ', 'ସମତା' (ଓଡ଼ିଆ) ପତ୍ରିକାର ସମ୍ପାଦନା ଏବଂ 'The Other Side' ପତ୍ରିକାର ସମ୍ପାଦକ ମଣ୍ଡଳୀ ସଭ୍ୟ ।

୨୦୦୨ (ଡିସେମ୍ବର ୧୮) ମହାମାନ୍ୟ ଦଲେଇ ଲାମାଙ୍କ ହସ୍ତରୁ Light of Truth ପୁରସ୍କାର ଗ୍ରହଣ ।





ଲୋହିଆ ଏକାଡେମୀ ଟ୍ରଷ୍ଟ ପ୍ରକାଶିତ
ଡ. ଲୋହିଆ କୃତ
ଭାରତ ବିଭାଜନର ଅପରାଧୀ
ଅନୁବାଦ: ଡ. ସରସ୍ୱତୀ ସ୍ୱାଇଁ
ମୂଲ୍ୟ ଟ.୬୫/-
ଓଡ଼ିଶାରେ
ବିପ୍ଳବୀ ବାଙ୍ମୟର
ଅଗ୍ରଗଣ୍ୟ ହୋତା
ଶ୍ରୀ ପ୍ରଫୁଲ୍ଲ ଦାସଙ୍କର
ଦୁଇଟି ଆଗ୍ନେୟ ଆହୁତି-
ଭାରତ ବିଭାଜନ:
ସେହି ରକ୍ତାକ୍ତ ଅଗଷ୍ଟ ପନ୍ଦର
ମୂଲ୍ୟ ଟ.୭୦/-
ସଶସ୍ତ୍ର ସ୍ୱାଧୀନତା
ଯୁଦ୍ଧରେ ଓଡ଼ିଶାର
ବୀର ଓ ବୀରାଙ୍ଗନା
ମୂଲ୍ୟ ଟ.୮୦/-
ଶୈଳଜ ରବି ସଂପାଦିତ
ଶ୍ରୀମତୀ ମାଳତୀ ଚୌଧୁରୀଙ୍କ
ଜୀବନାଲେଖ୍ୟ: ପଥିକୃତ୍
ମୂଲ୍ୟ ଟ.୭୫/-

ଜୀବନ ଏକ ଅସରନ୍ତି ଅନ୍ୱେଷଣ । ଚଲାପଥରେ ଛାଡ଼ିଯାଉଥାଏ ଅସଂଖ୍ୟ ସ୍ମୃତି କେଉଁଠି ବା ପାଦ ଚିହ୍ନଟାଏ,କେଉଁଠି ବା ମାଇଲ ଖୁଣ୍ଟ । ଜୀବନ ଗୋଟାଏ ଅସୀମ ଆକାଶ । ସକାଳ, ମଧ୍ୟାହ୍ନ, ସନ୍ଧ୍ୟା ଭିତରେ ଗାର ଟାଣି ହୁଏ ନାହିଁ କି ତା ରଙ୍ଗକୁ ଧରି ରଖିହୁଏ ନାହିଁ । ତ୍ରିସନ୍ଧ୍ୟାର ଆକାଶ କେତେବେଳେ ବର୍ଣ୍ଣ ବିଭୋର ତ କେତେବେଳେ ବିବର୍ଣ୍ଣ, ପାଣ୍ଡୁର । ସମାହିତ ସୈନିକଟିଏ ପାଇଁ ତାର ସବୁ ସ୍ମୃତି ସମାନ ଭାବେ ସଞ୍ଚୟଯୋଗ୍ୟ ।

ରବିରାୟ । ଭାରତୀୟ ସମାଜବାଦୀ ଆନ୍ଦୋଳନର ଏକ ଉତ୍ସର୍ଗୀକୃତ ନାମ । ସ୍ୱାଧୀନତା ଆନ୍ଦୋଳନର ମଧ୍ୟାହ୍ନ, ସମାଜବାଦୀ ଆନ୍ଦୋଳନର କୁଆଁରବ ତଥା ସମକାଳୀନ ଗଣତନ୍ତ୍ରର ଅପରାହ୍ନ- ସବୁକୁ ଅଙ୍ଗେ ଲିଭାଇଥିବା,ସବୁଠି ଲଢ଼େଇରେ ସାମିଲ ହୋଇଥିବା, ସବୁଠି ପ୍ରତିବାଦର ସ୍ୱର ଉତ୍ତୋଳନ କରିଥିବା ରବିରାୟ ଜଣେ ସର୍ବଭାରତୀୟ ସ୍ତରରେ ସୁପରିଚିତ ସମାଜବାଦୀ ସୈନିକ । ଚଲାପଥରେ ସେ ଭେଟିଛନ୍ତି ଅଗଣିତ ସ୍ମରଣୀୟ ବ୍ୟକ୍ତିତ୍ୱ, ଘଟିଛି ଅସୁମାରୀ ଚମକ୍ପ୍ରଦ ଘଟଣା । ଚରୈବେତି ମନ୍ତ୍ରରେ ଦୀକ୍ଷିତ ରବିରାୟଙ୍କର ଚାଲିବା ଏବେ ବି ଅବ୍ୟାହତ । ଏବେ ବି ଅବିରାମ ଆଗକୁ ଆଗେଇବା ତାଙ୍କ ପାଇଁ ଏକମାତ୍ର ଧର୍ମ ।

ଚାଲୁ ଚାଲୁ ହାଠାତ୍ ମନକୁ ଆସି ଯାଇଛି କିଛି ଘଟଣା, କିଛି ତଥ୍ୟ, କିଛି ବ୍ୟକ୍ତି ବିଶେଷଙ୍କର ସ୍ମୃତି । କଥାବାର୍ତ୍ତା ଶୈଳୀରେ ସେ ଆଙ୍କିଛନ୍ତି ସେହିଭଳି କିଛି ସ୍ମୃତିର ଚିତ୍ର ।

ଚିତ୍ରଗୁଡ଼ିକ ଉଭୟ ବିକ୍ଷିପ୍ତ ଏବଂ ସଂକ୍ଷିପ୍ତ । ତଥାପି ଏଥିରୁ ମିଳେ ସ୍ୱାଧୀନତା ସଂଗ୍ରାମ ଓ ସମାଜବାଦୀ ଆନ୍ଦୋଳନର ସମୁଦ୍ର ମନ୍ଥନ ଚିତ୍ର, ସମକାଳୀନ ଭାରତୀୟ ରାଜନୀତିର କେତୋଟି ରିଙ୍ଗ ସାଇଡ୍ ଦୃଶ୍ୟ ଏବଂ କିଛି ସୁପରିଚିତ ବ୍ୟକ୍ତି ବିଶେଷଙ୍କ ଚଟାପଟ୍ ଅଙ୍କା ହୋଇଥିବା ସ୍କେଚ୍ ।

- ପ୍ରକାଶକ

ଲୋହିଆ ଏକାଡେମୀ ଟ୍ରଷ୍ଟ